ଶ୍ରେଷ୍ଠ ଗଳ୍ପ
ପ୍ରବୀଣା ମହାନ୍ତିଙ୍କ ଗଳ୍ପ ସଂକଳନ

ପ୍ରକାଶକ : ଟା ଇ ମ୍ ପା ସ୍

ପ୍ରଥମ ସଂସ୍କରଣ : ଏପ୍ରିଲ୍ ୨୦୧୩
ଦ୍ୱିତୀୟ ସଂସ୍କରଣ : ଜୁଲାଇ ୨୦୧୮



**srestha galpa**
odia selected short-stories by **pravina mohanty**

published & printed by **timepass**
950 (P), nk marg, baramunda, bhubaneswar, odisha, india

cover design : **saroj bal**
second edition : july 2018

**₹ 195.00**

# ଅଗ୍ରଲେଖ

"ବୋଉଲୋ ! ମୋର ଗୋଟେ ନୂଆ ବହି ବାହାରୁଛି ।"

"କି ବହି ?"

"ଗପ ବହି ।"

"କି ଗପ ?"

"ମୋର ସବୁଠୁ ଭଲଗପମାନଙ୍କୁ ନେଇ ବହିଟିଏ ହେଉଛି ।"

"କେବେ ?"

"ବହୁତ ଜଲ୍‌ଦି । ଏଇ ଏପ୍ରିଲ୍ ୧୯ ତାରିଖ ବେଳକୁ ।"

"ସେଯାଏଁ କ'ଣ ମୁଁ ଥିବି ?" ବୋଉର ସ୍ୱର ନିଷ୍ପ୍ରଭ ଶୁଭୁଥିଲା ।

ଅନେକ ଦିନ ହେଲା ବୋଉ ଶଯ୍ୟାଶାୟୀ । ବେଳେବେଳେ ଅବସ୍ଥା ଏମିତି ହେଉଛି ଯେ ସମସ୍ତେ ଆଶା ଛାଡ଼ି ଦେଉଛନ୍ତି । ବୋଉ ନଥିବା ପୃଥିବୀ କଥା ଭାବିଲେ ମୋ ଭିତରେ ହାହାକାର ସୃଷ୍ଟିହୁଏ । ସେଇଥିପାଇଁ ତା' ମନରେ ବଞ୍ଚିବାର ଆଶା ସଂଜୀବିତ କରି ରଖିବା ପାଇଁ ମୋ ଦ୍ୱାରା ଯାହା ସଂଭବ, କରିବାକୁ ଚେଷ୍ଟା କରିଥାଏ । ମୋ ବୋଉ ମୋର ଜଣେ ଅନ୍ତରଙ୍ଗ ପାଠିକା । ମୋର ନୂଆ ବହିଟିଏ ବାହାରିବା କଥା ଜାଣିଲେ ତା'ର ଲେଉଟାଣି ଯାତ୍ରା ହୁଏତ ଆଉ କିଛି ଦିନ ପାଇଁ ସ୍ଥଗିତ ରଖିପାରେ !

ପାଠକମାନଙ୍କ ଦ୍ୱାରା ଆଦୃତ କେତୋଟି ଗଳ୍ପକୁ ଏକତ୍ର କରି ସଂକଳନଟିଏ ପ୍ରସ୍ତୁତ କରିବା ବେଳେ ତା'ର ନାମ 'ନିର୍ବାଚିତ ଗଳ୍ପ' ଦିଆଯାଇଥିଲେ ଠିକ୍ ହୋଇଥାନ୍ତା । ମାତ୍ର ବୋଉ ଜାଣିବ, ସେଗୁଡ଼ିକ ମୋର ସବୁଠୁ ଭଲ ଗପ, ଅର୍ଥାତ୍ ଶ୍ରେଷ୍ଠ ଗଳ୍ପ । ମୋ ଲେଖିକା ଜୀବନର ସର୍ବଶ୍ରେଷ୍ଠ ଗଳ୍ପ ଯେ ଏଯାବତ୍ ଲେଖା ହୋଇନାହିଁ- ଲେଖି ପାରିନାହିଁ, ସେ କଥା ମୋଠୁ ଅଧିକ ଆଉ କିଏ ଜାଣେ ? ମୋର ଶ୍ରଦ୍ଧାଶୀଳ ପାଠକମାନଙ୍କର ମୋ ପ୍ରତି ଗଭୀର ଆସ୍ଥା ଓ ଭଲପାଇବା ସେଭଳି ଏକ ଗଳ୍ପ ଲେଖିବାକୁ ଭବିଷ୍ୟତରେ ମୋତେ ନିଶ୍ଚୟ ପ୍ରେରିତ କରିବ ।

ଖୁବ୍ କମ୍ ସମୟ ମଧ୍ୟରେ ସଂକଳନଟି ପ୍ରସ୍ତୁତ କରାଯାଉଥିବାରୁ ଅଜାଣତରେ ହୁଏତ କିଛି ତ୍ରୁଟି ରହିଯାଇଥିବ । ଶୁଭେଚ୍ଛୁ ପାଠକପାଠିକାମାନେ ସେଥିପାଇଁ ଉଦାର ହୃଦୟରେ ମୋତେ କ୍ଷମା କରିଦେବେ । ସଂକଳନଟି ପ୍ରକାଶ ପାଇବା ଅବସରରେ ମୁଁ ପ୍ରଥମେ କୃତଜ୍ଞତା ଜଣାଇବି ସେଇ ପରମପ୍ରଭୁଙ୍କୁ, ଯାହାଙ୍କ କରୁଣାର ଅଫୁରନ୍ତ ଧାରା ମୋତେ ଅହର୍ନିଶ ପ୍ଲାବିତ କରୁଥାଏ- ଅଜସ୍ର ଭଲପାଇବାରେ ଅଭିଷିକ୍ତ କରୁଥାଏ । କୃତଜ୍ଞତା ଜଣାଇବି ମୋର ବାପାବୋଉଙ୍କୁ- ଯିଏ ମୋ ହାତରେ ପ୍ରଥମେ କଲମ ଧରାଇ ଲେଖିବାକୁ ମୋତେ ପ୍ରେରିତ କରିଥିଲେ । ଅନେକ ପ୍ରତିକୂଳତା ଭିତରେ ମଧ୍ୟ ଜୀବନର ଅସ୍ତିବାଚକ ଦିଗଟି ବିଷୟରେ ମୋତେ ସର୍ବଦା ସଚେତନ କରି ମୋର ଆତ୍ମଭୋଳା ସ୍ୱଭାବର ଅଜସ୍ର ଦୋଷତ୍ରୁଟିକୁ ଅତ୍ୟନ୍ତ ଉଦାରତାର ସହିତ ବରଦାସ୍ତ କରିଆସିଥିବା ମୋ ଜୀବନପଥର ସହଯାତ୍ରୀଙ୍କୁ ମୋ ହୃଦୟର ଗଭୀର କୃତଜ୍ଞତା ଜଣାଉଛି । ଲେଖିକା ମାଆଟିକୁ ନେଇ ନିଜକୁ ଗୌରବାନ୍ୱିତ ମନେ କରୁଥିବା ମୋର ପିଲାମାନଙ୍କୁ ଅନେକ ଶୁଭେଚ୍ଛା ।

କୃତଜ୍ଞତା ଜଣାଇବି ମୋର ପ୍ରିୟ ପାଠକପାଠିକାମାନଙ୍କୁ- ଯେଉଁମାନେ ମୋତେ ଲେଖିକା ଭାବରେ ସ୍ୱୀକୃତି ଦେଇଛନ୍ତି ଏବଂ ଶୁଭେଚ୍ଛୁ ସମାଲୋଚକମାନଙ୍କୁ, ଯେଉଁମାନେ ମୋର ତ୍ରୁଟିଗୁଡ଼ିକୁ ସଜାଡ଼ିବା ଦିଗରେ ମୋତେ ସଚେତନ କରିଛନ୍ତି । ପରିଶେଷରେ ଅନେକ ଶୁଭେଚ୍ଛା ଶ୍ରଦ୍ଧେୟ ସରୋଜଙ୍କୁ, ଯାହାଙ୍କ ପ୍ରଚେଷ୍ଟାରେ ସଂକଳନଟି ପ୍ରକାଶିତ ହୋଇପାରିଛି । ଈଶ୍ୱରଙ୍କ ନିକଟରେ ମୋର ଆନ୍ତରିକ ପ୍ରାର୍ଥନା, ସବୁଥର ଭଳି ଏଥର ମଧ୍ୟ ମୋର ନୂଆବହିର ପ୍ରଥମ ଖଣ୍ଡଟି ମୋ ବାପାବୋଉଙ୍କ ହାତରେ ରଖି ପ୍ରଣାମ କରିବାର ସୁଯୋଗ ମୋତେ ନିଶ୍ଚୟ ଦେବେ ।

\- ଲେଖିକା

# ଦ୍ୱିତୀୟ ସଂସ୍କରଣ ଅବସରରେ

ମୋର 'ଶ୍ରେଷ୍ଠ ଗଳ୍ପ' ସଂକଳନର ଦ୍ୱିତୀୟ ସଂସ୍କରଣ ପ୍ରକାଶ ପାଇବାକୁ ଯାଉଛି । ପ୍ରଥମ ସଂସ୍କରଣରେ ଥିବା ବାରଟି ଗଳ୍ପ ସହିତ ଆଉ ଚାରୋଟି ଗଳ୍ପ ଏଥିରେ ସନ୍ନିବେଶିତ ହୋଇଛି । ପାଞ୍ଚ ବର୍ଷ ତଳେ ୨୦୧୩ରେ ଯେତେବେଳେ ମୋର 'ଶ୍ରେଷ୍ଠ ଗଳ୍ପ' ପ୍ରକାଶ କରିବାର ପରିକଳ୍ପନା ହୋଇଥିଲା, ତା ପଛରେ କେବଳ ଗୋଟିଏ ଉଦ୍ଦେଶ୍ୟ ହିଁ ଥିଲା । ମୋର ଲେଖାକୁ ବହୁତ ଭଲପାଉଥିବା, ଲେଖିକା-ଝିଅଟିକୁ ନେଇ ନିଜକୁ ଗୌରବାନ୍ୱିତ ମନେକରୁଥିବା ମୋର ଶଯ୍ୟାଶାୟୀ ବୋଉ ମନରେ ଜିଇଁବାର ଇଚ୍ଛାକୁ ବଳବତ୍ତର କରାଇବା । ମୋ ବୋଉ ଥିଲା ମୋ ଲେଖାର ବିମୁଗ୍ଧ ପାଠିକା । 'ଶ୍ରେଷ୍ଠ ଗଳ୍ପ' ପ୍ରକାଶିତ ହେବାପରେ ବୋଉର ଶଯ୍ୟାଧାରରେ ବାପାଙ୍କୁ ବସାଇ ଦୁହିଁଙ୍କ ହାତରେ ମୋର ବହିଟି ରଖି ପ୍ରଣାମ କରିଥିଲି, ଯେମିତି ମୋର ସବୁ ବହି ବେଳକୁ କରିଥାଏ । (ଏ ଜନ୍ମ ପାଇଁ ସେଇଟି ଥିଲା ମୋର ଶେଷ ସୁଯୋଗ; ଯାହା ଆଉ କେବେ ମଧ ମିଳିବ ନାହିଁ ।) ସେତେବେଳେ ବୋଉ ଆଉ ପଢ଼ିବା ଅବସ୍ଥାରେ ନଥିଲା । ମୋର ବଡ଼ନାନୀ ହିଁ ତା ପାଖରେ ବସି ମୋ ଗପଗୁଡ଼ିକ ଧୀରେଧୀରେ ପଢ଼ି ଶୁଣାଇଥିଲା ତାକୁ । ମୋ ଗପ ଶୁଣିବାବେଳେ ରୋଗକଷ୍ଟ ଭୁଲି ତା ମୁହଁ ଉଜ୍ଜ୍ୱଳ ଦିଶୁଥିଲା ।

ଏବେ ମୋର 'ଶ୍ରେଷ୍ଠ ଗଳ୍ପ'ର ଦ୍ୱିତୀୟ ସଂସ୍କରଣ ପ୍ରକାଶ ପାଇବାବେଳେ ବୋଉ-ବାପାଙ୍କର ହାତରେ ତାକୁ ରଖି ନପାରିବାର ଏବଂ ମୋ ମୁଣ୍ଡ ଉପରେ ସେମାନଙ୍କର ସ୍ନେହମୟ ହାତର ସ୍ପର୍ଶକୁ ପ୍ରତ୍ୟକ୍ଷ ଭାବରେ ନପାଇବାର କଷ୍ଟ ମୋତେ ଲୋତକାପ୍ଲୁତ କରିଦେଉଛି । ମୁଁ ଜାଣିଛି- ସେମାନେ ଯୋଉଠି ଥିଲେ ବି ମୋତେ ନିଶ୍ଚୟ ଆଶୀର୍ବାଦ କରିବେ ।

ପ୍ରବୀଣା ମହାନ୍ତି

# ଶ୍ରେଷ୍ଠ ଗଳ୍ପ

# ଆତ୍ମଜା

ପ୍ରିୟାଂଶୁଙ୍କୁ ଏୟାରପୋର୍ଟ୍‌ରେ ବିଦାୟ ଦେଇ ଆସିବା ପରେ ଶ୍ରେୟାର ଚତୁର୍ଦ୍ଦିଗ ନିଃସ୍ତବ୍ଧ ହୋଇଯାଇଥିଲା । ଏତେ ଲୋକଙ୍କର କୋଳାହଳ, ଗାଡ଼ିମୋଟର୍‌ର ପେଁ ପାଁ ଶବ୍ଦ କିଛି ଆଉ ଶୁଭୁ ନଥିଲା ତାକୁ । ଛାତି ଭିତରୁ ଉତୁରି ଆସୁଥିବା ହାବୁକା ହାବୁକା କୋହକୁ କେମିତି ଅଟକାଇବ, ସେ ବୁଝି ପାରୁନଥିଲା । ଅଳ୍ପ କିଛି ଦିନ ତଳେ ସମ୍ପୂର୍ଣ୍ଣ ଭାବରେ ଅପରିଚିତ ଥିବା ଜଣେ ବ୍ୟକ୍ତି ତା' ଭିତରଟାକୁ କେତୋଟି ମାତ୍ର ଦିନରେ ଏତେ ବେଶି ଆବୋରି ବସିଥିଲେ ଯେ ତାଙ୍କ ବିନା ସବୁ ଶୂନ୍ୟ ଲାଗୁଥିଲା । କେତେ ଦିନ ହେଲା କ'ଣ ହୋସ୍‌ରେ ଥିଲା ସେ ? ସିଏ ତ କୋଉ ପରୀରାଇଜରେ କି ସ୍ୱପ୍ନପୁରୀରେ ପହଞ୍ଚି ଯାଇଥିଲା । ଜୀବନରେ ଏତେ ସୁଖ ସମ୍ଭବ ହୋଇପାରେ – ଏ କଥା ସେ ବିଶ୍ୱାସ କରି ପାରୁନଥିଲା । ପ୍ରିୟାଂଶୁଙ୍କ ପରି ଜୀବନସାଥୀ ପାଇ ଧନ୍ୟ ହୋଇଯାଇଥିଲା ସେ । ତାଙ୍କଠାରୁ ମୁହୂର୍ତ୍ତେ ମଧ ଅଲଗା ରହିବାପାଇଁ ଚାହୁଁ ନଥିଲା । ଅଥଚ ପ୍ରିୟାଂଶୁ ଯେତେବେଳେ କାଲିଫର୍ଣ୍ଣିଆ ଯିବାକୁ ବାହାରିଲେ, ଶ୍ରେୟା ତାଙ୍କ ସହିତ ଯିବାର ଉପାୟ ନଥିଲା । ବିଦେଶ ଯାତ୍ରା ପାଇଁ ଯାହା ସର୍ବପ୍ରଥମ ଆବଶ୍ୟକତା, ସେଇ ପାସ୍‌ପୋର୍ଟ୍ କି ଭିଜା ନଥିଲା ତା'ର । ଏତେ ଶୀଘ୍ର ସେସବୁ ତା'ର ଆବଶ୍ୟକ ହେବ ବୋଲି ସେ ଜାଣିଥିଲା, ନା ଜାଣିଥିଲା ଏତେ ଶୀଘ୍ର ତା'ର ବାହାଘର ହୋଇଯିବ ବୋଲି ? ସବୁ କଥାରେ ଯେମିତି ଜିଦ୍ ଧରି ବସେ, ସେମିତି ଅଡ଼ିବସିଥିଲା ଏବେ ବାହା ହେବନାହିଁ । ଯେପର୍ଯ୍ୟନ୍ତ ପ୍ରିୟାଂଶୁଙ୍କୁ ଦେଖି ନଥିଲା, ଜାଣିନଥିଲା – ସେପର୍ଯ୍ୟନ୍ତ ନିଜ ଜିଦ୍‌ରେ ଅଟଳ ଥିଲା ସେ । କିନ୍ତୁ ଯେଉଁ ଦିନ ତାଙ୍କୁ ପ୍ରଥମେ ଦେଖିଲା, ତାଙ୍କ ସହିତ କଥାବାର୍ତ୍ତା କଲା – ନିଜର ମତ ବଦଳାଇବାକୁ ବାଧ ହୋଇଥିଲା । ପ୍ରିୟାଂଶୁଙ୍କର ମଧ ବର୍ତ୍ତମାନ ବାହା ହେବାର ନଥିଲା । ଜଣେ ସମ୍ପର୍କୀୟଙ୍କର ବାହାଘରରେ ଯୋଗଦେବାକୁ ନିଜର ବାପା ମାଆଙ୍କ ସହିତ ସେ କାଲିଫର୍ଣ୍ଣିଆ ଆସିଥିଲେ ।

ବିବାହଯୋଗ୍ୟ ପୁଅ ଝିଅ ଥିଲେ ବାହାଘର କଥା ପଡ଼େ । ବିଭିନ୍ନ ମାଧମରେ ପ୍ରସ୍ତାବମାନ ଆସେ । ନିଜ ସମ୍ପର୍କୀୟଙ୍କ ବାହାଘରରେ ପ୍ରିୟାଂଶୁଙ୍କର ବାପା ମାଆ ଶ୍ରେୟାକୁ

ଦେଖିଥିଲେ। ଦେଖିବା ମାତ୍ରେ ଭାରି ପସନ୍ଦ ହୋଇଥିଲା ସେମାନଙ୍କର। ପ୍ରିୟାଂଶୁଙ୍କର ବାହାଘର ପାଇଁ ପାତ୍ରୀର ସନ୍ଧାନ କରିବା ମଧ୍ୟ ତାଙ୍କ ଭାରତ ଆସିବାର ଅନ୍ୟତମ ଲକ୍ଷ୍ୟ ଥିଲା। କଥା ଥିଲା - ଏଥର ଝିଅ ଦେଖି ପସନ୍ଦ କରି କଥା ପକ୍କା କରି ଚାଲିଯିବେ। ବାହାଘର ହେବ ଆସନ୍ତା ବର୍ଷ। ଶ୍ରେୟା ବିଷୟରେ ସନ୍ଧାନ କରି ମଧ୍ୟସ୍ଥିଙ୍କ ଜରିଆରେ ପ୍ରସ୍ତାବ ପଠାଇଥିଲେ ସେମାନେ। ସେ ପ୍ରସ୍ତାବକୁ ନାକଚ କରି ଦେଇଥିଲା ଶ୍ରେୟା।

- "ବାହାଘର ! ନେଭର୍, ଏବେ ନୁହେଁ କି କେବେ ନୁହେଁ।" - କହିଥିଲା ଶ୍ରେୟା।

- "ମୋ ମାଆଟା ପରା - ଏତେ ଭଲ ପ୍ରସ୍ତାବ, ପିଲାଟା ଭାରି ସୁନ୍ଦର - ତୋ ସହିତ ଭଲ ମାନିବ। କମ୍ପ୍ୟୁଟର୍ ଇଞ୍ଜିନିୟର୍ ଅଛି କାଲିଫର୍ଣ୍ଣିଆରେ। ସେମାନଙ୍କ ପରିବାର ସେଠିକାର ବାସିନ୍ଦା ହୋଇ ରହିଯାଇଛନ୍ତି। ତାଙ୍କ ପୁଅ ପାଇଁ ଓଡ଼ିଆ ଘରର ଝିଅଟିଏ ଦରକାର।" - ବାପା କହିଥିଲେ।

- "ଓଃ - ଆମେରିକାନ୍ ଡଲାର୍ ଆଉ ଇଣ୍ଡିଆନ୍ କଲ୍‌ଚର୍ ଦରକାର ପରା ! ସେମିତି ଲୋକଙ୍କୁ ବାହା ହେବାକୁ ବହୁତ ଝିଅ ଲମ୍ବା କ୍ୟୁ' ରେ ଠିଆ ହୋଇଯିବେ; ମୋର ପସନ୍ଦ ନୁହେଁ। ମୋ ପାଇଁ 'ମେରା ଭାରତ ମହାନ୍'- ମୋ ପାଇଁ ମୋ ଓଡ଼ିଶା ସବୁଠୁ ଭଲ, ଆଉ ଓଡ଼ିଶା ଭିତରେ ଆମ ଭୁବନେଶ୍ୱର ମୋର ସବୁଠୁ ପ୍ରିୟ - ଭୁବନେଶ୍ୱରରେ ପୁଣି ଆମ ଘର - ମୋ ବାପା- ଏମାନଙ୍କୁ ଛାଡ଼ି କୋଉ ସ୍ୱର୍ଗକୁ ବି ଯିବାକୁ ଇଚ୍ଛା ନାହିଁ ମୋର।" - ଶ୍ରେୟା କହିଥିଲା।

- "ଆଉ ମୁଁ ଯଦି ସ୍ୱର୍ଗକୁ ଚାଲିଯାଏ, କେମିତି ରହିବୁ ଏକା ?" - ବାପା ଅକସ୍ମାତ୍ ପଚାରିଦେଇଥିଲେ।

ବାପାଙ୍କର ଏ ପ୍ରଶ୍ନରେ ଶ୍ରେୟା ଆଖିରେ ଲୁହ ଆସିଯାଇଥିଲା। କୁନି ଝିଅଟିଏ ଭଳି ବାପାଙ୍କୁ କୁଣ୍ଢାଇ ଧରି ଆଖି ଛଳଛଳ କରି କହିଥିଲା, "ତୁମ ସାଙ୍ଗରେ ମୁଁ ବି ସ୍ୱର୍ଗକୁ ପଳେଇବି।"

- "ଛି ମା, ସେମିତି କହନି। ତୋର ଏଇନେ ପିଲା ବୟସ। ତୋ ପାଇଁ କ'ଣ ଦରକାର ତୁ ବୁଝି ପାରୁନାହୁଁ ବୋଲି ଏମିତି କହୁଛୁ। ହଉ, ବାହା ନ ହ' ପଛେ ପିଲାଟାକୁ ଥରେ ଦେଖିଦେ ତ ! ସେମାନେ କୋଉ ଏବେ ବାହାଘର ପାଇଁ ତରତର କରୁଛନ୍ତି କି ? ସେମାନଙ୍କର ପସନ୍ଦ ହେଲେ ନିର୍ବନ୍ଧ କରି ରଖିଦେବେ। ବର୍ଷକ ପରେ ବାହାଘର ହେବ। ତାଙ୍କର ତ ସବୁ ବନ୍ଧୁବାନ୍ଧବ ବିଦେଶରେ। ସମସ୍ତଙ୍କର ଏକାଠି ହେବାର ସୁବିଧା ଦେଖି ବାହାଘର ଦିନ, ତାରିଖ ଠିକ୍ କରିବେ। ବର୍ଷକ ଭିତରେ କ'ଣ ହେବ, କିଏ କହିବ ?" ବାପା ଶ୍ରେୟାକୁ ବୁଝାଇ କହିଥିଲେ।

ତଥାପି ଶ୍ରେୟା ଅବୁଝା ହେଉଥିଲା, "ସେମାନଙ୍କର ପସନ୍ଦଟା ଜରୁରୀ- ମୋ ପସନ୍ଦର କିଛି ବି ମୂଲ୍ୟ ନାହିଁ ? ମୁଁ ଯଦି ନାପସନ୍ଦ କରିଦେବି ତୁମର କାଲିଫର୍ଣିଆବାଲା କମ୍ପ୍ୟୁଟର୍ ଇଞ୍ଜିନିୟରକୁ ?"

– "ତା'ହେଲେ ଆଉ ବାହାଘରର ପ୍ରଶ୍ନ ଉଠୁଛି କୋଉଠୁ ?" – ବାପା କହିଥିଲେ ।

– "ଠିକ୍ ଅଛି, ତେବେ ଡାକ ସେମାନଙ୍କୁ । ମୁଁ ତାଙ୍କୁ ନାପସନ୍ଦ କରିବି ନିଶ୍ଚୟ, ଏଥିରେ ସନ୍ଦେହ ନାହିଁ ।" ଶ୍ରେୟା ଦୃଢ଼ କଣ୍ଠରେ ଜଣାଇ ଦେଇଥିଲା ।

ପ୍ରଥମ ଦେଖାରେ ପ୍ରିୟାଂଶୁ ବେଶ୍ ଭଲ ଲାଗିଥିଲେ ଶ୍ରେୟାକୁ । ଭଦ୍ର, ମାର୍ଜିତ, ସୁଦର୍ଶନ ଏବଂ ରୁଚିସମ୍ପନ୍ନ ସେହି ତରୁଣ ଜଣଙ୍କୁ କୋଉ ଆଖି ଦେଖାଇ ନାପସନ୍ଦ କରିଦେବ, ଭାବି ପାରୁନଥିଲା ସେ । ପ୍ରିୟାଂଶୁଙ୍କୁ ମଧ୍ୟ ଶ୍ରେୟା ଖୁବ୍ ଭଲ ଲାଗିଥିଲା । ଅଳ୍ପ ସମୟର କଥାବାର୍ତ୍ତା ଏବଂ ସାକ୍ଷାତ୍ ପରେ ଦୁହେଁ ଅନୁଭବ କରିଥିଲେ ସେମାନେ ଯେମିତି ପରସ୍ପରର ପରିପୂରକ, ଜଣକ ବିନା ଅନ୍ୟଜଣେ ଅସମ୍ପୂର୍ଣ୍ଣ । ଯୋଉ ଶ୍ରେୟା ବାହା ହେବ ନାହିଁ ବୋଲି ଅଡ଼ି ବସିଥିଲା, ସିଏ ହିଁ ଜଣାଇଦେଲା – ଯଦି ବାହା କରିବା ନିହାତି ଦରକାର, ପ୍ରିୟାଂଶୁଙ୍କ ସହିତ ତା'ର ଯଥାଶୀଘ୍ର ବାହାଘର ହୋଇଯାଉ ।

ବାପାଙ୍କର ବନ୍ଧୁ ଏବଂ ଶୁଭେଚ୍ଛୁମାନେ, ସେମାନଙ୍କର ଆତ୍ମୀୟସ୍ୱଜନମାନେ ପରାମର୍ଶ ଦେଇଥିଲେ- ପ୍ରିୟାଂଶୁ ଏବଂ ତାଙ୍କ ପରିବାର ସମ୍ପର୍କରେ ଖୋଜ୍ ଖବର ନେବା ପରେ ବାହାଘର କରିବାକୁ । ଏଡ଼େ ସୁନ୍ଦର ପିଲା, ଯୋଗ୍ୟ ପିଲା – ଆମେରିକା ଭଳି ଦେଶରେ ପୁଅଝିଅଙ୍କ ମଧ୍ୟରେ ଯୋଉ ଖୋଲାମେଲା ମିଳାମିଶା – କିଏ ଜାଣେ ପ୍ରିୟାଂଶୁର କାହା ସହିତ ସମ୍ପର୍କ ନଥିବ ବୋଲି ! ଏମିତି ତ ବହୁତ ଦେଖିବାକୁ ଓ ଶୁଣିବାକୁ ମିଳେ । ଶ୍ରେୟା କାହାରି କଥା ଶୁଣିନଥିଲା । ଅଗତ୍ୟା ସବୁଥର ଭଳି ତା' ବାପା ତା'ର ଜିଦ୍‌କୁ ବଜାୟ ରଖି ପ୍ରିୟାଂଶୁଙ୍କର ବାପାମାଆଙ୍କ ସହିତ କଥାବାର୍ତ୍ତା କଲେ । ସେମାନେ ଏତେ ଶୀଘ୍ର ବାହାଘର କରିବାକୁ ପ୍ରସ୍ତୁତ ନଥିଲେ ବି କେଜାଣି କାହିଁକି ରାଜି ହୋଇଗଲେ ।

ଆର୍ଯ୍ୟସମାଜ ରୀତିରେ ସେମାନଙ୍କର ବାହାଘର ହୋଇଗଲା । ହୋଟେଲ୍‌ରେ ରିସେପ୍‌ସନ୍ ଦିଆଗଲା । ଭୋଜି ପରଦିନ ପ୍ରିୟାଂଶୁଙ୍କର ବାପା ମାଆ କାଲିଫର୍ଣିଆ ଫେରିଗଲେ । ତାଙ୍କ ବାପାଙ୍କର ଛୁଟି ସରି ଯାଇଥିଲା ।ପ୍ରିୟାଂଶୁ ତାଙ୍କର ଛୁଟି ବଢ଼େଇ ଶ୍ରେୟାକୁ ନେଇ ଦକ୍ଷିଣଭାରତ ବୁଲିବାକୁ ଗଲେ । ଶ୍ରେୟାକୁ କହିଥିଲେ, ତାଙ୍କର ପ୍ରକୃତ ହନିମୁନ୍ ସୁଇଜରଲାଣ୍ଡ୍‌ରେ ହେବ । ଏଠୁ ଗଲା ପରେ ସେ ଶ୍ରେୟାକୁ ଯଥାଶୀଘ୍ର କାଲିଫର୍ଣିଆ ନେବାର ବନ୍ଦୋବସ୍ତ କରିବେ ଏବଂ ତା'ପରେ ସେମାନେ ସାଙ୍ଗ ହୋଇ ସୁଇଜରଲାଣ୍ଡ୍ ଯିବେ ।

ପ୍ରିୟାଂଶୁଙ୍କର ଭଲ ପାଇବାର ସମ୍ମୋହନରେ 'ମେରା ଭାରତ ମହାନ୍' ଇତ୍ୟାଦି

ସ୍ଲୋଗାନ୍ ଭୁଲି ଯାଇଥିଲା ଶ୍ରେୟା। କେବଳ ପ୍ରିୟଂଶୁମୟ ହୋଇଯାଇଥିଲା ତା'ର ଜୀବନ। ସିଏ ଚାଲିଯିବା ପରେ ଶ୍ରେୟା ଅନୁଭବ କରି ପାରୁଥିଲା ଏକାକୀତ୍ୱର ଯନ୍ତଣା କ'ଣ ? ଯୋଉ ବାପାଙ୍କୁ କେନ୍ଦ୍ର କରି ଶ୍ରେୟାର ପୃଥିବୀ ଘୂରି ବୁଲୁଥିଲା-ସେଇ ବାପା ସେଇମିତି ରହିଥିଲେ ନିଜ ଜାଗାରେ-ନିଜ ପୂର୍ବ ଅବସ୍ଥାରେ; ଶ୍ରେୟାର ପୃଥିବୀ କିନ୍ତୁ ଗତିପଥ ପରିବର୍ତ୍ତନ କରି ଦେଇଥିଲା। ଜୀବନସାଥୀର ସାହଚର୍ଯ୍ୟ ବିନା ଜୀବନ କେମିତି ନିରର୍ଥକ ମନେହୁଏ, ରଙ୍ଗହୀନ ବିସ୍ୱାଦ ପାଲଟିଯାଏ- ସେଇ କଥା ସେ ଏବେ ମର୍ମେ ମର୍ମେ ଉପଲବ୍ଧି କରୁଥିଲା। ଶ୍ରେୟାର ମାଆ ନଥିଲେ। ସିଏ ହାଇସ୍କୁଲ୍‌ରେ ପଢୁଥିବା ବେଳେ ଗୋଟାଏ ଦୁର୍ଘଟଣାରେ ଚାଲିଯାଇଥିଲେ ସେ। ମାଆଙ୍କ ଅବର୍ତ୍ତମାନରେ ବାପାଙ୍କ ଜୀବନ କେମିତି ହାହାକାରରେ ଭରି ଯାଇଥିଲା- ସେକଥା ଜାଣିବାର ସେଭଳି ବୟସ ତା'ର ହୋଇନଥିଲେ ମଧ ଅଳ୍ପ ଅଳ୍ପ ବୁଝୁଥିଲା ଶ୍ରେୟା। ତା'ର ପିଲାବୁଦ୍ଧିରେ ବାପାଙ୍କୁ କେମିତି ଖୁସି ରଖିପାରିବ- ସେଥିପାଇଁ ସେ ଯଥାସମ୍ଭବ ଚେଷ୍ଟା କରୁଥିଲା।

ବାପାଙ୍କର ଗୁରୁଜନ ସ୍ଥାନୀୟ ଲୋକମାନେ, ବନ୍ଧୁମାନେ, ଶୁଭେଚ୍ଛୁମାନେ ତାଙ୍କୁ ପ୍ରରୋଚିତ କରୁଥିଲେ ଆଉଥରେ ବିବାହ କରିବା ପାଇଁ। ସେତେବେଳେ କେତେ ଅବା ବୟସ ତାଙ୍କର ? ନ ଜାଣିଥିବା ଲୋକ ତାଙ୍କୁ ଯୁବକ ବୋଲି ହିଁ କହିବ। ଅନେକ ନାହିଁ ନାହିଁ କରିବା ପରେ ଶେଷରେ ରାଜି ହୋଇଯାଇଥିଲେ ଶ୍ରେୟାର ବାପା; ରାଜି ହୋଇଥିଲେ କେବଳ ଶ୍ରେୟା ମୁହଁକୁ ଚାହିଁ। ତାଙ୍କର ଆଦରିଣୀ କନ୍ୟାଟି ଅନଭ୍ୟସ୍ତ ହାତରେ ଘରକାମ, ରୋଷେଇ ଇତ୍ୟାଦି କରିବାକୁ ଯାଇ ସବୁଦିନ ଗୋଡ଼ହାତ ଖଣ୍ଡିଆ କରିବାଠାରୁ ଆରମ୍ଭ କରି ଚେଙ୍କ ଲାଗିବା ଯାଏ କିଛି ନା କିଛି ଦୁର୍ଘଟଣା ଘଟାଉଥିଲା। କାମ କରି କରି ଏତେ ହାଲିଆ ହୋଇଯାଉଥିଲା ଯେ ପାଠପଢ଼ି ପାରୁନଥିଲା ଠିକ୍‌ରେ। ବଢ଼ନ୍ତା ବୟସର ଝିଅଟି ପାଇଁ ବାପା ଅପେକ୍ଷା ମାଆର ଆବଶ୍ୟକତା ଖୁବ୍ ବେଶି; ଏଇ କଥା ହିଁ ବୁଝାଇ ଦିଆଯାଇଥିଲା ତାଙ୍କୁ।

କିନ୍ତୁ ଯୋଉଦିନ କୋର୍ଟ୍ ମ୍ୟାରେଜ୍ କରି ଆଉ ଜଣେ ନାରୀଙ୍କୁ ସାଙ୍ଗରେ ଧରି ସେ ଘରକୁ ଫେରିଥିଲେ, କି ପ୍ରକାର କାଣ୍ଡ କରିଥିଲା ଶ୍ରେୟା ! ତା' ଭଳି ଜିଦ୍‌ଖୋର ଝିଅ ଆଉ ସଂସାରରେ ନଥିବେ କେହି। ସେ ଏକାଜିଦ୍ ଧରି ବସିଥିଲା, "ସେଇ ସ୍ତ୍ରୀଲୋକ ଜଣକ ଯଦି ଘରେ ରହିବ- ମୁଁ କୁଆଡ଼େ ନାଇଁ କୁଆଡ଼େ ଚାଲିଯିବି- ନ ହେଲେ ଆତ୍ମହତ୍ୟା କରିବି।" ଯେତେ ଯିଏ ବୁଝେଇଲେ ମଧ ସିଏ ବୁଝିବାକୁ ନାରାଜ। କାନ୍ଦିକାଟି ନ ଖାଇ ନ ପିଇ ଏମିତି ଅବସ୍ଥା ସୃଷ୍ଟି କଲା ଯେ ବାପା ବାଧ ହୋଇ ସେଇ ସ୍ତ୍ରୀଲୋକ ଜଣଙ୍କୁ ଅନ୍ୟତ୍ର ରଖିବାର ବ୍ୟବସ୍ଥା କରିଦେଲେ। ସେକଥା ବି ବରଦାସ୍ତ କରିପାରିନଥିଲା ଶ୍ରେୟା। ବାପାଙ୍କର ଅଫିସ୍‌ରୁ ଫେରିବାକୁ ସାମାନ୍ୟ ଡେରି ହେଲେ ସେ ଘରେ ପ୍ରଳୟ କରୁଥିଲା।

- "ଯାହା ହେଲେ ବି ସେ ଏବେ ତୋ' ବାପାଙ୍କର ସ୍ତ୍ରୀ, ସେଇ ହିସାବରେ ତୋ'ର ମାଆ ମଧ୍ୟ।" ଶ୍ରେୟାକୁ କେହି କେହି ବୁଝାଇବାକୁ ଚେଷ୍ଟା କରିଥିଲେ।

- "ନା, ମୋ ମାଆ ଜାଗାରେ ଆଉ କେହି ରହିବେ ନାହିଁ, ଘରେ ନୁହେଁ କି ବାହାରେ ନୁହେଁ। ମୋ ମାଆର ଅଧିକାର ଆଉ କାହାକୁ ଦେଲେ ମୁଁ ସହିପାରିବି ନାହିଁ। ଯୋଉଦିନ ଜାଣିବି- ବାପା ଏ କଥା କରିଛନ୍ତି, ସେଇଦିନଠୁ ତାଙ୍କ ପାଇଁ ଶ୍ରେୟା ମରିଯିବ।"

ବାପା ତାକୁ କେତେ ଭଲ ପାଉଥିଲେ - ସେ କଥା ଶ୍ରେୟା ଉପଲବ୍ଧି କରିପାରିନଥିଲା। ତେଣୁ ନିପଟ ଗାଉଁଲୀ, ଅଶିକ୍ଷିତ ସ୍ତ୍ରୀଲୋକଟେ ପରି ନିଜ ମୁଣ୍ଡ ଛୁଆଇଁ ବାପାଙ୍କୁ ଶପଥ କରାଇଥିଲା ସେଇ ସ୍ତ୍ରୀଲୋକଟି ସହିତ ସମ୍ପର୍କ ନ ରଖିବାକୁ।

କି ଅଦ୍ଭୁତ ପ୍ରକାର ପାଗଳାମି ଥିଲା ତା'ର! ତା'ରି ପାଗଳାମି ଯୋଗୁଁ ବାପା ସାରା ଜୀବନ ଏକାକୀତ୍ୱ ମଧ୍ୟରେ କାଟିବାକୁ ବାଧ୍ୟ ହୋଇଥିଲେ; ବିବାହର ଆବଶ୍ୟକତା ଅନୁଭବ କରିନଥିଲେ ଶ୍ରେୟାର ମଙ୍ଗଳ ପାଇଁ। ସେଇ ଶ୍ରେୟା ଯେତେବେଳେ ନୂଆ ମା'ଟିକୁ ଗ୍ରହଣ କରିପାରିଲା ନାହିଁ, ପ୍ରଚଣ୍ଡ ପ୍ରତ୍ୟାଖ୍ୟାନର ଆଘାତରେ ସବୁକିଛି ଭାଙ୍ଗିରୁଜି ଦେବା ପାଇଁ ଚାହିଁଲା, କ'ଣ ଦରକାର ଆଉ ସେ ସମ୍ପର୍କରେ ? କୋଉ ପ୍ରକାରରେ ସେଇ ମହିଳା ଜଣକୁ ବାପା ତାଙ୍କ ଜୀବନରୁ ବିଦାୟ ଦେଇଥିଲେ ଶ୍ରେୟା ଜାଣେନାହିଁ। କିନ୍ତୁ ସିଏ ଯେ ତାଙ୍କର ଆଖ ପାଖରେ କୋଉଠି ବି ନାହାନ୍ତି ସେକଥା ଉପଲବ୍ଧି କରି ନିଶ୍ଚିନ୍ତ ହୋଇଥିଲା। କେବଳ ନିଜର ଖିଆଲ୍ ଖୁସିକୁ ପ୍ରାଧାନ୍ୟ ଦେଇ ଆସିଥିଲା ସେ। ବାପାଙ୍କର ମଧ୍ୟ ଜୀବନରେ କିଛି ଆବଶ୍ୟକତା ରହିଛି - ଆନନ୍ଦ ପାଇବାର କିଛି ଅଧିକାର ରହିଛି - ସେ ସବୁ କଥା କେବେ ତା' ମନକୁ ଆସିନାହିଁ। କେଡ଼େ ସ୍ୱାର୍ଥପର ସେ ସତେ ?

ପ୍ରିୟାଂଶୁଙ୍କର ଅନୁପସ୍ଥିତି ଆଜି ପ୍ରଥମ କରି ତାକୁ ନିଜର ଭୁଲ୍ ସମ୍ପର୍କରେ ସଚେତନ କରିଦେଇଛି। ତା' ଜୀବନରେ ଏବେ ଏବେ ଆସିଛନ୍ତି ପ୍ରିୟାଂଶୁ। କିନ୍ତୁ ଲାଗୁଛି ସିଏ ଯେମିତି ତା' ଜୀବନର ଅବିଚ୍ଛେଦ୍ୟ ଅଙ୍ଗ। ମାଆ ସହିତ ବାପାଙ୍କର ସମ୍ପର୍କ ବି କିଛି କମ୍ ମଧୁର ନଥିଲା। ପ୍ରେମମୟୀ ପତ୍ନୀଟିଏ ହରାଇବାର ଦୁଃଖ ସହିତ ଗୋଟିଏ ନିରାପଦ ସୁଖୀ ଜୀବନରୁ ବଞ୍ଚିତ ହେବାର ଦୁଃଖ କିଛି କମ୍ ନଥିଲା। ନିଜର ଉଜୁଡ଼ା ସଂସାରକୁ ପୁଣିଥରେ ସଜାଡ଼ିବାକୁ ହୁଏତ ଚାହିଁଥିଲେ ସେ - ଚାହିଁଥିଲେ ଆଉଥରେ ସ୍ୱପ୍ନ ଦେଖିବା ପାଇଁ- ହସିବା ପାଇଁ। ସେଇ ଅନୁମତି ତାଙ୍କୁ ଦେଇନଥିଲା ତାଙ୍କର ଆତ୍ମଜା। ବିଚାରପତିର ଆସନରେ ବସି ବାପାଙ୍କୁ ଆଜୀବନ ଏକାକୀତ୍ୱର ଦଣ୍ଡ ଭୋଗିବାର ରାୟ ଶୁଣାଇ ଦେଇଥିଲା ଶ୍ରେୟା। ତା' ପ୍ରତି ରହିଥିବା ପ୍ରଚଣ୍ଡ ସ୍ନେହ ତା' ବାପାଙ୍କୁ ବାଧ୍ୟ କରିଥିଲା ନିଜ ପ୍ରତି ଉଦାସୀନ ହେବାକୁ।

ବିଚାରା ବାପା! ଯୋଉ ଶ୍ରେୟା ତାଙ୍କ ଜୀବନ ବଞ୍ଚିବାର ଏକମାତ୍ର ଅବଲମ୍ବନ

ଥିଲା, ଉଦ୍ଦେଶ୍ୟ ଥିଲା, କର୍ତ୍ତବ୍ୟ ଥିଲା - ସେଇ ଶ୍ରେୟା ଏବେ କେଡ଼େ ଅନାୟାସରେ ତାଙ୍କୁ ପର କରିଦେଇ ଆଉ ଜଣଙ୍କ ପାଇଁ ଉନ୍ମୁଖ ହୋଇ ଚାଲିଯିବାକୁ ପ୍ରସ୍ତୁତ ହେଉଛି । ସାତ ସାଗର ପାରିହୋଇ ଶ୍ରେୟା ଭିନ୍ନ ଦେଶକୁ ଚାଲିଗଲେ ବାପା କେମିତି ରହିବେ - ସେ ତ ଆଉ ସବୁବେଳେ ଦେଖିବାକୁ ଆସି ପାରିବ ନାହିଁ । ସତରେ କେମିତି ରହିବେ ତା' ବାପା ? ସର୍ବହରା, ନିଃସ୍ୱ ପାଲଟି ଯାଇଥିବା ଅସହାୟ ମଣିଷ ଭାବରେ ବାପାଙ୍କୁ କଳ୍ପନା କରି ଶ୍ରେୟା ଆଖିରେ ଲୁହ ଚାଲିଆସିଲା । ଏଇ ବୟସରେ ସାଥୀଟିଏର ଆବଶ୍ୟକତା କେତେ ବେଶି ରହିଥାଏ- ସେ ଏବେ ଜାଣୁଛି । କିନ୍ତୁ କ'ଣ କରିବ - ନିଜ ଅବୁଝାପଣରେ ନିଜେ ତ ନଷ୍ଟ କରିଦେଇଛି ସବୁ । କିଶୋରୀ ବୁଦ୍ଧିରେ କେତେ ବଡ଼ ଆଘାତ ଦେଇଛି ଦୁଇଜଣ ମଣିଷଙ୍କୁ ! ବାପା ତ ଜନ୍ମଦାତା - ସିଏ ତା'ର ଆଘାତକୁ ସହିବାକୁ ବାଧ୍ୟ । ଆଉ ଜଣେ - ଯିଏ ତାଙ୍କର ଭଙ୍ଗା ସଂସାରକୁ ନୂଆ ଭାବରେ ସଜାଡ଼ି ଦେବାର ମନଟିଏ ନେଇ ବାପାଙ୍କ ପାଇଁ ଶଙ୍ଖା, ସିନ୍ଦୂର ପିନ୍ଧି ଏ ଘରେ ପାଦ ଦେଇଥିଲେ, ଶ୍ରେୟାର ଅସହଣିପଣ ଯୋଗୁଁ ତାଙ୍କୁ ବିଦାୟ ନେବାକୁ ପଡ଼ିଲା । ସେ ଏବେ କୋଉଠି - କିଏ କହିବ ?

ପ୍ରିୟାଂଶୁ କାଲିଫର୍ଣ୍ଣିଆ ଚାଲିଗଲା ପରେ ବାପାଙ୍କ ପାଖରେ ହିଁ ରହୁଥିଲା ଶ୍ରେୟା । ଯେଉଁ କେତେଦିନ ଭାରତରେ ଅଛି - ସେତକ ବାପାଙ୍କ ପାଖେ ପାଖେ ରହିବାକୁ ଚାହିଁଥିଲା । କିନ୍ତୁ ବାପାଙ୍କୁ ଯେତିକି ଦେଖୁଥିଲା, ସେତିକି ସେତିକି ବିଷଣ୍ଣ ହୋଇଯାଉଥିଲା ତା'ର ମନ । ଏତେବର୍ଷ ଧରି ସବୁଠାରୁ ଅନ୍ତରଙ୍ଗ ହୋଇ ପାଖେ ପାଖେ ରହିଥିଲେ ବି ବାପାଙ୍କୁ ଯେମିତି ପ୍ରଥମ କରି ଦେଖୁଥିଲା ସେ । ତାଙ୍କର ପ୍ରାଣଠାରୁ ବଳି ପ୍ରିୟ ଏକମାତ୍ର ସନ୍ତାନଟି ତାଙ୍କ ନିକଟରୁ ସବୁଦିନ ପାଇଁ ଦୂରକୁ ଚାଲିଯିବ - ଏ କଷ୍ଟ ତାଙ୍କ ହୃଦୟକୁ ବିଦୀର୍ଣ୍ଣ କରି ଦେଉଥିଲେ ବି କାହାକୁ ସେକଥା ଜାଣିବାର ସୁଯୋଗ ଦେଉନଥିଲେ । ଶ୍ରେୟାକୁ ଖୁସି ରଖିବାକୁ ଯାହା ଯାହା କରିବା ତାଙ୍କ ଦ୍ୱାରା ସମ୍ଭବ, ସେ କରୁଥିଲେ । ଶ୍ରେୟାକୁ ଖୁସି ରଖିବା ବ୍ୟତୀତ ତାଙ୍କ ଜୀବନର ଆଉ କୌଣସି ଲକ୍ଷ୍ୟ ବା ଉଦ୍ଦେଶ୍ୟ ନଥିଲା । ଜୀବନଟା ସାରା ସିଏ ତ ଏଇଆ ହିଁ କରି ଆସିଛନ୍ତି । କିନ୍ତୁ ଶ୍ରେୟା ଚାଲିଗଲା ପରେ କ'ଣ କରିବେ ସେ- କେମିତି କାଟିବେ ତାଙ୍କର ନିଃସଙ୍ଗ ଜୀବନ ? ବାପାଙ୍କୁ ସାଙ୍ଗରେ ନେଇ ଯାଇହୁଅନ୍ତାକି ? ସେଇ ଦୂର ଦେଶରେ ବାପାଙ୍କ ବିନା ଶ୍ରେୟାକୁ କ'ଣ ଭଲ ଲାଗିବ ?

- "ପାଗଳୀଟାଏ କି ? ଏମିତି କ'ଣ ହୁଏ ? ଝିଅର ଶାଶୂଘରେ ଯାଇ ମୁଁ ରହିବି କୋଉ ଦୁଃଖରେ ? ମୋ ପାଇଁ ବ୍ୟସ୍ତ ହ'ନା । ମୋର ଏଠି କିଛି ବି ଅସୁବିଧା ହେବନାହିଁ । ରଘୁଭାଇନା ତ ଅଛି - ଘରକାମ, ରୋଷେଇବାସ, ବଜାର ସଉଦା ସବୁ ସେ କରୁଛି ।

ମୋର ଆଉ ଅସୁବିଧା କ'ଣ ?" - ଶ୍ରେୟାର ପ୍ରସ୍ତାବ ଶୁଣି ବାପା କହିଥିଲେ। ତାଙ୍କ ଜୀବନର ଆବଶ୍ୟକତା କ'ଣ ଏତିକି ?

ପ୍ରିୟାଂଶୁ ସବୁଦିନ ଫୋନ୍ କରୁଛନ୍ତି। ଶ୍ରେୟାକୁ ଏଠାରେ ଛାଡ଼ିଦେଇ ଯାଇଥିବାରୁ ଖୁବ୍ ବ୍ୟାକୁଳ ସେ। ଶ୍ରେୟା କେବେ ଯାଇ ତାଙ୍କ ପାଖରେ ପହଞ୍ଚିବ- ସେଥିପାଇଁ ଦିନ ଗଣୁଛନ୍ତି ସେ। ତା' ଶାଶୂଶ୍ୱଶୁର ମଧ୍ୟ ତା' ସହିତ କଥା ହେଉଛନ୍ତି ଟେଲିଫୋନ୍‌ରେ। ବାପାଙ୍କଠାରୁ ପଚାରି ବୁଝୁଛନ୍ତି ଶ୍ରେୟାର ଯିବା ବ୍ୟବସ୍ଥା କେତେଦୂର ଆଗେଇଲା। ପୂର୍ବ ଭଳି ଆମେରିକା ଯିବାକୁ ଭିଜା ଏତେ ସହଜରେ ମିଳୁନାହିଁ। ବିଶ୍ୱ ବାଣିଜ୍ୟକେନ୍ଦ୍ରର ଦୁର୍ଘଟଣା ପରେ ଖୁବ୍ କଡ଼ାକଡ଼ି ବ୍ୟବସ୍ଥା ଲାଗୁ ହୋଇଛି ବିଦେଶୀମାନଙ୍କ ପାଇଁ।

ଅବଶେଷରେ ଶ୍ରେୟାର ଯିବାର ଦିନଟି ଘୋଷଣା କଲେ ବାପା। ସେକଥା ଶୁଣି ଶ୍ରେୟା ଉଚ୍ଛ୍ୱସିତ କ୍ରନ୍ଦନରେ ଭାଙ୍ଗି ପଡ଼ିଥିଲା। ସେଇ କାନ୍ଦ ଥିଲା ଉଭୟ ଆନନ୍ଦ ଓ ଦୁଃଖର। ନିଜର ପ୍ରିୟତମ ମଣିଷକୁ ଏତେଦିନ ପରେ ଭେଟିବାର ଖୁସି ସହିତ ବାପାଙ୍କଠାରୁ ପ୍ରାୟ ସବୁଦିନ ପାଇଁ ଦୂରକୁ ଚାଲିଯିବାର ଦୁଃଖ ସେ ଅନୁଭବ କରୁଥିଲା। ବାପା ତାକୁ ଆଦର କରି ସାନ୍ତ୍ୱନା ଦେଇଥିଲେ ଏବଂ ଜିନିଷପତ୍ର ସଜାଡ଼ିବା ପାଇଁ କହିଥିଲେ।

ନିଜର ଜିନିଷପତ୍ର ସଜାଡ଼ି ରଖୁଥିବାବେଳେ ଶ୍ରେୟା ସ୍ଥିର କଲା ଯିବା ପୂର୍ବରୁ ବାପାଙ୍କର ସବୁ ଜିନିଷପତ୍ର ସଜାଡ଼ି ବ୍ୟବସ୍ଥିତ କରିଦେଇଯିବ ସେ। ବାହାଘରର ଝାମେଲା ମଧ୍ୟରେ ସବୁ କୁଆଡ଼େ ବିକ୍ଷିପ୍ତ ହୋଇ ରହିଛି। ଏତେଦିନ ଏଠାରେ ରହିବା ଭିତରେ ନିଜର ଭାବନା ନେଇ ସେ ଏତେ ବ୍ୟସ୍ତ ରହୁଥିଲା ଯେ ସେସବୁ ପ୍ରତି ଦୃଷ୍ଟି ଦେଇ ପାରିନଥିଲା। ମାଆ ଚାଲିଯିବା ପରଠାରୁ ବାପାଙ୍କର ଜିନିଷପତ୍ର ସଜାଡ଼ି ସାଇତି ରଖିବାର ଦାୟିତ୍ୱ ସିଏ ନିଜେ ନିଜେ ହାତକୁ ନେଇ ଯାଇଥିଲା। ବାପା କ'ଣ ପିନ୍ଧିବେ, କ'ଣ ଖାଇବେ ସେ କଥା ଶ୍ରେୟା ହିଁ ସ୍ଥିର କରୁଥିଲା। ବାପାଙ୍କର ପୋଷାକ ଆଲମାରି, ବୁକ୍ ସେଲ୍‌ଫ୍, ଟେବୁଲ୍ ଇତ୍ୟାଦି ମଧ୍ୟ ସେ ସଜାଡ଼ି ଦେଉଥିଲା। ବହୁତଦିନ ପରେ ସେ ସବୁ ସଜାଡ଼ି ରଖିବାକୁ ମନ ହେଲା ଶ୍ରେୟାର। ବାପା ଅଫିସ୍‌ରୁ ଫେରି ଘରର ବ୍ୟବସ୍ଥିତ ରୂପ ଦେଖି ନିଶ୍ଚୟ ଖୁସି ହେବେ।

କେତେ ଆଲିମାଲିକା ଜିନିଷପତ୍ର, ପୁରୁଣା ଚିଠି, କାଗଜପତ୍ର ଜମି ଗଲାଣି ଟେବୁଲ୍ ଡ୍ରୟାରରେ। ସେଥିରୁ କ'ଣ ଦରକାରୀ କ'ଣ ଅଦରକାରୀ ଦେଖିଲା ପରେ ଯାଇ ସଫା କରିବ ସେ। ବାହାଘରବେଳେ କିଣା ହୋଇଥିବା କେତେ ଜିନିଷପତ୍ରର ବିଲ୍ ମଧ୍ୟ ପଡ଼ିଛି ସେଥିରେ। ଏଗୁଡ଼ା ଆଉ କ'ଣ ହେବ ? ଅଦରକାରୀ କାଗଜପତ୍ର ଚିରୁ ଚିରୁ ଚିଠିଟିଏ ହାତରେ ପଡ଼ିଲା ତା'ର। ଅଦ୍ଭୁତ ଲାଗିଲା ଚିଠିର ବକ୍ତବ୍ୟ। ଠିକଣାରେ ବାପାଙ୍କ ନାଁ ରହିଛି- ସମ୍ବୋଧନ କିଛି ନାହିଁ କି ପତ୍ରପ୍ରେରକର ନାମ ନାହିଁ। ଚିଠି

ଭିତରେ ଶ୍ରେୟା କଥା ରହିଛି । ଅନ୍ୟର ଚିଠି ପଢ଼ିବା ଅନ୍ୟାୟ ଜାଣି ମଧ୍ୟ ଶ୍ରେୟା ଚିଠିଟିକୁ ନ ପଢ଼ି ରହିପାରିଲା ନାହିଁ । ଲେଖାଅଛି- "ନିମନ୍ତ୍ରଣପତ୍ର ପାଇଲି । ଖୁବ୍ ଇଚ୍ଛା ହେଉଛି ଯାଇ ପହଞ୍ଚିଯିବାକୁ । ଦୂରରୁ ହେଉ ପଛେ ଶ୍ରେୟାକୁ ବୋହୂବେଶରେ ଦେଖିବି- ଜ୍ୱାଇଁକୁ ଦେଖିବି । ଭାରି ସୁନ୍ଦର ନାଆଁଟି ଜ୍ୱାଇଁଙ୍କର । ମୋ ଭାଗ୍ୟରେ ତ ନାହିଁ- ଦୂରରେ ଥାଇ ସେମାନଙ୍କୁ ଆଶୀର୍ବାଦ କରୁଛି ସଂସାରର ସବୁ ସୁଖ, ସବୁ ଆନନ୍ଦ ସେମାନଙ୍କୁ ମିଳୁ । ଖୁବ୍ ଭଲରେ ରହନ୍ତୁ ସେମାନେ ।"

କିଏ ଏଇ ପତ୍ରପ୍ରେରକ - ନା ପତ୍ରପ୍ରେରିକା ? ବାପାଙ୍କ ସହିତ - ଶ୍ରେୟା ସହିତ ତାଙ୍କର ସମ୍ପର୍କ କ'ଣ ? ତା'ପାଇଁ, ପ୍ରିୟାଂଶୁଙ୍କ ପାଇଁ ଯାହା ହୃଦୟରୁ ଏଭଳି ଶୁଭେଚ୍ଛାର ବାର୍ତ୍ତା ଉଚ୍ଚାରିତ ହେଉଛି, ସେ କିଏ ? କାହିଁକି ସେ ଚିଠିରେ କିଛି ସମ୍ବୋଧନ କରି ନାହାନ୍ତି କି ନିଜର ପରିଚୟ ପ୍ରକାଶ କରିନାହାନ୍ତି ? ଶ୍ରେୟା କୌତୂହଳୀ ହୋଇଉଠିଲା । ଖୋଜୁ ଖୋଜୁ ଆଉ ଖଣ୍ଡିଏ ସେଇଭଳି ପତ୍ର ତା ଆଖିରେ ପଡ଼ିଲା । ଲେଖାଅଛି- "ଜାଣେ,ମୋ ଚିଠିର ଉତ୍ତର କେବେ ବି ପାଇବିନି ତୁମଠାରୁ । କିନ୍ତୁ ତୁମ କଥା ନ ଭାବି ରହିପାରୁନି । ଶ୍ରେୟାକୁ ଛାଡ଼ି କେମିତି ବଞ୍ଚିବ ତୁମେ ? ଭଗବାନ ତୁମକୁ ଅନେକ ଧୈର୍ଯ୍ୟଶକ୍ତି ଦେଇଛନ୍ତି । ସେଇ ଧୈର୍ଯ୍ୟର ପରୀକ୍ଷା ସମୟ ଏବେ । ତୁମେ ନିଶ୍ଚୟ ସେଥିରେ ସଫଳତାର ସହିତ ଉତ୍ତୀର୍ଣ୍ଣ ହେବ । ଦୟାକରି ତା' ଆଗରେ ଟିକିଏ ହେଲେ କାନ୍ଦିବନି । ଯୋଉଠିକୁ ବି ସିଏ ଯାଉ- ଯୋଉଠି ଥାଉ - ଭଲରେ ଥାଉ ।"

ଅକ୍ଷରଗୁଡ଼ିକ ବେଶ୍ ସୁନ୍ଦର । ଭାଷା ମଧ୍ୟ ଶୁଦ୍ଧ ଓ ପ୍ରାଞ୍ଜଳ । କିଏ ସେ ଏତେବଡ଼ ଶୁଭଚିନ୍ତକ ଶ୍ରେୟାର ଆଉ ତା' ବାପାଙ୍କର ? ଶ୍ରେୟାର କୌତୂହଳ ଓ ଉତ୍କଣ୍ଠା ବଢ଼ି ଚାଲିଲା । ଯେମିତି ହେଲେ ସେ ଜାଣିବ ଏଇ ଅଜଣା ଶୁଭଚିନ୍ତକଙ୍କୁ । କିନ୍ତୁ ବାପାଙ୍କୁ ପଚାରିବ ବା କେମିତି ? ତାଙ୍କର ଯଦି ଜଣାଇବାର ଥାଆନ୍ତା- କେବେଠୁ ଜଣେଇ ସାରନ୍ତେଣି । ଚିଠିର ଠିକଣା ଦେଖିଲା ଶ୍ରେୟା । ବାପାଙ୍କ ଅଫିସ୍ ଠିକଣାରେ ଆସିଛି ଚିଠି ଦୁଇଟି । ପ୍ରେରକଙ୍କର କୌଣସି ନାମ ବା ଠିକଣା ଲେଖା ନାହିଁ ଲଫାପା ଉପରେ । ତାଙ୍କର ଅନେକ ଚିଠି ତ ଘର ଠିକଣାରେ ଆସେ । ପତ୍ରପ୍ରେରକ ନିଜକୁ ଶ୍ରେୟାଠାରୁ ମଧ୍ୟ ଗୋପନ ରଖିବାକୁ ଚାହାନ୍ତି । ବାପାଙ୍କର କେହି ପ୍ରେମିକା ବା ନାରୀବନ୍ଧୁ ଥାଇପାରନ୍ତି - ଏ କଥା ତା'ର କଳ୍ପନାର ବାହାରେ । ତେବେ କିଏ ସେ ଏଇ ପତ୍ରପ୍ରେରକ ? କ'ଣ ତାଙ୍କର ନାଁ, ଗାଁ, ଠିକଣା ? କିଏ ତାକୁ କହିବ ? କେମିତି ଜାଣିବ ସେ ?

ହଠାତ୍ ଶ୍ରେୟାର ମନେପଡ଼ିଗଲା ବାପାଙ୍କର ଡାଏରୀ କଥା । ସବୁଦିନ ରାତିରେ ଶୋଇବାକୁ ଯିବା ପୂର୍ବରୁ ସେ ଡାଏରୀ ଲେଖନ୍ତି । ଅନେକ ବର୍ଷର ଅଭ୍ୟାସ ତାଙ୍କର ।

ଶ୍ରେୟା ନିଜେ କେବେ ଡାଏରୀ ଲେଖେ ନାହିଁ। ତେଣୁ ବାପାଙ୍କର ଡାଏରୀ ଲେଖା ପ୍ରତି ଏତେ ବେଶି ଆଗ୍ରହ ପ୍ରକାଶ କରିନଥାଏ ସେ। ଗୋଟେ କାନ୍ଥ ଆଲମାରିରେ ବାପାଙ୍କର ବର୍ଷ ବର୍ଷର ଡାଏରୀ ସୁରକ୍ଷିତ ହୋଇ ରହିଛି। ବର୍ତ୍ତମାନର ଡାଏରୀଟି ଷ୍ଟଡ଼ିଟେବୁଲ୍ ଡ୍ରୟାରରେ ଥିବ ନିଶ୍ଚୟ। ବାପାଙ୍କ ଡାଏରୀରୁ ପତ୍ରପ୍ରେରକଙ୍କର ସନ୍ଧାନ ମିଳି ଯାଇପାରେ। ଡ୍ରୟାର୍‌ରେ ହିଁ ଡାଏରୀଟା ପାଇଗଲା ଶ୍ରେୟା। କାହା ଡାଏରୀ ତାଙ୍କର ଅଗୋଚରରେ ଅଥବା ତାଙ୍କ ବିନା ଅନୁମତିରେ ପଢ଼ିବା ଦୋଷାବହ ଜାଣି ମଧ୍ୟ ନ ପଢ଼ି ରହିପାରିଲାନି ଶ୍ରେୟା। ଶେଷପଟରୁ ଲେଉଟାଇ ଗଲା ବେଳକୁ ଚିଠିଟିଏ ଖସିପଡ଼ିଲା ସେଥିରୁ। ସେଇ ସୁନ୍ଦର ସୁନ୍ଦର ମୁକ୍ତାଭଳି ଅକ୍ଷରର ଛୋଟ ଚିଠିଟିଏ। "ଶ୍ରେୟାକୁ ଦେଖିବାକୁ ବହୁତ ଇଚ୍ଛା ହେଉଛି। ଜ୍ୱାଇଁଙ୍କ ସହିତ ତାକୁ ଦେଖି ନ ପାରିବାର ଅବସୋସ୍ ମଲା ଯାଏ ରହିବ। ମୋତେ ଟିକେ ସୁଯୋଗ ଦେବ- ଝିଅକୁ ଦେଖିବାକୁ ? କେବେ ତାକୁ କୋଳରେ ଧରି ଆଦର କରିନି- କେବେ ତାକୁ ଖୁଆଇ ଦେଇନି, ଗୀତ ଗାଇ ଶୁଆଇ ଦେଇନାହିଁ। ଆହୁରି ଅନେକ ଅନେକ କର୍ତ୍ତବ୍ୟରୁ ତୁମେ ମୋତେ ବଞ୍ଚିତ କରିଛ। ଦୟାକରି ତୁମର ରାଣ ନିୟମ ମୋ ଉପରୁ ଥରକ ପାଇଁ ଉଠାଇ ନିଅନ୍ତ ନାହିଁ ? ମନଭରି ଦୂରରୁ ଟିକେ ଦେଖନ୍ତି ତାକୁ। ଏ ଜନ୍ମରେ ତାକୁ ଆଉ ଦେଖିପାରିବି ବୋଲି ମୋର ଆଶା ନାହିଁ।"

ଝଲକାଏ ରକ୍ତ ଉଠି ଆସିଲା ଶ୍ରେୟାର ମୁହଁକୁ ? କାହାର ଏ ବ୍ୟାକୁଳତା ? ଶ୍ରେୟାକୁ ଥରଟିଏ ଦେଖିବାକୁ କାହାର ଏ ବ୍ୟାକୁଳ ପ୍ରାର୍ଥନା ? ବାପା ତାଙ୍କ ଚିଠିର ଉତ୍ତର ଦିଅନ୍ତି ନାହିଁ ବୋଲି ଚିଠିଗୁଡ଼ିକରୁ ବୁଝି ହେଉଛି। ତା' ସତ୍ତ୍ୱେ ଏତେ ବେଶି ଭଲପାଇବା ହୃଦୟରେ ନେଇ କିଏ ତାଙ୍କୁ ବାରମ୍ବାର ଚିଠି ଲେଖି ଚାଲିଛନ୍ତି ? ଡାଏରୀରେ ଯେଉଁ ପର୍ଯ୍ୟନ୍ତ ଲେଖା ଅଛି, ତା'ର ଶେଷପୃଷ୍ଠା ଉପରେ ଆଖି ପକେଇଲା ଶ୍ରେୟା। ଲେଖାଅଛି - "ସୁଦୀକ୍ଷା, ତୁମ ନିକଟରେ ମୁଁ ଆଜୀବନ ଦୋଷୀ ହୋଇ ରହିଗଲି। ତୁମ ସହିତ ପରିଚୟ ହେବା ଦିନରୁ ଅନେକ ଭାବରେ ତୁମେ ମୋ ଜୀବନକୁ ମର୍ଯ୍ୟାଦାବନ୍ତ କରିବାରେ ସାହାଯ୍ୟ କରିଛ। ତୁମର ପ୍ରତ୍ୟାଶାହୀନ ଭଲପାଇବା ନିକଟରେ ଅନେକ ପ୍ରକାରରେ ଋଣୀ ହୋଇଥିଲେ ମଧ୍ୟ ମୋର ଉପାୟ ନାହିଁ। ଦୟାକରି ତୁମେ ମୋତେ କ୍ଷମା କରିଦେବ। ମନରେ ଆଦୌ କଷ୍ଟ ନ ରଖି ଶ୍ରେୟାକୁ ଆଶୀର୍ବାଦ କରିବ। ତା' ସହିତ ତୁମର ଦେଖା ହେବା ସମ୍ଭବ ନୁହେଁ।"

ସୁଦୀକ୍ଷା ! କିଏ ଏ ସୁଦୀକ୍ଷା ? ଏତେବର୍ଷ ମଧ୍ୟରେ ଏଇ ନାଆଁଟି ସହିତ ସେ ଆଦୌ ପରିଚିତ ନୁହେଁ। ବାପାଙ୍କ ମୁହଁରୁ ଏଇ ନାଆଁଟି ସେ କେବେ ଶୁଣିଛି ବୋଲି ମନେପଡୁନି। କୋଉ ପ୍ରକାର ଅପରାଧ କରିଛନ୍ତି ବାପା ସୁଦୀକ୍ଷା ନାମକ ସେହି ମହିଳାଙ୍କ

ନିକଟରେ ? କାହିଁକି ସେ ତାଙ୍କ ପାଖରେ ମନେ ମନେ କ୍ଷମାପ୍ରାର୍ଥୀ ହୋଇଛନ୍ତି ?

ଶ୍ରେୟା ବାପାଙ୍କ ରୁମ୍‌ର କବାଟଟିକୁ ଭିତରୁ ବନ୍ଦ କରିଦେଲା। ତା'ପରେ ସବୁତକ ଡାଏରୀ ଆଣି ଗଦେଇ ଦେଲା ପଲଙ୍କ ଉପରେ। ଆଜି ସେ ଯେମିତି ହେଲେ ବାପାଙ୍କ ଜୀବନର ଏହି ରହସ୍ୟକୁ ଆବିଷ୍କାର କରିବ।

କେତେବେଳଯାଏଁ ସେ ବସି ଡାଏରୀ ପଢୁଥିଲା ଜାଣି ପାରିନଥିଲା। ରଘୁକକା କବାଟ ବାଡ଼େଇ ଖାଇବାକୁ ଡାକିବାରୁ ସେ ପରେ ଖାଇବ ବୋଲି କହିଦେଇଥିଲା। ପ୍ରଚଣ୍ଡ ଲଜ୍ଜା ଆଉ ଗ୍ଲାନିରେ ବୁଡ଼ି ଯାଇଥିଲା ଶ୍ରେୟା। କ'ଣ ସେ କରିଛି- ନିଜର ଅବୁଝାପଣରେ ଖାଲି ବାପାଙ୍କୁ କଷ୍ଟ ଦେଇନାହିଁ- ନିଜକୁ ମଧ୍ୟ କେତେବଡ଼ ସୌଭାଗ୍ୟପ୍ରାପ୍ତିରୁ ବଞ୍ଚିତ କରିଛି। ଖୁବ୍ ଜୋର୍‌ରେ କାନ୍ଦିବାକୁ ଇଚ୍ଛା ହେଉଥିଲା ତା'ର। କିଛି ସମୟ ମନଭରି କାନ୍ଦିବା ପରେ ଫୋନ୍ ଉଠେଇଲା ସେ। ବାପାଙ୍କ ଡାଏରୀରୁ ଯେଉଁ ଟେଲିଫୋନ୍ ନମ୍ବରଟି ପାଖରେ କୌଣସି ନାଁ ଲେଖା ହୋଇନଥିଲା – ସେଇ ନମ୍ବରଟି ଡାଏଲ୍ କଲା ସେ।

– "ହାଲୋ....."

– "ମା, ମୁଁ ଶ୍ରେୟା।"

ସେପାଖରେ ନୀରବତା। ନିଃଶ୍ୱାସର ଶବ୍ଦ ଶୁଭୁଥିଲା।

– "ମୁଁ ଚବିଶି ତାରିଖରେ ଚାଲିଯାଉଛି।"

– "ଜାଣିଛି।"

– "ଝିଅକୁ ଆଶୀର୍ବାଦ ଦେବାକୁ ଆସିବନି ମା' ?"

ନୀରବତା।

– "ନ ଆସିଲେ ତୁମ ଶ୍ରେୟାର ରାଣ ତୁମକୁ।"

– "କ'ଣ ତୁ ଭାବୁ ନିଜକୁ ? ସମସ୍ତଙ୍କର କର୍ତ୍ତା ? ତୋ ଇଚ୍ଛାରେ ସମସ୍ତେ ଜୀବନ ବଞ୍ଚିବେ ? ମା' ବୋଲି କାହାକୁ ଡାକୁଛୁ ? ସେ ଅଧିକାର କ'ଣ ଦେଇଛୁ ମୋତେ ?"

– "ମା' ପ୍ଲିଜ୍....."

ସେପାଖରେ ରିସିଭର୍ ରଖାଯିବାର ସୂଚନା।

– "ରଘୁକକା – ଭୀଷଣ ଭୋକ।" ଶ୍ରେୟା କେତେବେଳେକେ କବାଟ ଖୋଲି ବାହାରିଲା।

– "ତୁମେ ଆସି ଟେବୁଲ୍ ପାଖରେ ବସ। ମୁଁ ଏଇ ସାଙ୍ଗେ ସାଙ୍ଗେ ବାଢୁଛି।" ରଘୁକକା କହିଲେ।

କିଛି ସମୟ ପରେ ଶ୍ରେୟା ଖାଉ ଖାଉ ପଚାରିଲା, "ସୁଦୀକ୍ଷା ବୋଲି କୌଣସି ସ୍ତ୍ରୀଲୋକଙ୍କୁ ତୁମେ ଜାଣିଛ, ରଘୁକକା ?" ରଘୁକକା ଖୁବ୍ ଜୋର୍‌ରେ ଚମକି ପଡ଼ିବା କଥା ଶ୍ରେୟାର ଆଖିରେ ପଡ଼ିଲା।

- "କାହିଁ ନାହିଁ ତ ?" ରଘୁକକା ଡରିଯାଇଥିଲେ ନିଶ୍ଚୟ।

ଶ୍ରେୟା ଗମ୍ଭୀର ହୋଇ କହିଲା, "ଯିଏ ତୁମକୁ ଆମ ଘରେ ରଖେଇଛନ୍ତି ତାଙ୍କୁ ତୁମେ ଚିହ୍ନିନ ?" ରଘୁକକା ନୀରବ ରହିଲେ।

- "ତାଙ୍କ ଘରର ଠିକଣା ମୋର ଦରକାର।" ଶ୍ରେୟା କହିଲା।

- "ମୁଁ ଜାଣିନି। ଆଗରୁ ଯୋଉଠି ଥିଲେ, ମୁଁ ତାଙ୍କ ଘରେ ରହୁଥିଲି। ଭୁବନେଶ୍ୱର ଛାଡ଼ି ଚାଲିଯିବା ବେଳକୁ ମୋତେ ତୁମଘରେ ରଖେଇ ଦେଇ ସେ ଚାଲିଗଲେ। ଏବେ ସେ କୋଉଠି ରହୁଛନ୍ତି ମୁଁ ଜାଣିନି।"

- "ଜାଣିନ ତ ତାଙ୍କୁ ଆମ ଘରର ସବୁକଥା ଜଣାଅ କେମିତି ?" ଜେରା କଲା ଭଳି ପଚାରୁଥିଲା ଶ୍ରେୟା।

- "ସିଏ ନିଜେ ଫୋନ୍ କରନ୍ତି। ବାବୁ କେବେ ବି କଥା ହୁଅନ୍ତି ନାହିଁ। ମୁଁ କଥା ହୁଏ।"

- "ଆମ ଘରର ଟିକିନିଖି ସବୁ କଥା ତାଙ୍କୁ ଜଣାଇଦିଅ ନା ? ଠିକଣା ଜାଣିନ ତ ମୋ ବାହାଘର ନିମନ୍ତ୍ରଣ କାର୍ଡ କେମିତି ପଠାଇଲ ତାଙ୍କ ପାଖକୁ ?" ଶ୍ରେୟା ପଚାରିଲା।

- "ତାଙ୍କର ଜଣେ ସାଙ୍ଗକୁ ଦେଇଥିଲି - ସିଏ ପଠେଇ ଦେଲେ।"

- "ସତ କହୁଛ ରଘୁକକା ? ଯଦି ତାଙ୍କ ଠିକଣା ଜାଣିଛ ମୋତେ କୁହ - ମୋର ଖୁବ୍ ଦରକାର।" ଶ୍ରେୟା କହିଲା।

ରଘୁକକା ଏଥର ମନକୁ ଟାଣ କରି କହିଲେ, "ଆଉ କାହିଁକି ସାନମା' ? ବାପ ଝିଅ ମିଶି ତ ସୀତାଠାକୁରାଣୀ ପରି ମାଆକୁ ମୋର ଦେଶାନ୍ତର କରିଦେଲ। ତା' ଦୁଃଖସୁଖରେ ସିଏ ଅଛି। ତା' ପଛରେ ଆଉ କାହିଁକି ଲାଗୁଛ ? ତୁମେ ଏବେ ସଂସାର କଲଣି। ଧୀରେ ଧୀରେ ସବୁକଥା ବୁଝିବ। କିନ୍ତୁ ମୁଁ କହିଦେଉଛି - ଦେଖିବ, ଅନୁତାପ କଲାବେଳକୁ ଆଉ କିଛି ନଥିବ।" ରଘୁକକା ନିଜର ଉଚ୍ଛ୍ୱସିତ ଆବେଗକୁ ଲୁଚାଇବା ପାଇଁ ଶ୍ରେୟା ଆଗରୁ ଚାଲିଗଲେ ରୋଷେଇଘର ଭିତରକୁ। ତାଙ୍କର ଭାବପ୍ରବଣତା ଶ୍ରେୟାକୁ ମଧ୍ୟ ସଂକ୍ରମିତ କଲା।

ଏୟାର୍‌ପୋର୍ଟ୍‌ରେ ଶ୍ରେୟା ବାପାଙ୍କ ସହିତ ଠିଆ ହୋଇଥିଲା। ପ୍ରଥମଥର ପାଇଁ ଶ୍ରେୟା ବିମାନଯାତ୍ରା କରିବ- ପୁଣି ଏତେଗୁଡ଼ାଏ ବାଟ। ବାପା ଛୋଟ ପିଲାକୁ ବୁଝାଇଲା

ଭଳିଆ ଥରକୁ ଥର ବିଭିନ୍ନ ବିଷୟରେ ତାଗିଦ୍ କରୁଥାନ୍ତି । ଶ୍ରେୟାର ଆଖିନାକ କାନ୍ଦି କାନ୍ଦି ଲାଲ୍ ହୋଇଗଲାଣି । ବାପା ସିଧାସଳଖ ତା' ମୁହଁକୁ ନ ଚାହିଁ ଏଣେତେଣେ ଚାହିଁ କଥା ହେଉଥିଲେ । ପ୍ରାଣାଧିକା କନ୍ୟାର ଲୁହବତୁରା ମୁହଁକୁ ଚାହିଁଲେ ସେ ଆଉ ଧୈର୍ଯ୍ୟ ଧରିପାରିବେ ନାହିଁ ।

– "କିଛି ଅସୁବିଧା ହେବନି । ଦେଖିବୁ – କେତେ ସୁରୁଖୁରୁରେ ତୁ ଯାଇ ସେଠି ପହଞ୍ଚିଯିବୁ । ପ୍ରିୟାଂଶୁ ଏୟାରପୋର୍ଟ୍ ଆସିଥିବ ତୋତେ ନେଇଯିବାକୁ । ନିଶ୍ଚିତରେ ଯାଇ ଘରେ ପହଞ୍ଚିଯିବୁ । ହଁ –ଘରେ ପହଞ୍ଚି ଫୋନ୍‌ଟେ କରିଦେବୁ ଠିକ୍‌ଠାକ୍ ପହଞ୍ଚିଯାଇଛୁ ବୋଲି । ତୋ' ଶାଶୂ –ଶ୍ୱଶୁରଙ୍କୁ ବହୁତ ବହୁତ କହିଦେବୁ ମୋ ପାଇଁ । ସମସ୍ତଙ୍କ ମନ ନେଇ ଚଳିବୁ ।" ବାପାଙ୍କ କଥା ଶୁଣୁ ଶୁଣୁ ଅନ୍ୟମନସ୍କ ହୋଇଯାଉଥିଲା ଶ୍ରେୟା । ତା'ର ଆଖି ଦୁଇଟା ଯାହାକୁ ଖୋଜୁଥିଲା – କୋଉଠି ବି ପାଉନଥିଲା ତାଙ୍କୁ । ଦେଖିଲେ ବି କ'ଣ ସେ ଚିହ୍ନି ପାରିବ ? କେବେ ତ ଦେଖିନାହିଁ ତାଙ୍କୁ । କେଜାଣି କାହିଁକି ତା'ର ବିଶ୍ୱାସ ହେଉଥିଲା, ସେ ନିଶ୍ଚୟ ଆସିବେ । ଯେତେ ଯେତେ ସମୟ ଅତିକ୍ରାନ୍ତ ହେଉଥିଲା – ତା'ର ଧୈର୍ଯ୍ୟଚ୍ୟୁତି ଘଟୁଥିଲା । ଏମିତି କ'ଣ ଅଭିମାନ ଯେ ! ଯାହା ପାଇଁ ନିଜର ମହାମୂଲ୍ୟ ଜୀବନଟାକୁ ଅପବ୍ୟୟ କରିଦେଲେ, ତା'ର ଆହ୍ୱାନର କିଛି ମୂଲ୍ୟ ନାହିଁ ତାଙ୍କ ନିକଟରେ ?

ସେପଟେ ମାଇକ୍ରୋଫୋନ୍‌ରେ ଶେଷଥର ପାଇଁ ଯାତ୍ରୀମାନଙ୍କର ନାମ ଘୋଷଣା କରାଗଲାଣି । ଏଥର ଶ୍ରେୟାକୁ ଯିବାକୁ ହେବ । ଅଧିକାଂଶ ଯାତ୍ରୀ ଆତ୍ମୀୟସ୍ୱଜନଙ୍କଠାରୁ ବିଦାୟ ନେଇ କ୍ୟୁ'ରେ ଠିଆ ହୋଇଗଲେଣି । ବାପାଙ୍କର ପାଦ ଛୁଇଁ ପ୍ରଣାମ କଲା ଶ୍ରେୟା । ଧୈର୍ଯ୍ୟର ବନ୍ଧ ଭାଙ୍ଗିଗଲା ବାପାଙ୍କର । ଝିଅକୁ କୋଳେଇ ନେଇ କାନ୍ଦି ଉଠିଲେ ସେ । ସେତିକିବେଳେ ଶ୍ରେୟା ଲକ୍ଷ୍ୟ କଲା ପ୍ରତୀକ୍ଷାଗୃହର ଗୋଟିଏ ଚଉକିରେ ଅନେକ ବେଳୁ ବସି ମାଗାଜିନ୍ ପଢୁଥିବା ଗଗଲସ୍ ପରିହିତା ମହିଳାଜଣକ ଆଖିରୁ ଗଗଲସ୍ ବାହାର କରି ଲୁହ ପୋଛୁଛନ୍ତି । ଶ୍ରେୟାର ଦୃଷ୍ଟି ଅନୁସରଣ କରି ତା' ବାପା ମଧ୍ୟ ସିଆଡ଼କୁ ଚାହିଁଲେ । ତାଙ୍କ ପାଟିରୁ ଅକସ୍ମାତ୍ ବାହାରିଗଲା – ସୁଦୀକ୍ଷା ! !

ଜିନିଷପତ୍ର ସବୁ ଫୋପାଡ଼ି ଦେଇ ଶ୍ରେୟା ଧାଇଁଗଲା ତାଙ୍କ ଆଡ଼କୁ । ସେ ଉଠିପଡ଼ି ଚାଲିଯିବାକୁ ବସିଥିଲେ । ଦୁଇ ହାତରେ ତାଙ୍କୁ ଭିଡ଼ିଧରି ଶ୍ରେୟା କାନ୍ଦି ଉଠିଲା ।

– "ମୋତେ ଛାଡ଼ିଦେ ମା' – ମୋ ଦ୍ୱାରା ତୋ'ର କିଛି ଅମଙ୍ଗଳ ହେଉ ବୋଲି ମୁଁ ଚାହେଁନାହିଁ ।" କହିଲେ ସେ । ତାଙ୍କର ନିରୁପାୟତାର କଥା ଶ୍ରେୟା ଜାଣି ସାରିଥିଲା । ସେ କାନ୍ଦୁ କାନ୍ଦୁ ହସି ପକେଇଲା ।

– "ବାପାଙ୍କୁ ମୁଁ ଯେଉଁ ପ୍ରତିଜ୍ଞା କରେଇଥିଲି – ତାଙ୍କୁ ମୁଁ ସେଇ ପ୍ରତିଜ୍ଞାରୁ

ମୁକୁଳେଇ ଦେଇଛି। ତେଣୁ ବାପା ତୁମକୁ ଯୋଉ ପ୍ରକାର ନିୟମ କରାଇ ନେଇଥିଲେ - ସେଥିରୁ ବି ତୁମେ ମୁକ୍ତ। ମା' -ମୋ ବାପାଙ୍କୁ ଆଉ ମୋତେ ତୁମେ କ୍ଷମା କରିଦିଅ।"

ଶ୍ରେୟାର ନାଁ ପୁଣି ଆନାଉନ୍ସ ହେଲାଣି। ଏଥର ତାକୁ ଯିବାକୁ ହେବ। ବିସ୍ମିତ, ଅଭିଭୂତ ବାପାଙ୍କର ହାତ ଧରି ସେ ଟାଣି ଆଣିଲା ସୁଦୀକ୍ଷା ପାଖକୁ। ଦୁହିଁଙ୍କୁ ଏକାଠି ପ୍ରଣାମ କଲା ସେ। ତା'ପରେ ବୁଲିପଡ଼ି ଜୋର୍‌ଜୋର୍ ପାଦ ପକେଇ ଚାଲିଗଲା ଭିତରକୁ। ଶେଷଥର ପାଇଁ ବୁଲି ଚାହିଁଲା ବେଳକୁ ଦେଖିଲା ବାପା ଓ ମାଆ ପାଖାପାଖି ଠିଆ ହୋଇ ହାତ ହଲାଉଛନ୍ତି ତା' ଉଦ୍ଦେଶ୍ୟରେ। ହଁ- ବାପା ଏବେ ଆଉ ଏକୁଟିଆ ନୁହଁନ୍ତି - ତାଙ୍କ ପାଖରେ ଠିଆ ହେବାକୁ ଅତି ଆପଣାର ମଣିଷଟିଏ ଅଛନ୍ତି।

# ଜହ୍ନର ଠିକଣା

"ସବୁ କଥାରେ ଏମିତି ହସ କାହିଁକି ? ବିରକ୍ତ ଲାଗେ ଦେଖିଲେ।" ଚିଡ଼ି ଯାଇ କହିଲେ ଅଭିଜିତ୍।

"ତୁମର ଓହଳା ମୁହଁକୁ ଦେଖିଲେ ମୋତେ ଭାରି ମଜାଲାଗେ। ହମିଦ୍ ମିଆଁର ବୋଦା ପରି ଦେଖାଯାଏ ତୁମ ମୁହଁ। ଅବିଶ୍ୱାସ ହେଉଛି ତ ଦର୍ପଣରେ ଦେଖୁନ ନିଜେ।" କିରୁକିରୁ ହସି ଅଭିଜିତ୍‌ଙ୍କ ମୁହଁ ଆଗରେ ଦର୍ପଣଟିଏ ଆଣି ଦେଖାଉ ଦେଖାଉ ମିତାଲି ହାତରୁ ସେଇଟା ଟାଣିନେଇ ଫୋପାଡ଼ି ଦେଲେ ଅଭିଜିତ୍। ଝଣ୍‌ଝଣ୍ ଶବ୍ଦ କରି ଟୁକୁରା ଟୁକୁରା ହୋଇଗଲା ଦର୍ପଣଟା।

- "କ'ଣ ଭାଙ୍ଗିଲା, କିରେ ?" ସେ ପଟରୁ ଅଭିଜିତ୍‌ଙ୍କ ବୋଉଙ୍କର ପାଟି ଶୁଭିଲା।

- "କିଛି ନାଇଁ ବୋଉ, ପୁରୁଣା ଦର୍ପଣଟା ମୋ ହାତରୁ ପଡ଼ି ଭାଙ୍ଗିଗଲା।" ତଳୁ କାଚର ଟୁକୁରାଗୁଡ଼ିକ ସନ୍ତର୍ପଣରେ ଗୋଟାଉ ଗୋଟାଉ ମିତାଲି କହିଲା। କ୍ରୁଦ୍ଧ ଦୃଷ୍ଟିରେ ମିତାଲିର ଶାନ୍ତ, ସ୍ମିତ ମୁହଁଟିକୁ ଚାହିଁଦେଇ ଖଟତଳୁ ଜୋତା ବାହାର କରି ପିନ୍ଧିବାକୁ ଯାଉଛନ୍ତି, ତାଙ୍କ ବୋଉ ଆସି ପହଞ୍ଚିଗଲେ। ଆଃ - ଶବ୍ଦ କରି ଖଟ ଉପରେ ବସିପଡ଼ିଲେ ଅଭିଜିତ୍। ଜୋତା ଭିତରେ ଛିଟିକି ପଡ଼ିଥିବା କାଚଖଣ୍ଡରେ ତାଙ୍କ ପାଦ ରକ୍ତାକ୍ତ ହୋଇ ସାରିଥିଲା।

- "କ'ଣ ହେଲା" ବୋଲି ବୋଉଙ୍କ ପ୍ରଶ୍ନର ଉତ୍ତର ବାବଦରେ ନିଜର ରକ୍ତରଞ୍ଜିତ ପାଦଟିକୁ ବାହାର କରି ଚାପିଧରିଲେ ଅଭିଜିତ୍। ମିତାଲି ଧାଇଁ ଆସି ନିଜ କୋଳରେ ତାଙ୍କ ପାଦଟି ରଖି ପ୍ରଥମେ ନିଜ ପିନ୍ଧାଲୁଗାରେ ପୋଛିଆଣିଲା ରକ୍ତ। ତା'ପରେ କାଚଖଣ୍ଡଟିକୁ ଖୁବ୍ ଧୀରେ ବାହାର କରିଆଣିଲା ତାଙ୍କ ପାଦରୁ।

- "ଏମିତି ଅଥରପିଙ୍କ ପରି ହେଉ କାହିଁକି ? ଆହା - ଆଜି ପରି ଦିନରେ କେତେ ରକ୍ତ ଗଲା ମୋ ପୁଅ ଦେହରୁ। ଜିତୁନା, ତୁ ଟିକେ ବସ୍। ମୁଁ ତୁଳାରେ ଭଲ କି

ପୋଛିଦେଇ ଔଷଧ ଲଗାଇଦେବି।" ବୋହୂକୁ ବିରକ୍ତ ହୋଇ ତଥା ପୁଅକୁ ଆଦର କରି ଏତକ କହି ଅଭିଜିତ୍‌ଙ୍କ ବୋଉ ସୁପ୍ରଭା ଦେବୀ ତୁଳା ଓ ଔଷଧ ଆଣିବାକୁ ଚାଲିଗଲେ।

– " କ'ଣ, ମନବୋଧ ହେଲା ତ ?" ଅଭିଜିତ୍ ତୀକ୍ଷ୍ଣ କଣ୍ଠରେ ପଚାରିଲେ।

ଏଥର ବି ହସିଲା ମିତାଲି। ଆହାରେ – କି ଗେହ୍ଲାପୁଅ ! ଦୋଷକଲା କିଏ – ଗାଳି ଶୁଣିଲା କିଏ ? କାଚ ଟୁକୁରାଗୁଡ଼ିକ କାଗଜରେ ଗୁଡ଼ାଇ ଡଷ୍ଟ୍‌ବିନ୍‌ରେ ରଖିବା ପରେ ଅଭିଜିତ୍‌ଙ୍କ ପାଖକୁ ଆସି ତାଙ୍କ ଆଖିକୁ ଚାହିଁ ଶାନ୍ତ କଣ୍ଠରେ କହିଲା, "ମୋ ଉପରେ ରାଗ ହେଉଛି ତ ଚାପୁଡ଼ାଟେ ମାରିଦିଅ। ନିଜେ ଏମିତି କଷ୍ଟ ପାଅନି।"

ଅସହାୟ କ୍ରୋଧରେ ଛଟପଟ ହେଉଥିଲେ ବି କିଛି କହିବାର ଉପାୟ ନଥିଲା ଅଭିଜିତ୍‌ଙ୍କର । ବଡ଼ ଅଦ୍ଭୁତ ଝିଅ ଏଇ ମିତାଲି। କୋଉ ଐଶ୍ୱର୍ଯ୍ୟର ସମ୍ଭାର ନେଇ ଏତେ ଦମ୍ଭ ତା'ର, ଭାବିପାରନ୍ତି ନାହିଁ ସେ। ପରିବାରର ବାଧବାଧକତାରେ ମିତାଲିକୁ ବିବାହ କରିଥିଲେ ମଧ୍ୟ ସ୍ତ୍ରୀର ଅଧିକାର ସେ ଏ ଯାଏଁ ଦେଇନାହାନ୍ତି ତାକୁ। ଅନ୍ୟମାନଙ୍କ ଦୃଷ୍ଟିରେ ସେମାନେ ଯଦିଓ ସ୍ୱାମୀ –ସ୍ତ୍ରୀ, ପ୍ରଥମଦିନରୁ ହିଁ ସେ ମିତାଲିକୁ ସ୍ପଷ୍ଟ ଜଣାଇ ଦେଇଥିଲେ, ମିତାଲି ତାଙ୍କର ପସନ୍ଦ ନୁହେଁ। ଯେଉଁମାନେ ତାକୁ ଏ ଘରର ବୋହୂ କରି ଆଣିଛନ୍ତି, ସେଇମାନଙ୍କ ପାଖରେ ସେ ବୋହୂପଣିଆଁ କରୁ। ଆଶ୍ଚର୍ଯ୍ୟ ! ଦୁଃଖରେ ଭାଙ୍ଗିପଡ଼ିନଥିଲା କି ଲୁହରେ ଭାସି ଯାଇନଥିଲା ମିତାଲି। ଖୁବ୍ ସୁନ୍ଦର ଭାବରେ ହସି ଦେଇଥିଲା। "ତୁମ ଜୀବନରେ ଆଉ କେହି ଅଛି ତେବେ ?" ଏତିକି କହି ଚତୁର୍ଥୀ ରାତିରେ ଫୁଲ ବିଛଣାରୁ ଉଠିଯାଇ ନିଶ୍ଚିନ୍ତରେ ଶୋଇପଡ଼ିଥିଲା ସୋଫାରେ। ଅଥଚ ତା'ର ସେଇ ନିଶ୍ଚିନ୍ତ ନିଦ୍ରାରେ ଶୋଇଯାଇଥିବା ସରଳ ସୁନ୍ଦର ମୁହଁଟିକୁ ଚାହିଁ ଅପରାଧବୋଧର ଅସ୍ୱସ୍ତିରେ ସାରାରାତି ଶୋଇ ପାରିନଥିଲେ ଅଭିଜିତ୍।

ମିତାଲି ଯେ ଖୁବ୍ ସୁନ୍ଦର ଅଭିନୟ କରିପାରେ–ଏଇ ଧାରଣା ତାଙ୍କର କ୍ରମେ ବଳବତ୍ତର ହେଉଥିଲା। ସ୍ୱାମୀପ୍ରେମରୁ ବଂଚିତା ନାରୀଟିଏ ଏଭଳି ଉଚ୍ଛଳ ଆନନ୍ଦରେ ଅନବରତ ଗଦ୍‌ଗଦ ହୋଇ ରହିବା ସତରେ କ'ଣ ସମ୍ଭବ ! ଅଭିଜିତ୍‌ଙ୍କର ବ୍ୟବହାର ସମ୍ପର୍କରେ ଘରେ କେହି କିଛି ଜାଣିବାକୁ ପାଉନଥିଲେ। ପ୍ରେମମୟୀ ପତ୍ନୀଟିଏ ପରି ଅଭିଜିତ୍‌ଙ୍କର ସମସ୍ତ କାମ ନିଜେ କରୁଥିଲା ମିତାଲି। ପ୍ରତିଜ୍ଞା କରିଥିବା ପରି ନିରୋଳାରେ ହେଉ ବା ଅନ୍ୟମାନଙ୍କ ଉପସ୍ଥିତିରେ ହେଉ, ମିତାଲିକୁ ଆହତ କରିବାକୁ, ଅପମାନିତ କରିବାକୁ ଅଭିଜିତ୍‌ଙ୍କର ପ୍ରଚେଷ୍ଟାର ଅନ୍ତ ନଥିଲା। ତା'ର ଆତ୍ମସମ୍ମାନବୋଧରେ ଆଞ୍ଚ ଆସିବା ଭଳି କଥାରେ ବି ହସିଦେଉଥିଲା ମିତାଲି।

– "ତୁମ ସହିତ ସମ୍ପର୍କ ନଥିବା ଜଣେ ପୁରୁଷର ବେଡ୍‌ରୁମ୍‌ରେ ବଡ଼ ନିଶ୍ଚିନ୍ତରେ ଶୋଇ ଯାଉଛ ତ !" ଅଭିଜିତ୍ ଏକାନ୍ତରେ ଥରେ ଆକ୍ଷେପ କରିଥିଲେ ମିତାଲିକୁ।

"ଭିନ୍ନ ପୁରୁଷ କାହିଁକି ? ମୁଁ ମୋ ସ୍ୱାମୀଙ୍କ ବେଡ୍‌ରୁମ୍‌ରେ ଶୋଉଛି । ଏ ଅଧିକାର ମୋତେ ସମାଜ ଦେଇଛି । ତୁମେ ମୋ ସହିତ ସମ୍ପର୍କ ରଖିନ ସିନା – ମୁଁ କ'ଣ ସମ୍ପର୍କ କାଟିଛି କେବେ ?" ଏତିକି କହି ହସିଦେଇଥିଲା ମିତାଲି । ଅଭିଜିତ୍‌ଙ୍କ ଦେହରେ ଯେମିତି ନିଆଁ ଚରିଯାଇଥିଲା । କଥା କହିବୁ ତ ଏତେ ହସିବାର କ'ଣ ଅଛି ? ଦେଖେଇ ହେଉଛୁ, ତୁମ ଭଲପାଇବାକୁ ମୁଁ ଖାତିର୍ କରେନାହିଁ ।

ମିତାଲିର ଯୋଉ ହସକୁ ବରଦାସ୍ତ କରିପାରନ୍ତି ନାହିଁ ଅଭିଜିତ୍ – ସେଇ ହସରେ ସେ କିଣି ନେଇଛି ସାରା ପରିବାରକୁ । ସାହିପଡ଼ିଶା, ବନ୍ଧୁବାନ୍ଧବ, ଯିଏ ଘରକୁ ଆସନ୍ତି, ତାରିଫ୍ କରିନ୍ତି ମିତାଲିର ବ୍ୟବହାର, ଚାଲିଚଳନକୁ; ବିଶେଷ କରି ତା'ଓଠର ସେଇ ସୁନ୍ଦର ସ୍ୱଚ୍ଛ ହସଟିକୁ । କେତେ ଆପଣାର ଭାବ ରହିଥାଏ ସେଥିରେ । ନିଜେ ଶାଶୂ ମଧ୍ୟ ମୁକ୍ତ କଣ୍ଠରେ ସ୍ୱୀକାର କରନ୍ତି, "ମୋ ବୋହୂ ଯୌତୁକ ବାବଦରେ ଲକ୍ଷେଟଙ୍କିଆ ହସଖଣ୍ଡେ ନେଇ ଆସିଛି ।"

ଏମାନେ କିଛି ଡିମାଣ୍ଡ୍ କରିନଥିଲେ ବୋଲି ମିତାଲିର ବାପା ଯେ ଝିଅକୁ କିଛି ଦେବେନାହିଁ, ଏକଥା କେହି ଆଶା କରିନଥିଲେ । ଅନ୍ତତଃ ସାହିପଡ଼ିଶା, ବନ୍ଧୁବାନ୍ଧବରେ ସମ୍ମାନ ରହିବା ଭଳି ଭାରବେଭାର, ଲୁଗାପଟା କିଛି ତ ଦେଇଥାଆନ୍ତେ । ସେଇଥିପାଇଁ ପ୍ରଥମେ ପ୍ରଥମେ ଦେଖେଇ ଶୁଣେଇ କିଛିକିଛି କଥା ଶୁଣା ଯାଉଥିଲା ମିତାଲିକୁ । ସେଥିରେ ଆଦୌ ବିଚଳିତ ନହୋଇ ମିତାଲି ସହଜ କଣ୍ଠରେ କହିଥିଲା, "ମୋ ବାପାଙ୍କର ଅବସ୍ଥା ଯାହା, କଷ୍ଟେ ମଷ୍ଟେ ମୋ ବାହାଘରଟା କରିଦେଇଛନ୍ତି, ସେତିକି ବହୁତ ହୋଇଛି । ଆଉ ଅଧିକ କିଛି କରିବା ତାଙ୍କ ପକ୍ଷରେ ସମ୍ଭବ ହୋଇନଥା'ନ୍ତା ।" ବାପ ଘରର ବଡ଼ପଣ ହିଁ ସବୁ ବାହାହେଲା ଝିଅଙ୍କ ଗର୍ବ ଗୌରବର କଥା । କେତେ ସ୍ୱଚ୍ଛନ୍ଦରେ ମିତାଲି ନିଜ ବାପଘରର ଦୈନ୍ୟ ପ୍ରକାଶ କରିଦେଲା ଶାଶୂଘର ଲୋକଙ୍କ ଆଗରେ । ଆର୍ଥିକ ଅସ୍ୱଚ୍ଛଳତା ଯେ ତା ମଧ୍ୟରେ ହୀନମନ୍ୟତା ସୃଷ୍ଟି କରିପାରିନାହିଁ, ଏକଥା ଖୁବ୍ କମ୍ ଦିନରେ ପ୍ରମାଣିତ କରିଦେଇଥିଲା ସେ । ଖୁସି ମନରେ ଘରର ଯାବତୀୟ କାମ ନିଜ ହାତକୁ ନେଇଯାଇଥିଲା । ସମସ୍ତଙ୍କୁ  ଆଦର କରି ଖୁଆଇବାରେ ସେ ତୃପ୍ତ ହେଉଥିଲା । କଥା କଥାକେ ରାଗି ଯାଉଥିବା ଶାଶୂଙ୍କୁ ନିଜର ଅକୃପଣ ସେବାଯତ୍ନ ଦେଇ ଏମିତି ବଶୀଭୂତ କରି ରଖିଥିଲା ଯେ ତାକୁ ଘଡ଼ିଏ ନ ଦେଖିଲେ ବାୟାଣୀ ହୋଇ ଯାଉଥିଲେ ସେ । ନିଜର ମୂଲ୍ୟବାନ୍ ଶାଢ଼ି, ଗହଣାରେ ସଜାଇ ଦେଉଥିଲେ ମିତାଲିକୁ । ଶାଢ଼ି, ଗହଣା, ଟଙ୍କା, ସୁନାର ଲୋଭ ନଥିଲା ମିତାଲିର । ସିଏ କେବଳ ସ୍ନେହରଙ୍କୁଣୀ ଝିଅଟିଏ ଥିଲା । ଅନ୍ୟମାନେ ତା' ସହିତ ଯେମିତି ବ୍ୟବହାର କଲେ ବି ନିଜ ପକ୍ଷରୁ ସ୍ନେହ ଦେବାରେ ହେଳା ନଥିଲା ତା'ର ।

ଅଭିଜିତ୍‌ଙ୍କର ତା' ସହିତ ଏଭଳି ଆଚରଣର କାରଣ ସେ ଜାଣିବାକୁ ପାଇନି

କାହାରିଠାରୁ । ନିଜେ କାହାରିକୁ ପଚାରିବାକୁ ଚାହିଁ ନାହିଁ । ସ୍ୱାମୀ ତାକୁ ଭଲ ପାଆନ୍ତିନାହିଁ - ଆଉ କାହା ସହିତ ତାଙ୍କର ସମ୍ପର୍କ ରହିଛି, ଏକଥା କାହାକୁ କହି ନିଜେ ଛୋଟ ହୋଇଯିବ କାହିଁକି ? ବାପଘରୁ ତା'ର କେହି କେବେ ଆସନ୍ତି ନାହିଁ । ମିତାଲିର ବାହାଘରଟା ସାରିଦେଇ ସେମାନେ ଯେମିତି ନିଜର ସମସ୍ତ ଦାୟିତ୍ୱ ଶେଷ କରି ଦେଇଛନ୍ତି । ସୁଯୋଗ୍ୟ ପାତ୍ର, ଶିକ୍ଷିତ ସଂଭ୍ରାନ୍ତ ତଥା ସ୍ୱଚ୍ଛଳ ପରିବାର - ସାଧାରଣତଃ ଝିଅଟିଏ ପାଇଁ ଆଉ କ'ଣ ପ୍ରତ୍ୟାଶା ଥାଏ ବାପାମାଆଙ୍କର । ଝିଅ ଯେ ଶାଶୂଘରେ ସ୍ୱାମୀର ଅବାଞ୍ଛିତା ହୋଇ ନିରିମାଖୀ ଜୀବନଟିଏ ବଞ୍ଚୁଛି - ଏକଥା ସେମାନେ ଜାଣିଲେ କରିବେ ବା କ'ଣ ? ଝିଅର ଖାଇବା, ପିନ୍ଧିବା, ରହିବାରେ ଯଦି କିଛି ଅସୁବିଧା ନାହିଁ - ସେତିକି ଯଥେଷ୍ଟ ତାଙ୍କ ପାଇଁ । ତା ଭାଗ୍ୟରେ ଥିଲେ କେତେ ସୁଖ ଭୋଗିବ ସେ । ଭାଗ୍ୟରେ ନଥିଲେ ବଢ଼ାଭାତ ବି ଜୁଟେ ନାହିଁ ମଣିଷକୁ । ଭାଗ୍ୟ ହାତରେ କ୍ରୀଡ଼ନକ ହେବାପାଇଁ ଚାହେଁ ନାହିଁ ମିତାଲି । କାହାର ଦୟା, ଅନୁଗ୍ରହର ପାତ୍ର ହେବାକୁ ମଧ୍ୟ ଚାହେଁ ନାହିଁ ସେ । ଉପଯାଚିକା ହୋଇ ସ୍ୱାମୀଙ୍କର ପ୍ରେମାର୍ଥିନୀ ହେବାର ମନୋବୃତ୍ତି ଆସିନି କେବେ । ପିଲାଦିନରୁ ଦୁଃଖ, ଅଭାବ ସହିତ ସେ ଲଢ଼ି ଆସିଛି । ଦୁଃଖକୁ ଅସ୍ୱୀକାର କରିବାର ପ୍ରଧାନ ଅସ୍ତ୍ର ହେଉଛି ତା'ର ସ୍ମିତହାସ୍ୟ । କୌଣସି ପରିସ୍ଥିତିରେ ମଧ୍ୟ ଭାଙ୍ଗିଯିବାର, ହାରିଯିବାର, ଓହରି ଆସିବାର ମନୋବୃତ୍ତି ତା'ର ନାହିଁ । ସ୍ୱାମୀ ତାକୁ ଭଲ ନ ପାଇଲେ କ'ଣ ହେଲା ? ଶାଶୂ, ଶ୍ୱଶୁର,ଦିଅର ନଣନ୍ଦ ସମସ୍ତେ ତ ଭଲପାଆନ୍ତି । ସବୁ ଝିଅଙ୍କ ପରି ସେ ଭାବେ ନାହିଁ ବାହାଘରର ଅର୍ଥ କେବଳ ଗୋଟିଏ ପୁଅ ସହିତ ଗୋଟିଏ ଝିଅର ଆଜୀବନ ଏକତ୍ର ରହିବାର ସାମାଜିକ ସ୍ୱୀକୃତି ଅଥବା ବନ୍ଧନ । ବିବାହର ଅର୍ଥ ସେ ବୁଝେ ଗୋଟିଏ ପରିବାର ସହିତ ଆଉ ଗୋଟିଏ ପରିବାରର ସମ୍ପର୍କ । ଯଦିଓ ତା'ର ବାପଘର ତରଫରୁ ଏହି ସମ୍ପର୍କକୁ ସୁଦୃଢ଼ କରିବା ଦିଗରେ କେହି ହେଲେ କିଛି ପ୍ରଚେଷ୍ଟା କରିନାହାନ୍ତି, ସେ ନିଜେ କିନ୍ତୁ ନିଜ ଗୁଣରେ ଶାଶୂଘର ପରିବାରର ଏକ ଅବିଚ୍ଛେଦ୍ୟ ଅଙ୍ଗ ପାଲଟିଯାଇଛି । ଅଭିଜିତ୍‌ଙ୍କର ବ୍ୟବହାରକୁ ଗୋଟାଏ ଚ୍ୟାଲେଞ୍ଜ୍ ଭାବରେ ଗ୍ରହଣ କରିନେଇଛି ସେ । ଅଭିଜିତ୍‌ଙ୍କର ପସନ୍ଦର ନାରୀଟି କେମିତି ହୋଇଥିବ ? କୋଉଠି ଥାଏ ସେ ? ତା ସମ୍ପର୍କରେ ଅଭିଜିତ୍‌ଙ୍କର ପରିବାରର ଲୋକମାନେ ଜାଣନ୍ତି ତ ? କେଉଁ ପ୍ରତିବନ୍ଧକ ସେମାନଙ୍କୁ ଏକାଠି କରାଇ ଦେଲାନାହିଁ ? ଅଭିଜିତ୍‌ଙ୍କ ପରି ଜିଦ୍‌ଖୋର୍ ଏକବାଗିଆ ଲୋକ କେମିତି ଅବା ରାଜି ହେଲେ ତା' ପରି ଅତି ସାଧାରଣ ଝିଅଟିକୁ ବାହାହେବାକୁ ? ବାହାହେବାରେ ଯଦି ତାଙ୍କର ଆପତ୍ତି ନଥିଲା, ମିତାଲି ପ୍ରତି ଏମିତି ଆଚରଣର ହେତୁ କ'ଣ ? ମିତାଲିର ବାପା ଗରିବ ବୋଲି, ବାପଘରକୁ ନେଇ ଦମ୍ଭ କରିବା ଭଳି କିଛି ତା'ର ନାହିଁ ବୋଲି କ'ଣ ସେ ଏମିତି ଅବହେଳା କରୁଛନ୍ତି ତା ପ୍ରତି ? ମୁହଁଖୋଲି ଯଦି ସେ କହିଦିଅନ୍ତେ ସବୁକଥା ସଫା ସଫା

– ମିତାଲି ନିଶ୍ଚିନ୍ତ ହୁଅନ୍ତା । ନିଜ ତରଫରୁ ମିତାଲି ଅଭିଜିତ୍‌ଙ୍କ ପାଖରେ ଯେତେ ସହଜ ହେବାପାଇଁ ଚେଷ୍ଟା କଲେ ବି କୌଣସି ପ୍ରକାରେ ଅଭିଜିତ୍ ସ୍ୱାଭାବିକ ହୋଇପାରନ୍ତି ନାହିଁ ତା' ପାଖରେ । ଅଥଚ ବାପା, ବୋଉ, ଭାଇ ଭଉଣୀ ସମସ୍ତଙ୍କ ପାଖରେ ସେ ଖୁବ୍ ସ୍ୱଚ୍ଛନ୍ଦ ମନେହୁଅନ୍ତି, ଖୁସି ଥିବାର ଛଳନା କରନ୍ତି । କ'ଣ ଯେ କରିବ – ଥଳକୂଳ ପାଏନାହିଁ ମିତାଲି ।

ସବୁଦିନ ଡେରି କରି ଅଫିସ୍‌ରୁ ଘରକୁ ଫେରନ୍ତି ଅଭିଜିତ୍ । କୁଆଡ଼େ ଯାଆନ୍ତି ସେ ? ସେଇ ମହିଳାଟି ପାଖକୁ ଯାଉଥିବେ । ହୁଏତ ତାଙ୍କର ସହକର୍ମିଣୀ ହୋଇଥିବ । ଏକାଠି କାମ କରିବା ଅବସରରେ ତା ସହିତ ଅନ୍ତରଙ୍ଗତା ସୃଷ୍ଟି ହୋଇଥିବ । ସେଇ ଅନ୍ତରଙ୍ଗତାର ସୀମା କେତେ ଦୂର ପରିବ୍ୟାପ୍ତ ! ନା – ସେ ବିଷୟରେ ଭାବିଲେ କେମିତି ଏକ ବିଷଣ୍ଣତାବୋଧରେ ବୋଝେଇ ହୋଇଯାଉଛି ମନ । ସିଏ ଯିଏ ବି ହୋଇଥାଉ, ଅଭିଜିତ୍‌ଙ୍କର ଆଇନ୍‌ସଂଗତ ପତ୍ନୀ କେବଳ ମିତାଲି । ବାହାରର ସମ୍ପର୍କ– ସେଇ ବାହାରେ ହିଁ ରହିଯାଇଛି । ସେ ଭଳି ସମ୍ଭାବନା ଥିଲେ ଅଭିଜିତ୍ କ'ଣ ସେଇ ନାରୀଟିକୁ ପତ୍ନୀତ୍ୱର ମର୍ଯ୍ୟାଦା ଦେବାରେ କୁଣ୍ଠିତ ହୋଇଥାଆନ୍ତେ ? ଯାହା ପାଇଁ ନିଜର ବିବାହିତା ତରୁଣୀ ପତ୍ନୀକୁ ଆଡ଼ ଆଖିରେ ବି ଚାହୁଁନାହାନ୍ତି ସେ, ସେଇ ବରବର୍ଣ୍ଣିନୀଟିକୁ ଦେଖିବା ପାଇଁ ମିତାଲି ଖୁବ୍ ଉତ୍‌କଣ୍ଠିତ ଥିଲା ମନେ ମନେ ।

ସେଦିନ କିଛି ଜରୁରୀ ଜିନିଷପତ୍ର କିଣିବା ପାଇଁ ସାନ ନଣନ୍ଦ ଅପର୍ଣ୍ଣା ସାଙ୍ଗରେ ବଜାର ଯାଇଥିଲା ମିତାଲି । ଝିଅମାନଙ୍କର କେତେ ପ୍ରକାରର ଜିନିଷ ଦରକାର, କେତେ ଖୋଜିବାକୁ ହୁଏ, ବାଛିବାକୁ ହୁଏ, ପୁଅମାନଙ୍କ ସାଙ୍ଗରେ ଗଲେ ଅସୁବିଧା ହୁଏ ସେସବୁ କିଣିବାରେ । କିଣାକିଣି ବ୍ୟାପାରରେ ପୁଅମାନଙ୍କର ଧୈର୍ଯ୍ୟର ଅଭାବ ଖୁବ୍ ବେଶି । ନଣନ୍ଦ ଭାଉଜ ବେଶ୍ ଖୁସି ମନରେ ଗପସପ କରି – ଥଟ୍ଟା ମଜା ହୋଇ ନିଜ ପସନ୍ଦର କିଛି ପ୍ରସାଧନ ସାମଗ୍ରୀ କିଣୁଥିଲେ ।

– "ଆରେ, ଅପର୍ଣ୍ଣା ଯେ ! କ'ଣ ସବୁ କିଣା ଚାଲିଛି ?" ସେ ପାଖ କାଉଣ୍ଟରରୁ ଜଣେ ମହିଳା ସେମାନଙ୍କ ଆଡ଼କୁ ଆଗେଇ ଆସୁ ଆସୁ କହିଲେ । ମିତାଲି ସେପଟକୁ ଚାହିଁ ଦେଖିଲା, ଝଟ୍ କରି ମୁହଁ ବୁଲାଇ ଦୂରକୁ ଚାଲିଗଲେ ଅଭିଜିତ୍ ।

– "ଇଏ ତୁମର ନୂଆ ଭାଉଜ ବୋଧେ ?" ତୀକ୍ଷଣ ଦୃଷ୍ଟିରେ ମିତାଲିର ସର୍ବାଙ୍ଗ ନିରୀକ୍ଷଣ କରି ମହିଳା ଜଣକ କହିଲେ ।

–ଅପର୍ଣ୍ଣା ଗମ୍ଭୀର ହୋଇ କହିଲା, "ହୁଁ, ନୂଆ କ'ଣ ପୁରୁଣା କ'ଣ ? ସେଇତ ଆମର ଗୋଟିଏ ବୋଲି ଭାଉଜ ।"

– "ତୁମ ଭାଇଙ୍କ ପସନ୍ଦ ମାନିବାକୁ ପଡ଼ିବ।" ଭଦ୍ରମହିଳାଙ୍କ ଓଠରେ ତିକ୍ତ ହସଧାରେ ଫୁଟିଉଠିଲା। ଅସ୍ୱସ୍ତିକର ଲାଗୁଥିଲା ତାଙ୍କର ଉପସ୍ଥିତି, ତାଙ୍କର କଥାବାର୍ତ୍ତାର ଢଙ୍ଗ, ନିଜକୁ ବିଜ୍ଞାପିତ କଲା ଭଳି ବେଶଭୂଷା ଦୃଷ୍ଟିକଟୁ ମନେ ହେଉଥିଲା। ତାଙ୍କ ହାତରେ ଥିବା ଅନ୍ତର୍ବସ୍ତ୍ର ଏବଂ ସାନିଟାରୀ ନାପ୍‌କିନ୍ ପ୍ୟାକେଟ୍ ଉପରୁ ଆଖି ଫେରାଇ ଆଣିଲା ମିତାଲି।

– "ଚାଲ ଭାଉଜ, ଆମେ ଯିବା।" ଅପର୍ଣ୍ଣା ମିତାଲିର ହାତଧରି ଖୁବ୍ ଶୀଘ୍ର ଟାଣିନେଇ ଆସିଲା ସେଇ ସପିଙ୍ଗ୍‌ସେଣ୍ଟର୍ ଭିତରୁ।

– "କିଛି ନ କିଣି ଚାଲିଆସିଲ ଯେ ? ଭଦ୍ରମହିଳା କିଏସେ କହିଲ ?" ମିତାଲି ପଚାରିଲେ ମଧ ତା'ର ଷଷ୍ଠ ଇନ୍ଦ୍ରିୟ ଜଣାଇ ଦେଉଥିଲା 'ଇଏ' ନିଶ୍ଚୟ 'ସେଇ'।

– "ଶନିଗ୍ରହଟିଏ ସେ। ଭାଇଙ୍କ ଜୀବନର ଶନିଗ୍ରହ। ତା'ରି ପାଇଁ ଦୁନିଆ ଯାକର ଅଶାନ୍ତି ଆମ ଘରେ।"କ୍ଷୋଭର ସହିତ କହିଲା ଅପର୍ଣ୍ଣା।

– "କିନ୍ତୁ କିଏ ଇଏ ? ଆମଘର ସହିତ କ'ଣ ସମ୍ପର୍କ ଭଦ୍ରମହିଳାଙ୍କର ?" ମିତାଲିର ପ୍ରଶ୍ନ।

– "ଭଦ୍ର ମହିଳା ବୋଲି ବାରମ୍ବାର କୁହନି ତ ତାଙ୍କୁ। ତା'ପରି ଅଭଦ୍ର ମହିଳା ସଂସାରରେ ନଥିବେ କୋଉଠି। ସମ୍ପର୍କ ଆମ ଘର ସହିତ ନୁହେଁ – ତୁମ 'ବର' ସହିତ।" ପ୍ରଚଣ୍ଡ ରାଗରେ ଏତକ କହିପକାଇ ଜିଭ କାମୁଡ଼ି ପକେଇଲା ଅପର୍ଣ୍ଣା। ଶେଥା ପଡ଼ିଗଲା ତା'ର ମୁହଁ।

– "ମୋତେ କ୍ଷମା କର, ଭାଉଜ। ତୁମକୁ ଏ ବିଷୟରେ କିଛି କହିବାକୁ ମନା କରିଥିଲେ ଘରେ। ତୁମେ କେତେ ଭଲ, ଅଥଚ ତୁମ ଜୀବନକୁ ନେଇ ଏମିତି ଖେଳ ଖେଳିଛନ୍ତି ସମସ୍ତେ।" ମିତାଲିକୁ କୁଣ୍ଢାଇ ଧରି କାନ୍ଦି ପକେଇଲା ଅପର୍ଣ୍ଣା।

– "ଛି, ଛି, କ'ଣ କରୁଛ କହିଲ ? କେତେ ଲୋକ ଏଠି ! ଚାଲ, ଆମେ କୋଉଠି ଟିକେ ନିରୋଳାରେ ବସିବା। କଥାବାର୍ତ୍ତା କରି ମନ ହାଲୁକା କରି ଘରକୁ ଯିବା।" ମିତାଲି ଅପର୍ଣ୍ଣାକୁ ପ୍ରବୋଧନା ଦେଇ ଶାନ୍ତ କଣ୍ଠରେ କହିଲା।

କିଛି ସମୟ ପରେ ସେମାନେ ଆସି ପାର୍କ୍‌ରେ ବସିଥିଲେ ଅପେକ୍ଷାକୃତ ନିରୋଳା ଜାଗାଟିଏ ବାଛି।

– "ମୋତେ ସବୁକଥା କହିବ ?" ମିତାଲି ପଚାରିଲା ଅପର୍ଣ୍ଣାକୁ।

– "ଭଲ ଲାଗିବନି ଶୁଣିବାକୁ।" ତଳକୁ ମୁହଁ ପୋତି ଅପର୍ଣ୍ଣା କହିଲା।

– "ଯାହା ସତ, ଯାହା ବାସ୍ତବ – ସେ କଥା ମୋର ଜାଣିବା ଦରକାର। କେତେଦିନ ଆଉ ଅନ୍ଧାରରେ ଥିବି ? ବିଶ୍ୱାସ କର, ତୁମକୁ ମୁଁ ଆଦୌ ଖରାପ ଭାବିବିନି।"

ମିତାଲି ଶାନ୍ତ କଣ୍ଠରେ କହିଲା ।

- "ତୁମେ ଆସିଲା ପରେ ଆମଘରର ପରିବେଶ କେତେ ବଦଳିଯାଇଛି । ସମସ୍ତଙ୍କୁ ଖୁସି ରଖିବାକୁ ତୁମେ ସବୁବେଳେ ଲାଗିଥାଅ । ନିଜ ଭିତରର ଦୁଃଖକୁ ଚାପିରଖି କେତେ ସୁନ୍ଦର ଭାବରେ ହସିପାର ତୁମେ । ବୋଉ ମୋତେ ପ୍ରାୟ ପଚାରେ, "ଭାଉଜଙ୍କୁ ପଚାର, ଅଭି ତା' ସହିତ କେମିତି ବ୍ୟବହାର କରୁଛି ? ତା'କୁ ଭଲ ପାଉଛି ତ ?" ତୁମେ ଯେତେ ହସିବାର ଅଭିନୟ କଲେ ବି ମୁଁ ତ ଜାଣେ, ତୁମ ଦୁଃଖର କଥା, ତୁମ ଅପମାନର କଥା । ଜାଣିଜାଣି କେମିତି ମୁଁ ପଚାରିବି, ଭାଇ ତୁମକୁ ଭଲ ପାଏକି ନାହିଁ ? ସେଇ ବଦ୍‌ମାସ୍ ସ୍ତ୍ରୀଲୋକଟା ଭାଇ ମୁଣ୍ଡକୁ ଏମିତି ଚୋବେଇ ଖାଇଦେଇଛି ଯେ ହିତାହିତ ଜ୍ଞାନ ବି ରହୁନି ତା'ର ।" ଅପର୍ଣ୍ଣା କଣ୍ଠରେ କ୍ଷୋଭ ଫୁଟିଉଠୁଥିଲା ।

ମିତାଲିର ପ୍ରଶ୍ନ ତଥାପି ଅନୁତ୍ତରିତ ଥିଲା । ସେ ଆଦୌ ବିଚଳିତ ନହୋଇ ଶାନ୍ତ କଣ୍ଠରେ ପଚାରିଲା, " ତୁମ ଭାଇ ଯଦି ତାଙ୍କୁ ଏତେ ଭଲ ପାଆନ୍ତି - ତାଙ୍କୁ ବାହାହେଲେନି କାହିଁକି ?"

- "ବାହାହେବେ ତାଙ୍କୁ ? ସିଏ କ'ଣ ବାହା ହେଇନି କି ? ତା'ର ପରା ଦୁଇଟା ବଡ଼ ବଡ଼ ପୁଅଝିଅ ଅଛନ୍ତି - କଲେଜରେ ପଢୁଥିବା ପୁଅଝିଅ । ସେମାନେ ହଷ୍ଟେଲ୍‌ରେ ରହି ପାଠ ପଢୁଛନ୍ତି । ତା' ସ୍ୱାମୀ କି ଚାକିରି କରନ୍ତି କେଜାଣି- କେତେବେଳେ ଘରେ ନଥାନ୍ତି । ଦିଲ୍ଲୀ,ବମ୍ବେ, କଲିକତା ବୁଲୁଥାଆନ୍ତି । ମହିଳାଟିର କିନ୍ତୁ ଏକୁଟିଆ ରହିବାକୁ ଭାରି ଡର । ସେଇଥିପାଇଁ ତା'ଘରେ ସବୁବେଳେ ବନ୍ଧୁମାନଙ୍କର ଗହଳି ଲାଗିଥାଏ, ବିଶେଷ କରି ପୁରୁଷ ବନ୍ଧୁଙ୍କର । ରାଜନୀତିଠାରୁ ସାହିତ୍ୟ, ସଙ୍ଗୀତ ଯାଏଁ ସବୁ ସେଇଠି ଚର୍ଚ୍ଚା ହୁଏ । ଆଉ ଯାହା ସେଠି ହୁଏ, ସେଗୁଡ଼ା ମୁଁ କହିପାରିବିନି ।"

- "କିନ୍ତୁ ତୁମ ଭାଇ..." ମିତାଲି ପଚାରିବାକୁ ଯାଉଥିଲା । ଅପର୍ଣ୍ଣା ତା ପୂର୍ବରୁ ପୁଣି କହିବାକୁ ଆରମ୍ଭ କଲା ।

- "ସେଇ ସ୍ତ୍ରୀଲୋକର ପଡ଼ିଶାରେ ମୋର ଜଣେ ସାଙ୍ଗର ଘର । ଭାଇ ସେଠିକୁ ନିୟମିତ ଯିବାକଥା ସେ ହିଁ ପ୍ରଥମେ ମୋତେ କହିଥିଲା । ଖାଲି ଘରକୁ ଯାଏ କ'ଣ ? ହାଟ, ବଜାର, ସିନେମା, ପାର୍କ, ପିକ୍‌ନିକ୍ ସବୁଆଡ଼େ ଯାଏ ଭାଇ ତା' ସହିତ । ଭାଇଠୁ ଅତି କମ୍‌ରେ ସିଏ ଦଶବର୍ଷ ବଡ଼ ହୋଇଥିବ । ମୁଣ୍ଡରେ ଯେତେ ରଙ୍ଗମାରି ପାର୍ଲର୍‌ରୁ ମୁହଁ ଚିକ୍‌କଣ କରି ଆସି ଟୋକୀଙ୍କ ପରି ଡ୍ରେସ୍ ପିନ୍ଧିଲେ ବୟସଟା କ'ଣ କମିଯିବ ? କ'ଣ ଦେଖି ଭାଇ ତା' ପାଲରେ ପଡ଼ିଲା କେଜାଣି, ମାଲୁଣୀମାନେ ଭେଣ୍ଡାକୁ ମେଣ୍ଢାକରି ରଖିଲା ପରି ଭାଇ ତା'ର ଏକାନ୍ତ ଅନୁଗତ । ବାହାର ଲୋକଙ୍କଠୁ ଏଣୁ ତେଣୁ କଥା ଶୁଣି

ବାପା ବୋଉ ବ୍ୟସ୍ତ ହୋଇ ପଡ଼ିଲେ । ଭାଇକୁ ବୁଝାଇବାକୁ ଯାଇ ପରିସ୍ଥିତି ଏମିତି ହେଲା ଯେ ଭାଇ ଘର ଛାଡ଼ି ଚାଲିଯିବ ବୋଲି କହିଲା । ବାପାଙ୍କର ଷ୍ଟ୍ରୋକ୍ ହୋଇ ନର୍ସିଂହୋମ୍‌ରେ ଭର୍ତ୍ତି ହେଲେ । କାନ୍ଦି କାନ୍ଦି ବୋଉ ଭାଇକୁ ପଚାରିଥିଲା, "କ'ଣ ଚାହୁଁଛୁ - ଆମେ ସମସ୍ତେ ମରିଯାଉ ? ତୁ ଏମିତି ନାଁ ପକେଇବୁ ଚାରିଆଡ଼େ ? ମୁଣ୍ଡ ଟେକି ଆମେ ଚାଲିପାରୁନୁ ବନ୍ଧୁବାନ୍ଧବ, ସାହିପଡ଼ିଶାରେ ।" ଭାଇ ବିରକ୍ତ ହୋଇ କହିଥିଲା, "ମୋର ବ୍ୟକ୍ତିଗତ ଜୀବନକୁ ନେଇ ତୁମମାନଙ୍କର କାହିଁକି ଏତେ ବ୍ୟସ୍ତତା, ମୁଁ ବୁଝିପାରୁନି । କ'ଣ ଚାହଁ ମୋ ପାଖରୁ ?"

"ସେ ସ୍ତ୍ରୀଲୋକ ସହିତ ସମ୍ପର୍କ ଛାଡ଼ିଦେ ।" ବୋଉ କହିଥିଲା । ଭାଇ ଭୀଷଣ ରାଗିଯାଇ କହିଥିଲା, "କି ଆଶ୍ଚର୍ଯ୍ୟ ! ସିଏ ମୋର ବନ୍ଧୁ । ଜଣେ ସମ୍ଭ୍ରାନ୍ତବଂଶୀୟା, ରୁଚିସମ୍ପନ୍ନା ଭଦ୍ରମହିଳା ସେ । ତାଙ୍କ ସହିତ ମିଶିଲେ କ'ଣ ଅସୁବିଧା ହେଉଛି ତୁମମାନଙ୍କର ?"

- "ତାକୁ ବାହାହେବୁ ?" ବୋଉ ବି ରାଗିଯାଇ କହିଥିଲା ।

" ତାଙ୍କର ସ୍ୱାମୀ ଅଛନ୍ତି, ଛୁଆପିଲାର ମାଆ ସିଏ । ତାଙ୍କ ବିଷୟରେ ବାଜେ କଥା କହିବାକୁ ଖରାପ ଲାଗୁନି ତୁମମାନଙ୍କୁ ?" ଭାଇ କହିଥିଲା ।

- "ଆମେ ଯୋଉଠି ଠିକ୍ କରିବୁ, ବାହାହେବୁ ସେଠି ?" ବୋଉ ପଚାରିଥିଲା । ଲୋକନିନ୍ଦାରୁ ରକ୍ଷା ପାଇବାର ଗୋଟିଏ ମାତ୍ର ଉପାୟ ଥିଲା, ଭାଇର ବାହାଘର । ସେଇ ମୁହୂର୍ତ୍ତରେ ବୋଉକୁ ଟାଳିବା ପାଇଁ ଭାଇ କହି ଦେଇଥିଲା, "ତୁମର ଯାହାଇଚ୍ଛା ସେଇଆ କର ।" ବାପା ଭଲହୋଇ ନର୍ସିଂହୋମ୍‌ରୁ ଘରକୁ ଆସିଲେ । ଭାଇ ପାଇଁ ଜୋର୍‌ସୋର୍‌ରେ କନ୍ୟା ଦେଖା ଆରମ୍ଭ ହୋଇଗଲା । କିନ୍ତୁ କ'ଣ ହୁଏ କେଜାଣି, ସବୁ କଥାବାର୍ତ୍ତା ଛିଡ଼ିବା ପରେ ଶେଷ ମୁହୂର୍ତ୍ତରେ ବାହାଘର ପ୍ରସ୍ତାବ ସବୁ ଭାଙ୍ଗିଯାଏ ଥରକୁ ଥର । ଭାଇର ଚରିତ୍ର ବିଷୟରେ କେହି ଫୋନ୍ କରି ବା ଚିଠି ଲେଖି କନ୍ୟାପକ୍ଷକୁ ଜଣାଇଦିଏ । ସେଭଳି କଥାର ପ୍ରମାଣ କିଛି ଅଭାବ ନଥିଲା ଆମ ସହରରେ । ସେଇଥିପାଇଁ ଦୂର ଦୂର ସ୍ଥାନରେ ପ୍ରସ୍ତାବ ଦେଖାଗଲା । ବାପା ବୋଉଙ୍କର ଇଚ୍ଛା ଥିଲା, ଖୁବ୍ ସାଧାରଣ ପରିବାରରୁ ସାଦାସିଧା ଝିଅଟିଏ ଆସିଲେ ସବୁ ପରିସ୍ଥିତିରେ ନିଜକୁ ଚଳେଇନେବ । ବାପଘର ଟାଣୁଆ ଥିଲେ ପଛରେ ଅସୁବିଧା ହୋଇପାରେ । ସେଇଥିପାଇଁ ତୁମକୁ ଆଣିଲେ ଭାଇ ପାଇଁ ।"

- "ବାସ୍ ଏତିକି କଥା ? ମୁଁ ଭାବିଥିଲି, କ'ଣ ନାଇଁ କ'ଣ ହୋଇଥିବ ।" ମିତାଲି ତା'ର ସ୍ୱଭାବ ସୁଲଭ ହସଟିକୁ ଓଠରେ ସଜାଇ ସାରିଥିଲା । ଅବାକ୍ ହୋଇ ତା' ମୁହଁକୁ ଚାହିଁଲା ଅପର୍ଣ୍ଣା । ସ୍ୱାମୀ ବିଷୟରେ ଏସବୁ କଥା ଶୁଣିବା ପରେ ବି କେମିତି ହସି ପାରୁଛି ଏ ଝିଅ ! ବ୍ୟାକୁଳ ହୋଇ ମିତାଲିର ହାତ ଧରି ସେ କହିଲା,

- "ଏସବୁ କଥା ମୁଁ ତୁମକୁ କହିଛି ବୋଲି କାହାକୁ କହିବନି ଭାଉଜ, ପ୍ଲିଜ୍ ।"

- "ମୁଁ ତ ପ୍ରଥମ ଦିନରୁ ଜାଣିଥିଲି ଏକଥା।" ମିତାଲି ଶାନ୍ତ କଣ୍ଠରେ କହିଲା।

- "କିଏ କହିଲା ତୁମକୁ ?" ଅପର୍ଣ୍ଣା ଆଶ୍ଚର୍ଯ୍ୟ ହୋଇ ପଚାରିଲା।

- "ତୁମ ଭାଇ ସ୍ପଷ୍ଟ ଭାବରେ ମୋତେ ଜଣାଇ ଦେଇଥିଲେ, ବାପା ବୋଉଙ୍କର ଜିଦ୍ ଯୋଗୁଁ ସେ ମୋତେ ବାହାହେବାକୁ ବାଧ୍ୟ ହୋଇଛନ୍ତି, କିନ୍ତୁ ମୋତେ ସ୍ତ୍ରୀ ଭାବରେ ସେ ଗ୍ରହଣ କରିବେ ନାହିଁ। ଅନୁମାନ କରିଥିଲି, ତାଙ୍କ ଜୀବନରେ ଆଉ କେହି ନାରୀ ରହିଛି - ମାତ୍ର ସେ କିଏ ବୋଲି ଜାଣିନଥିଲି।"

- "ସବୁ ଜାଣିଲା ପରେ ବି ତୁମେ ହସି ପାରୁଛ ? ରହିଛ ଆମ ଘରେ ? ଭାଇ ପାଖରେ ଚଳପ୍ରଚଳ ହେଉଛ ନିର୍ବିକାର ଭାବରେ। ଆଶ୍ଚର୍ଯ୍ୟ।"

- "ମୋର ଯେ ଆଉ ଉପାୟ ନାହିଁ, ଅପୁ। ସ୍ୱାମୀ ଗ୍ରହଣ କଲେ ନାହିଁ ବୋଲି ବାପଘରକୁ ଫେରିଯିବାର ଟାଣପଣ ମୋର ନାହିଁ। ମୋ ବୋଉ ଚାଲିଯିବା ପରେ ବାପଘରେ କିଛି ସୁଖରେ ମୋ ଜୀବନ କଟିନାହିଁ। ଛଅମାସ ନ ପୁରୁଣୁ ବାପା ମୋତେ ସାବତ ମାଆଟିଏ ଉପହାର ଦେଲେ। କେତେ ଗାଳି, ମାଡ଼, ଅପମାନ ଆଉ ଯନ୍ତ୍ରଣା ଭିତରେ ନିଜକୁ ସଂସାରର ବୋଝଟିଏ ବୋଲି ଭାବି ବଞ୍ଚୁଥିଲି। ତୁମ ଘରକୁ ଆସି ଜାଣିଲି ସ୍ନେହ, ମମତା କ'ଣ ? ଭଲ ପାଇବା କ'ଣ ? ତୁମମାନଙ୍କ ସ୍ନେହରେ ମୁଁ ଏମିତି ବନ୍ଧା ପଡ଼ିଯାଇଛି ଯେ ଏଠୁ ନିଜକୁ ମୁକୁଳାଇବା ମୁସ୍କିଲ୍ ହେବ। ମୋ ପାଇଁ ତୁମେ କେହି ବ୍ୟସ୍ତ ହେବନାହିଁ। ଦେଖିବ, ସବୁ ଠିକ୍ ହୋଇଯିବ। ମୁଁ ତ କାହାରି କିଛି କ୍ଷତି କରିନାହିଁ। ଭଗବାନ୍ ମୋ ପ୍ରତି କେତେଦିନ ବିମୁଖ ହୋଇ ରହିପାରିବେ ? ନହେଲେ ବି କ'ଣ ହେଲା ? ତୁମମାନଙ୍କର ଭଲପାଇବା ଭିତରେ ଅବଶିଷ୍ଟ ଜୀବନ ବଞ୍ଚିଯିବିନି ?"

ବଡ଼ ନଣନ୍ଦଙ୍କର ପିଲାମାନେ ଛୁଟିରେ ଆସିଥିଲେ ମାମୁଘରକୁ। ମିତୁମାଇଁଙ୍କ ପାଖରେ ସବୁ ଆବଦାର ପିଲା ଦୁହିଁଙ୍କର। ମିତାଲି ମଧ୍ୟ ସେମାନଙ୍କ ସାନ୍ନିଧ୍ୟରେ ଖୁବ୍ ଆନନ୍ଦ ପାଉଥିଲା। ସାରା ଦ୍ୱି'ପ୍ରହର ପିଲାମାନଙ୍କ ସହିତ କ୍ୟାରମ୍ , ଲୁଡୁ, ଚେସ୍ ଖେଳିବାରେ କଟୁଥିଲା। କେବେକେବେ ସେମାନଙ୍କ ସହିତ ଯାଉଥିଲା ବୁଲିବାକୁ। ନଣନ୍ଦ ଅପର୍ଣ୍ଣା, ଦିଅର ଅନୁପ୍ ମଧ୍ୟ ମିତାଲିର ଏକାନ୍ତ ଅନୁଗତ ଥିଲେ। କଲେଜ୍ ସମୟ ବ୍ୟତୀତ ଘରେ ଯେତିକି ସମୟ ରହୁଥିଲେ- ମିତାଲିର ପାଖେ ପାଖେ ରହିବାକୁ ଚେଷ୍ଟା କରୁଥିଲେ। ଶାଶୂ, ଶ୍ୱଶୁର ମଧ୍ୟ ଜାଣି ଜାଣି ତା' ପ୍ରତି କରିଥିବା ଅନ୍ୟାୟର ପ୍ରାୟଶ୍ଚିତ କରୁଥିଲେ ତାକୁ ଖୁସି ରଖିବାକୁ ସବୁପ୍ରକାର ଚେଷ୍ଟା କରି। ଶାଶୂ, ଶ୍ୱଶୁର, ଦିଅର, ନଣନ୍ଦ, ଭଣଜା, ଭାଣିଜୀଙ୍କୁ ନେଇ ମିତାଲି ଏମିତି ମାତି ରହୁଥିଲା ଯେ ଅଭିଜିତ୍‌ଙ୍କର ଅସ୍ତିତ୍ୱ ହିଁ କିଛି ନଥିଲା ଯେମିତି ତା' ପାଖରେ। କାହିଁକି କେଜାଣି, ଆଜିକାଲି ଅଭିଜିତ୍

ଖୁବ୍ ଗୁମ୍‌ସୁମ୍ ହୋଇ ରହୁଥିଲେ । ଅଫିସ୍‌ରୁ ଖୁବ୍ ଶୀଘ୍ର ଫେରି ଆସୁଥିଲେ ଘରକୁ । ନିଜ ରୁମ୍‌ରେ ଆସି ଶୋଇ ଯାଉଥିଲେ । ଚା' ଜଳଖିଆ ଦେଇ ଦେବାପରେ ମିତାଲି ଆଉ ତାଙ୍କ ପାଖ ମାଡୁ ନଥିଲା । ସାରା ପରିବାରର ପ୍ରାଣକେନ୍ଦ୍ର ପାଲଟି ଯାଇଥିଲା ସେଇ ଅତି ସାଧାରଣ ସାଦାସିଧା ଝିଅଟି । ଘରେ କାମ କରିବାକୁ ଲୋକ ଥିଲେ ବି ଅନେକ କାମ ସେ ନିଜେ କରିବାକୁ ଆନନ୍ଦ ପାଉଥିଲା । କୋଉଦିନ କ'ଣ ଜଳଖିଆ ହେବ, ତରକାରୀ କ'ଣ ହେବ, ବଜାରରୁ ସଉଦା କ'ଣ ଆସିବ, ଏସବୁ କଥା ଏଣିକି ମିତାଲି ବୁଝୁଥିଲା । ଘରର ପ୍ରତ୍ୟେକ ସଦସ୍ୟଙ୍କୁ ସେ ନିଜେ ଖାଇବାକୁ ବାଢ଼ି ଦେଉଥିଲା ଏବଂ ଖାଇବା ସରିବା ପର୍ଯ୍ୟନ୍ତ ପାଖରେ ଜଗି ରହୁଥିଲା । ଶାଶୂଙ୍କର ମୁଣ୍ଡ କୁଣ୍ଡାଇଦେବା, ଶ୍ୱଶୁରଙ୍କର ପୋଷାକ ଇସ୍ତ୍ରୀ କରିବା, ନଣନ୍ଦ, ଦିଅରଙ୍କର ସାଙ୍ଗସାଥୀମାନଙ୍କୁ ଆପ୍ୟାୟିତ କରିବା, ଠାକୁରଘର ଧୂଆପୋଛା କରି ଶାଶୂଙ୍କର ସଯତ୍ନ ଲାଳିତ ଅଜସ୍ର ଠାକୁରଙ୍କର ଧାଡ଼ି ଧାଡ଼ି ଫଟୋମାନଙ୍କୁ ଫୁଲ, ଚନ୍ଦନରେ ସଜାଇବାରେ ଖୁବ୍ ଆନନ୍ଦ ପାଉଥିଲା ସେ । ଅଭିଜିତ୍ ଯେତିକି ଯେତିକି ଗମ୍ଭୀର ଦିଶୁଥିଲେ, ମିତାଲି ସେତିକି, ବା ତା'ଠାରୁ ଅଧିକ ଉଚ୍ଛଳ ଆନନ୍ଦରେ କଲ୍ଲୋଳିତ ହେଉଥିଲା । ବୋହୂରୁ ଝିଅ ପାଲଟି ଯାଇଥିଲା ସେ ଏ ଘରର । ସ୍ୱଚ୍ଛନ୍ଦରେ ନିଜର ଆବଶ୍ୟକତା ବିଷୟରେ କହୁଥିଲା ଶାଶୂ, ଶ୍ୱଶୁରଙ୍କୁ । ଭଣଜା, ଭାଣିଜୀ, ଦିଅର, ନଣନ୍ଦଙ୍କ ସହିତ ଫିଲିମ୍ ଦେଖିବାକୁ ଯାଉଥିଲା, ମାର୍କେଟ୍ ଯାଉଥିଲା ଚାଟ୍ ଖାଇବାକୁ, ରୋଲ୍ ଖାଇବାକୁ । ନିଜ ଘରେ ଅଭିଜିତ୍ ହିଁ ଏକୁଟିଆ ହୋଇ ଯାଇଥିଲେ । ଏକା ଏକା ବସି କିଛି ଭାବୁଥିଲେ, କିଛି କିଛି ବହିପତ୍ର ପଢ଼ିବାକୁ ଚେଷ୍ଟା କରୁଥିଲେ, ନହେଲେ ପୁରୁଣା ହିନ୍ଦୀ ସିନେମାର ଦୁଃଖୀ ଦୁଃଖୀ ଗୀତ କି ଗଜଲ୍ ଶୁଣୁଥିଲେ ଷ୍ଟେରିଓରୁ ।

– "ଦେହ ଭଲ ନାହିଁ କି, ବାପା ?" ଅବେଳରେ ପୁଅକୁ ଘର ଅନ୍ଧାର କରି ଶୋଇ ରହିଥିବା ଦେଖି ସୁପ୍ରଭା ଦେବୀ ପଚାରିଲେ । ଲାଇଟ୍ ଜଳାଇଦେଲେ ସେ ।

– "ମୁଣ୍ଡଟା ଭୀଷଣ ବିନ୍ଧୁଛି ।" ଅଭିଜିତ୍ କହିଲେ ।

– "ଦେଖେଁ – ଜ୍ୱର ନାହିଁ ତ ? ନା – ଥଣ୍ଡା ଲାଗି ବିନ୍ଧୁଥିବ ମୁଣ୍ଡ । ଚା' ପିଇଛୁ ?" ସୁପ୍ରଭା ଦେବୀ ପଚାରିଲେ ।

– "ହଁ, ପିଇଥିଲି, ଆଉ କପେ ପଠାଇଦେ ।" ଅଭିଜିତ୍ କହିଲେ ।

– " ମୁଁ ନିଜେ ନେଇ ଆସୁଛି ।" ସୁପ୍ରଭା ଦେବୀ କହିଲେ ।

– "କାହିଁକି, ଘରେ କ'ଣ ଆଉ କେହି ନାହାନ୍ତି ?" ଅଭିଜିତ୍ ପଚାରିଲେ ।

– " ଅପୁ, ମିତା, ଅନୁ ହେରିକା ଛୁଆମାନଙ୍କୁ ନେଇ ସିନେମା ଯାଇଛନ୍ତି । ଆଉ ଟିକେକୁ ଫେରିଆସିବେ ଯେ । ମଦନାକୁ ମାର୍କେଟ୍ ପଠେଇଛି ପରିବା ପାଇଁ । ତୁ ଟିକେ ଶୋଇଥା । ମୁଁ ଅଦା ପକେଇ ଚା' ଟିକେ କରିଆଣୁଛି । ଭଲ ଲାଗିବ ପିଇଲେ ।" ସୁପ୍ରଭା

ଦେବୀ କୋମଳ କଣ୍ଠରେ କହିଲେ।

- "ଥାଉ, ଇଚ୍ଛା ହେଉନି ପିଇବାକୁ। ମୋତେ ଆନାଲ୍‌ଜିନ୍ ଟାବ୍‌ଲେଟ୍ ଗୋଟେ ଦେ। ମୁଁ ଶୋଇଯିବି ଭଲ ଲାଗିବ।" ପୁଅର ଚାପା ଦୀର୍ଘଶ୍ୱାସ ଅନ୍ଦାଜ୍ କରିପାରିଲେ ସୁପ୍ରଭାଦେବୀ। ଔଷଧ ଆଣି ପାଣି ଗ୍ଲାସ୍ ସହିତ ବଢ଼ାଇ ଦେଲେ ପୁଅ ହାତକୁ। କେଡ଼େ ଶୁଖିଲା ଦିଶୁଛି ତା ମୁହଁ। କ'ଣ ହୋଇଛି ତା'ର ? କାହାକୁ କ'ଣ ମନଖୋଲି କିଛି ସେ କହିବ ଯେ କିଏ ଜାଣିବ ତା' ଭିତରର କଥା ? କାନ୍ଥ ଆଡ଼କୁ ମୁହଁ ବୁଲାଇ ଶୋଇଲେ ଅଭିଜିତ୍। ସୁପ୍ରଭାଦେବୀଙ୍କର ଆଖି ଛଳଛଳ ହେଲା। ଆହା - କେତେ ଆଦରର ପ୍ରଥମ ସନ୍ତାନ ତାଙ୍କର ! ଜାଣିଜାଣି ନିଜ ଜୀବନକୁ ଦୁର୍ବିସହ କରି ସାରିଲାଣି। ହାତ ପାଖରେ ଥିବା ମାଣିକ୍ୟକୁ ପଥର ପରି ଆଡ଼େଇ ଦେଇ ରଙ୍ଗିନ୍ କାଚଖଣ୍ଡକୁ 'ମଣି' ବୋଲି ମୁଠାଇ ଧରିଛି। ଅନୁତାପ ନ ହୋଇ ତା'ର ଆଉ ଗତି ଅଛି ? ସେ ଅଲକ୍ଷଣୀର ବି ନିଜର ଘର ସଂସାର, ପିଲାଛୁଆ ଥାଉ ଥାଉ ମୋହିନୀ ମାୟା ବିଛେଇ ପୁଅଟାକୁ କିମିଆଁ କରି ରଖିଛି। ସତରେ କ'ଣ ଭଗବାନ୍ ଦୟା କରିବେ - ପୁଅକୁ ଭଲ ବୁଦ୍ଧି ଦେବେ- ନିଜ ଭୁଲ୍ ବୁଝି ବାଟକୁ ଫେରିଆସିବ ସେ ! ଧୀର ପବନରେ କାନ୍ଥରେ ଟଙ୍ଗା ଯାଇଥିବା କ୍ୟାଲେଣ୍ଡରଟି ଦୋହଲୁଛି। ତଥାଗତ ବୁଦ୍ଧଙ୍କର କରୁଣାମୟ ଶାନ୍ତ ରୂପଟି ଆଗରେ ମନେ ମନେ ନତମସ୍ତକ ହୋଇ ପ୍ରାର୍ଥନା କଲେ ସୁପ୍ରଭା ଦେବୀ। "ହେ ପରମ କାରୁଣିକ, ମୋ ପୁଅକୁ ସତ୍ୟର ଆଲୋକ ଦେଖାଅ। ତା'ର ବିକ୍ଷୁବ୍ଧ ହୃଦୟକୁ ଶାନ୍ତ କର।"

ଦୁଇ ତିନିଦିନ ପରେ ଅଫିସ୍‌ରୁ ଫେରି ବୋଉଙ୍କ ପାଖରେ ବସିଲେ ଅଭିଜିତ୍।

- "କିଛି କହିବୁ ?" ପଚାରିଲେ ସୁପ୍ରଭା ଦେବୀ।

- "ସପ୍ତାହକ ପାଇଁ ମୁଁ ଦିଲ୍ଲୀ ଯାଉଛି, ଅଫିସ୍ କାମରେ।" ଅଭିଜିତ୍ କହିଲେ।

- " କେବେ ଯିବୁ ?"

- "କାଲି। ମିତାଲିକୁ ମୋ ସାଙ୍ଗରେ ନେଇଯିବି।" ଅଭିଜିତ୍‌ଙ୍କ କଣ୍ଠ ଦୁର୍ବଳ ଶୁଭିଲା।

ଆଶ୍ଚର୍ଯ୍ୟ ହେଲେ ସୁପ୍ରଭା ଦେବୀ। ପୁଅ ତାଙ୍କର ଟୁର୍‌ରେ ଗଲେ ସାଂଗରେ କିଏ ଯାଏ, କୋଉଠି ରହନ୍ତି ସେମାନେ - ସେସବୁ ଖବର କିଛି କିଛି ତାଙ୍କ କାନରେ ଆସି ପଡ଼େ। ମିତାଲି ପ୍ରତି ଏଭଳି ଅହେତୁକ ଶ୍ରଦ୍ଧାର କାରଣ କ'ଣ ? ଆଉ କିଛି ଉଦ୍ଦେଶ୍ୟ ନାହିଁ ତ ? ସେଇ ମାୟାବିନୀର ପ୍ରରୋଚନାରେ ପଡ଼ି କିଛି ଅଘଟଣ ଘଟାଇବାର ଚକ୍ରାନ୍ତ କରିନି ତ ତାଙ୍କ ପୁଅ ! ନିଜର ଜନ୍ମିତ ପୁତ୍ର ପ୍ରତି ସନ୍ଦେହ ଭାବରୁ ନିଜକୁ ମୁକ୍ତ କରିପାରୁନଥିଲେ ସୁପ୍ରଭା ଦେବୀ।

- "ମିତାଲିକୁ ପଚାରିଛୁ ?" ପଚାରିଲେ ସେ।

– "ତୁ 'ହଁ' କହିଲେ ପଚାରିବି।" ଅଭିଜିତ୍ କହିଲେ।

– "ସିଏ ବୋଧେ ଯାଇ ପାରିବନି । ତାଙ୍କ ଘରୁ ଚିଠି ଆସିଥିଲା, ତା ବାପାଙ୍କ ଦେହ ବହୁତ ଖରାପ। ବାପାଙ୍କୁ ଦେଖିବାକୁ ଯିବ କି କ'ଣ। ତୁ ନିଜେ ପଚାରୁନୁ ?" ସୁପ୍ରଭା ଦେବୀ ନୀରସ କଣ୍ଠରେ କହିଲେ।

– "ହଉ" କହି ଅଭିଜିତ୍ ନିଜ ରୁମ୍‌କୁ ଚାଲିଗଲେ।

ତାଙ୍କୁ ଦେଖୁ ଦେଖୁ ମିତାଲି ଚା' ବିସ୍କୁଟ୍ ନେଇ ପହଞ୍ଚିଗଲା।

– "ଆଜିକାଲି କ'ଣ ଖୁବ୍ ଚଞ୍ଚଳ ଘରକୁ ଫେରି ଆସୁଛ ?" ଚା' କପ୍‌ଟା ଅଭିଜିତ୍‌ଙ୍କ ହାତକୁ ବଢ଼େଇ ଦେଇ ମିତାଲି ପଚାରିଲା। ତା'ର ସେଇ ସୁସ୍ମିତ ମୁହଁଟିକୁ ଚାହିଁ ଅଭିଜିତ୍ କହିଲେ, "ତୁମର କିଛି ଅସୁବିଧା ହେଉଛି, ମୁଁ ଜଲ୍‌ଦି ଆସିଲେ ?" ମିତାଲି ହସିଉଠି କହିଲା, "ରାମ୍ ରାମ୍, ମୁଁ କାହିଁକି ଏକଥା କହିବି ମ। ତୁମ ଘର, ତୁମ ଇଚ୍ଛା, ତୁମେ କେତେବେଳେ ଆସିବ, କେତେବେଳେ ଯିବ। ମୁଁ କହିବାକୁ କିଏ ?"

– "ମୋ ସାଙ୍ଗରେ ଦିଲ୍ଲୀ ଯିବ ? ସାତଦିନ ପାଇଁ ଯାଉଛି କାଲିଠୁ – ଯିବ ?" ଅଭିଜିତ୍ ଖୁବ୍ ଉତ୍‌କଣ୍ଠିତ ହୋଇ ପଚାରିଲେ। ଅବାକ୍ ହୋଇ ତାଙ୍କ ମୁହଁକୁ କିଛି ସମୟ ଚାହିଁଲା ମିତାଲି। ତା'ପରେ ସେ ଖିଲ୍ ଖିଲ୍ ହୋଇ ହସି ଉଠି କହିଲା, "ମୋତେ କ'ଣ ତୁମେ ଥଟ୍ଟା କରୁଛ ? କୋଉ ଅଧିକାରରେ ତୁମ ସାଂଗରେ ଯିବି କହିଲ ?"

– "ତୁମେ ମୋର ସ୍ତ୍ରୀ – ଏକଥା କ'ଣ ଅସ୍ୱୀକାର କରିବ ?"

ମିତାଲି ଓଠର ହସ ଲିଭିଯାଇଥିଲା। ଗମ୍ଭୀର କଣ୍ଠରେ କହିଲା, "ତୁମେ ନିଜେ ସ୍ୱୀକାର କରିଛ ଏକଥା ?" ଅଭିଜିତ୍‌ଙ୍କ ଆଖିକୁ ସିଧା ସଳଖ ଚାହିଁ ପଚାରିଲା ମିତାଲି। ସେଇ ଦୃଷ୍ଟିକୁ ସହ୍ୟ କରି ନପାରି ଆଖି ତଳକୁ କଲେ ଅଭିଜିତ୍। ନିର୍ବାକ୍ ହୋଇଗଲେ ସେ।

– "ତୁମେ ଯାଅ– ସବୁଥର ଯେମିତି ଯାଅ, ସେମିତି ଯାଅ। ତୁମ ପାଖରୁ ମୋର କୌଣସି ପ୍ରତ୍ୟାଶା ନାହିଁ। ତୁମ ଯୋଗୁଁ ଯାହା ମୁଁ ପାଇଛି – ସେଥିପାଇଁ ବହୁତ ବେଶି କୃତଜ୍ଞ ମୁଁ। ଆମ ଘରୁ ଚିଠି ଆସିଛି – ମୋ ବାପାଙ୍କ ଦେହ ଖୁବ୍ ସିରିଅସ୍। ତାଙ୍କୁ ଥରେ ଦେଖି ଆସିବି ବୋଲି ଭାବୁଛି। ମୋତେ କୁଆଡ଼େ ଖୋଜୁଛନ୍ତି ସେ। ଯାହାହେଉ – ଏ ପୃଥିବୀରେ ମୋ ପରି ଅକିଞ୍ଚନକୁ ଖୋଜିବାକୁ, ମନେ ପକାଇବାକୁ ବି ଲୋକ ଅଛନ୍ତି।" ମିତାଲି ହସିବାକୁ ଚେଷ୍ଟା କଲା।

– "ତୁମେ ଗଲେ ଏଠି କେମିତି ଚଳିବ ? ମାନେ– ବୋଉ, ବାପା, ଅପୁ, ଅନୁ ଏମାନେ ହଇରାଣ ହେବେନି ?"

– "କାହା ବିନା ଏ ପୃଥିବୀରେ କିଛି ଅଟକି ଯାଏ ନାହିଁ। ଏ ଘରକୁ ମୁଁ

ଆସିନଥିବା ବେଳେ ଏ ଘର ଚଳୁଥିଲା – ମୁଁ ନଥିଲେ ବି ଏ ଘର ଠିକ୍ ଚଳିବ।"

– "ମୋ ସାଂଗରେ ଯିବନି ତା' ହେଲେ ?" ଅଭିଜିତ୍ ପଚାରିଲେ ପୁଣିଥରେ।

"କହିଲି ତ – ନ ଯିବାର କାରଣ।" ମିତାଲି ଦୃଢ଼ତାର ସହିତ କହିଲା।

ମିତାଲି ବାପାଙ୍କୁ ଦେଖିବାକୁ ଯିବା ପୂର୍ବରୁ ସେ ଚାଲିଗଲେ। ଖବର ପାଇଲା ବେଳକୁ ତିନିଦିନ ହୋଇଗଲାଣି। ଟେଲିଗ୍ରାମଟି ପାଇ ମିତାଲି ସ୍ତବ୍ଧ ହୋଇ ଯାଇଥିଲା। ଶାଶୂଙ୍କ କହିବା ଅନୁଯାୟୀ ଖବର ଶୁଣି ମୁଣ୍ଡଧୋଇ ଗାଧୋଇ ପଡ଼ିଥିଲା। ଆଶ୍ଚର୍ଯ୍ୟ! ବାପାଙ୍କ ପାଇଁ ଆଖିରେ ଟୋପାଏ ବି ଲୁହ ଆସୁନଥିଲା ତା'ର! ଏମିତି ନିଷ୍ଠୁର- ହୃଦୟା ତ ନୁହେଁ ସେ! ଶାଶୂ କହିଲେ – "ଆହା, ବେଶି ଦୁଃଖ ହେଲେ କିଏ କ'ଣ କାନ୍ଦିପାରେ ? ଖୁସିବାସିଆ ପିଲାଟି ମୋର ମୂକ ହୋଇଯାଇଛି। କାନ୍ଦି ଦିଅନ୍ତା ଯଦି ମନ ହାଲୁକା ହୋଇଯାଆନ୍ତା।"

ଚୁପ୍ ହୋଇ ଭାବୁଥିଲା ମିତାଲି। ବାପା ତା'ର ଚାଲିଯାଇଛନ୍ତି କେତେବେଳେ ସେ ଜାଣି ପାରିଲାନି କେମିତି ? ତା' ଭିତରେ ବିଷଣ୍ଣତାର ସ୍ୱରଟିଏ ଆଦୌ ବାଜି ନାହିଁ। ସେ ଆନନ୍ଦର ସହିତ ଖାଇଛି, ପିଇଛି, ଫିଲିମ୍ ଦେଖିଛି, ଖୁସିଗପ କରିଛି, ହସି ହସି ଲୋଟିପଡ଼ିଛି। ସମ୍ପର୍କର ଖିଅଟି କଟିଯାଇଛି କେବେ ଠାରୁ। ବାପାଙ୍କ କଥା ଭାବିଲେ ସେଇ ନିଷ୍ଠୁର ମୁହଁଟି ମନେ ପଡୁଛି କେବଳ; ନୂଆମା ଆସିବା ପରର ସ୍ୱାର୍ଥପର, ଏକପାଖିଆ ବିଚାରକର ମୁହଁ। ନୂଆମା'ର ମିଛ ଅଭିଯୋଗ ଶୁଣି କେତେଥର ଯେ ନୃଶଂସ ଭାବରେ ତାକୁ ପିଟିଛନ୍ତି, ତା'ର ହିସାବ ନାହିଁ। ମିତାଲି ଖାଇଛି କି ନାହିଁ, ତା'ର ଦେହ ଭଲ ଅଛି କି ନା – ସେ ଖବର କିଛି ରଖିନାହାନ୍ତି ବାପା। ନୂଆମା'ର ଦୟା ଓ ଅନୁଗ୍ରହରେ ସେ ବଞ୍ଚିଛି ସେଇ ଦିନସବୁ। ବାହାଘର ବେଳର କଥା ବି କ'ଣ ସେ ଭୁଲିପାରିବ ? ଶାଶୂଘର ଲୋକଙ୍କ ପାଖରେ କି ଦୟନୀୟ ଭାବରେ ତାକୁ ପହଞ୍ଚାଇ ଥିଲେ ତା ବାପା ? ଝିଅ ପ୍ରତି ସାମାନ୍ୟ ସ୍ନେହ ଥିଲେ, ଦାୟିତ୍ୱବୋଧ ଥିଲେ କିଛି ବୁଝାଶୁଝା ନ କରି ମିତାଲିକୁ ଏମିତି ବାହା କରି ଦେଇଥାଆନ୍ତେ ? ନା– ଏମିତି ବାପାଙ୍କ ପାଇଁ ଟୋପାଏ ବି ଲୁହ ସେ ଗଡ଼ାଇବ ନାହିଁ ଆଖିରୁ।

ମିତାଲି ହସୁନଥିଲା ବୋଲି ସାରାଘର ଯେମିତି ଥମ୍‌ଥମ୍ ଲାଗୁଥିଲା। ନିଜେ ସେ ମନା କରିଥିଲା ବାପଘରକୁ ଯିବାପାଇଁ । କାହିଁକି ଯିବ ସେ ? କାହାପାଇଁ ଯିବ ? ଶାଶୂ ବୁଝାଇ ଦେଇଥିଲେ, "ଛି ମା, ନଗଲେ ଲୋକେ କ'ଣ କହିବେ ? ବାପାଙ୍କ ଶୁଦ୍ଧିଘରକୁ ତୁ ନିଶ୍ଚୟ ଯିବୁ। ତୋର ଯାହା କର୍ତ୍ତବ୍ୟ ସେତକ କରିବୁ। ପରେ ଆଉ ନଗଲେ ନଯିବୁ କେବେ। ଶେଷଥର ପାଇଁ ଯା'।" ଶାଶୂ, ନଣନ୍ଦ ମିଶି ମିତାଲିର ଜିନିଷପତ୍ର ସଜାଡ଼ି

ଦେଇଥିଲେ । ଟ୍ୟାକ୍ସିରେ ଆସି ବସିଲା ପରେ ମିତାଲି ଜାଣିଲା, ଅଭିଜିତ୍ ଯାଉଛନ୍ତି ତା' ସହିତ । ଦିଲ୍ଲୀ ଯାଇ ନଥିଲେ ସେ । କାରଣ ପଚାରିନାହିଁ ମିତାଲି । ଟୁର୍ ପ୍ରୋଗାମ୍ ବାତିଲ୍ ହୋଇ ଯାଇଥିବ ହୁଏତ । ମିତାଲି ଭିତରଟା ଏମିତି ନିସ୍ତବ୍ଧ ହୋଇ ଯାଇଥିଲା ଯେ ଅଭିଜିତ୍ ତା'ର ସହଯାତ୍ରୀ ହେବା ନହେବା ତା' ପାଇଁ କୌଣସି ଭାବାନ୍ତର ସୃଷ୍ଟି କରିନଥିଲା । ଭୁବନେଶ୍ୱରରୁ କେନ୍ଦୁଝର – କିଛି କମ୍ ବାଟ ନୁହେଁ । ବାଟରେ କେତେଥର ଅଭିଜିତ୍ ମିତାଲିକୁ ପଚାରିଛନ୍ତି – ସେ ଚା' ପିଇବ କି ? କିଛି ଖାଇଲେ କେମିତି ହୁଅନ୍ତା ? ସେ ବାହାରକୁ ଯିବ କି ? ମିତାଲି ପ୍ରତ୍ୟେକ ଥର ମୁଣ୍ଡ ହଲେଇ ମନା କରିଦିଏ । ପଥର ମୂର୍ତ୍ତି ଭଳି ସେ ବସି ରହିଥାଏ । ସେ ମନାକରିବା ହେତୁ ଅଭିଜିତ୍ ମଧ୍ୟ କିଛି ଖିଆପିଆ କରୁନାହାନ୍ତି, ଏକଥା ତା'ର ଖିଆଲ୍ ନଥିଲା ।

ରାତି ନଅଟା ପାଖାପାଖି ସେମାନେ ଘରେ ପହଞ୍ଚିଲେ । ବାହାଘର ପରେ ପ୍ରଥମ ଥରପାଇଁ ବାପଘରକୁ ଆସିଛି ମିତାଲି ସ୍ୱାମୀଙ୍କ ସହିତ । ଅଶୁଭ କାମରେ ପହିଲି ପାଳି ଝିଅମାନେ ଆସନ୍ତି ନାହିଁ । କିନ୍ତୁ ମିତାଲିର ଶାଶୂଘରେ ଏସବୁ ବିଶ୍ୱାସ ନାହିଁ । ଜନ୍ମଦାତା ବାପାଙ୍କର ଶୁଦ୍ଧିଘରରେ ଝିଅ ଆସିବନି – ଇଏ ପୁଣି କେମିତି କଥା ! ଝିଅ ଜ୍ୱାଇଁଙ୍କୁ ଦେଖିବାପାଇଁ ସାଙ୍ଗେ ସାଙ୍ଗେ ଗହଳି ଲାଗିଗଲା । ସେଇ ଗହଳି ଭିତରେ ଆକୁଳ କାନ୍ଦଣାଟିଏ ଶୁଭୁଥିଲା ନୂଆମାଆର । ବାୟାଣୀ ପରି ଧାଇଁ ଆସି ମିତାଲିକୁ ଜାବୁଡ଼ି ଧରି ନୂଆମା' କହିଲା, "କ'ଣ ଆଉ ଦେଖିବାକୁ ଆଇଲୁ ଲୋ ମା ? ତୋତେ ଦେଖିବେ ଦେଖିବେ ହୋଇ ସିଏ ତ ଚାଲିଗଲେ ସବୁଦିନ ପାଇଁ । ଦେଖ୍ ମୋତେ – ତୋତେ କେତେ ହୀନସ୍ତା କରିଥିଲି – ଦଇବ ମୋତେ ତା'ଠୁ କେତେ ହୀନିମାନୀ କରିଦେଲା ? ଏ ପୋଡ଼ାମୁହଁ ଆଉ କୋଉଠି ଦେଖେଇବି ଲୋ, ମୋ ମାଆ ?"

ଚିରଦର୍ପିତା, ଉଗ୍ର ସ୍ୱଭାବର ନୂଆମା'ର ଏ ରୂପ ସତରେ ଅସହ୍ୟ । ତା'ର ଫୁଙ୍ଗୁଳା ହାତ ଦୁଇଟାକୁ ଧରି ମିତାଲି କିଛି ସାନ୍ତ୍ୱନା ଦେବାପାଇଁ ଚେଷ୍ଟା କଲା । ମାତ୍ର ତା' ପାଟିରୁ କିଛି ବି କଥା ବାହାରିଲା ନାହିଁ । ଆଖିରେ ହାତମାରିଲା ନିଜର । ନା- ଲୁହ ଟୋପେ ବି ଝରିନି ଆଖିରୁ । ସେ କାନ୍ଦିବା ଆଗରୁ କେହି ଜଣେ ସହୃଦୟା ତାକୁ କୋଳେଇ ନେଇ ସାନ୍ତ୍ୱନା ଦେବାକୁ ଆରମ୍ଭ କରିଦେଲେ, "ଥାଉ ମା, ଆଉ କାନ୍ଦିଲେ କ'ଣ ବାପା ଲେଉଟି ଆସିବ ? ଆହା – ଆଗରୁ ହେଲେ ଆସିଥାଆନ୍ତୁ । ତୋ ପାଖରେ କ୍ଷମା ମାଗିବେ ବୋଲି କେତେ ନେହୁରା ହେଉଥିଲେ ସେ !"

ମିତାଲିର ଛାତି ଧାଇଁକିନା ହେଲା । ବାପା କ୍ଷମା ମାଗିଥାଆନ୍ତେ ? କୋଉ କୋଉ ଭୁଲ୍ ପାଇଁ କ୍ଷମା ମାଗି ଥାଆନ୍ତେ ! ମିତାଲିର ବୋଉକୁ ଅବହେଳାରେ ମାରିଦେବାଠାରୁ ମିତାଲିର ବାହାଘର କରିବା ଯାଏ ? କ୍ଷମା ମାଗିଦେଲେ, ମିଳିଯିବା ସହଜ ନା କ'ଣ ?

- "ଆରେ ଝିଅ ଜୋଇଁ ଏତେ ବାଟରୁ ଆସିଲେ। ଧୁଆଧୋଇ ହୁଅନ୍ତୁ, ତାଙ୍କୁ କ'ଣ ଦି'ଟା ଖାଇବାକୁ ଦିଅ। କନ୍ଦାକଟା ସବୁ ପରେ ହେବ।" ମୁରବିପଣିଆ ଦେଖାଇ କେହି ଜଣେ କହିଲେ।

ପ୍ରଥମ ଥର ପାଇଁ ଅଭିଜିତ୍‌ଙ୍କ ପାଇଁ ବ୍ୟସ୍ତତା ପ୍ରକାଶ କଲା ମିତାଲି, କୋଉଠି ରହିବେ ସେ ଏଠି ? ଅୟସ ଆରାମରେ ଚଳି ଆସିଥିବା ଖୁବ୍ ସୁକୁମାରିଆ ଲୋକ ସେ। ଏଇ ଦୀନହୀନ ପରିବେଶରେ ଅସ୍ୱସ୍ତି ଅନୁଭବ କରିବେ। ବରଂ କୋଉ ହୋଟେଲ୍ ବା ଲଜିଂକୁ ସେ ଚାଲିଯାଆନ୍ତୁ। କିନ୍ତୁ ସେ କଥା କ'ଣ ହୁଏ ? ଅଭିଜିତ୍ ରାଜି ହେଲେ ନାହିଁ ଯିବାକୁ। ସେଇଠି ତାଙ୍କ ପାଇଁ ରହିବାର ବ୍ୟବସ୍ଥା କରାଗଲା।

ମିତାଲି ବାପାଙ୍କର ଶୁଦ୍ଧିଘର। ମିତାଲି କିନ୍ତୁ ପ୍ରାୟ ନିଷ୍କ୍ରିୟ ହୋଇ ବସିଥିଲା। ଯିଏ ଯାହା କହନ୍ତି ଶୁଣେ, ଯାହା କରିବାକୁ କୁହାଯାଏ କରେ। ନଖକଟା, ଅଳତା ଲଗା, ନୂଆଲୁଗା ପିନ୍ଧା, ସବୁ ସେ ଅନ୍ୟମାନଙ୍କ ନିର୍ଦ୍ଦେଶରେ କରୁଥିଲା। ନୂଆ ମା'ର ପୁଅଝିଅ ଦୁଇଟି ମିତାଲି ପାଖକୁ ଆସିବାକୁ ସଂକୋଚ କରୁଥିଲେ। ବାପା ମାଆଙ୍କର ଏଇ ଭଉଣୀ ପ୍ରତି ଅବିଚାର ଓ ଅତ୍ୟାଚାରର ସାକ୍ଷୀ ସେମାନେ। ଆସିବା ପାଖରୁ ମିତାଲି ଯେମିତି ଗୁମ୍‌ସୁମ୍ ହୋଇ ରହିଛି - ତାକୁ କିଛି କହିବାକୁ ଭରସି ପାରୁନଥିଲେ ସେମାନେ। ଅଭିଜିତ୍‌ଙ୍କ ସହିତ କିନ୍ତୁ ଖୁବ୍ ଅନ୍ତରଂଗ ହୋଇ ଯାଇଥିଲେ ରୂପା ଓ ମିଟୁନ୍, ମିତାଲିର ଆଠ ଆଉ ଦଶ ବର୍ଷର ସାବତ ଭାଇ ଭଉଣୀ ଦୁଇଟି। ଦଶବର୍ଷର ମିଟୁନ୍ ବାପାଙ୍କର କ୍ରିୟା ଧରିଥିଲା। ମୁଖାଗ୍ନି ଦେଇଥିଲା ସେ।

ଅଭିଜିତ୍‌ଙ୍କର ଭିନ୍ନ ଏକ ରୂପ ଏଇଠି ଦେଖୁଥିଲା ମିତାଲି। ଖୁବ୍ ଦାୟିତ୍ୱସମ୍ପନ୍ନ ବ୍ୟକ୍ତି ଭଳି କାମରେ ଲାଗିଯାଇଥିଲେ ସେ। ତାଙ୍କ ନିର୍ଦ୍ଦେଶରେ ସବୁକାମ ହେଉଥିଲା। ପ୍ରଚୁର ଟଙ୍କା ଖର୍ଚ୍ଚ କରୁଥିଲେ ସେ ଭୋଜି ବାବଦରେ; ଲୁଗାପଟା ପାଇଁ ମଧ୍ୟ ସବୁ ଟଙ୍କା ସେ ଦେଇଥିଲେ। ଭୂରି ଭୂରି ପ୍ରଶଂସା କରୁଥିଲେ ସମସ୍ତେ - ଭାଗ୍ୟରେ ଥିଲେ ଏମିତି ହୀରା ପରି ଜ୍ୱାଇଁ ମିଳେ। ଯେମିତି ରଜାପୁଅ ପରି ଚେହେରା - ସେମିତି ବାଦ୍‌ଶାହଙ୍କ ପରି ବଡ଼ ମନ। ଚାପା ସ୍ୱରରେ କେହି କେହି ନୂଆମା'କୁ ଭର୍ତ୍ସନା କରିବାର ଶୁଣିଲା ମିତାଲି, "ଏମିତି ବଢ଼ିଆ ଜୋଇଁ ନାଆଁରେ ମିଛରେ ଏତେକଥା କହୁଥିଲ। ବାରଲୋକଙ୍କଠୁ ମିଛକଥା ଶୁଣି ବାପାଟି ବି ମରିଗଲା ନିଜକୁ ଧିକ୍‌କାର କରି। ଆହେ, ପୁରୁଷପିଲାର ଚରିତ୍ର ଗୋଟେ କ'ଣ ? ପିତଳ ହାଣ୍ଡି - ମାଜିଦେଲେ ଚକ୍‌ଚକ୍। ଏଡ଼େ ବଡ଼ଘରର ପୁଅ, ଦଶଲୋକଙ୍କ ସହିତ ମିଶୁଛନ୍ତି, ବସୁଛନ୍ତି। କାହା ସହିତ ଟିକେ ଭାବନାବ ହୋଇଗଲା ତ କ'ଣ ପୃଥ୍ୱୀ ପ୍ରଳୟ ହୋଇଗଲା ? ଝିଅକୁ ତ ତୁମର ରାଣୀ କରି ରଖିଛନ୍ତି।"

ଫେରିବା ଦିନ ମିତାଲିର ନୂଆମା ଅନେକ କାନ୍ଦିଥିଲେ। ତା'ର ହାତ ଧରି ଖୁବ୍

ବ୍ୟାକୁଳ ହୋଇ କହିଥିଲେ, "ପଛକଥା ସବୁ ମନରୁ ପୋଛିଦେବୁ, ମା ମିତୁ। ତୋ ଛଡ଼ା ଆମକୁ ଦେଖିବାକୁ ଆଉ କେହି ନାହିଁ। ସୁଖରେ ରହି ଆମକୁ ଭୁଲିଯିବୁନି।" ମିତାଲିର ଅବରୁଦ୍ଧ ଶୋକ ହୁଏତ ଆଉ ଟିକକରେ ବହିଲି ଯାଇଥାଆନ୍ତା। ସୁଁ ସୁଁ ହୋଇ ନୂଆମା' କହିଲା, "ଏଇଠି ଟିକେ ଦସ୍ତଖତ୍ କରିଦେ ମା।"

– "କ'ଣ ଏଇଟା ?" ପଚାରିଲା ମିତାଲି।

– "କିଛି ନୁହେଁ –ତୁ ତ ରାଜରାଣୀ ହୋଇ ରହିଛୁ। ତୋର ଅବା ଏଇ ଭଂଗାକୁଡ଼ିଆ କି ଦି'ପା ଜମିରେ କି ଦରକାର ? ବାପା ତୋର ଏଣୁତେଣୁ କଥାଶୁଣି ଏ ଘରବାଡ଼ି ଜମିର କାଗଜରେ ତୋ ନାଆଁରେ ଅଧେ ଲେଖି ଦେଇଛନ୍ତି। ସେଇତକ ତୋ ଭାଇଭଉଣୀଙ୍କୁ ଦେଇଯା। ମୁଁ ସିନା ତୋର ପର, ସେମାନେ ତ ତୋର ନିଜ ରକ୍ତ।" ନୂଆମା କହିଲା।

ଆଖିବୁଜି ଦସ୍ତଖତ୍ କରିଦେଇ ଅଣନିଃଶ୍ୱାସୀ ହୋଇ ଧାଇଁଯାଇ ଗାଡ଼ିରେ ବସିଲା ମିତାଲି। କାହାରି ମୁହଁକୁ ଆଉ ଚାହିଁବାର ଇଚ୍ଛା ହେଉନଥିଲା ତା'ର ।ସମସ୍ତଙ୍କୁ ବିଦାୟ ସମ୍ଭାଷଣ ଜଣାଇ ଟିକିଏ ପରେ ଗାଡ଼ିରେ ଆସି ବସିଲେ ଅଭିଜିତ୍। ମିତାଲି ଆଖି ବନ୍ଦ କରି ବସିଥିଲା। ଗାଡ଼ି ଚାଲିବାର କିଛି ସମୟ ପରେ ଅଭିଜିତ୍ ଲକ୍ଷ୍ୟ କଲେ ମିତାଲିର ବନ୍ଦ ଆଖିର ପତା ଦେଇ ଧାର ଧାର ଲୁହ ଝରିପଡୁଛି। ମିତାଲିର ହସ ଦିନେ ତାଙ୍କ ପାଇଁ ଅସହ୍ୟ ମନେ ହେଉଥିଲା। ଅକାରଣରେ ସବୁକଥାରେ ହସିବା ନେଇ ସେ କେତେଥର ବିରକ୍ତ ହୋଇଛନ୍ତି ତା' ଉପରେ। ତାଙ୍କର ବିରକ୍ତିକୁ କେବେ ଖାତିର୍ କରିନାହିଁ ସେ – ଖାତିର୍ କରିନାହିଁ ଅଭିଜିତ୍‌ଙ୍କର ତା' ପ୍ରତି ଅନାଗ୍ରହ ଭାବକୁ– ତାଙ୍କର ପ୍ରତ୍ୟାଖ୍ୟାନକୁ। ସବୁ ପରିସ୍ଥିତିରେ ଅନବରତ ହସୁଥିବା ଏଇ ଝିଅଟିର ଅଶ୍ରୁମୁଖୀ ରୂପଟି ଆଜି ଅସହ୍ୟ ମନେ ହେଉଥିଲା ତାଙ୍କର। ମିତାଲି ତାଙ୍କର ବିବାହିତା ପତ୍ନୀ। ସେଭଳି ସହଜ, ସ୍ୱାଭାବିକ ସମ୍ପର୍କ ଥିଲେ ସ୍ୱାମୀର ଅଧିକାର ନେଇ ତାକୁ ଟାଣି ଆଣନ୍ତେ ପାଖକୁ। ଆଖିରୁ ଲୁହ ପୋଛି ପ୍ରବୋଧନା ଦିଅନ୍ତେ। କିନ୍ତୁ ଗୋଟିଏ ଛଳନାମୟୀ ନାରୀର ମିଥ୍ୟା ପ୍ରଲୋଭନକୁ 'ପ୍ରେମ' ମନେକରି ପରିଣୀତା ପତ୍ନୀକୁ ଉପେକ୍ଷା କରିଛନ୍ତି। ବାରମ୍ବାର ଅପମାନିତ କରିଛନ୍ତି, ବିଦ୍ରୂପ କରିଛନ୍ତି। ସେସବୁ କିଛି ଦେହକୁ ନେଇନାହିଁ ମିତାଲି। ତାଙ୍କଠାରୁ କିଛି ବି ଦାବି କରିନାହିଁ, ଅଭିଯୋଗ କରିନାହିଁ। ଅନ୍ୟମାନଙ୍କ ନିକଟରେ ତାଙ୍କୁ ଅପଦସ୍ଥ କରାଇନାହିଁ। ନିଜର କର୍ତ୍ତବ୍ୟ ବୋଲି ଯାହା ଭାବିଛି– ନିର୍ବିକାର ଭାବରେ କରିଛି। ସ୍ୱକୀୟ ଗୁଣରେ ସାରା ପରିବାରକୁ ଆପଣାର କରିବା ସଙ୍ଗେ ସଙ୍ଗେ ଅଭିଜିତ୍‌ଙ୍କ ମନରେ କେତେବେଳେ ଶ୍ରଦ୍ଧାର ଆସନଟିଏ ଦଖଲ କରି ବସିଛି – ସେ ନିଜେ ବି ଜାଣିନଥିଲେ। ସେଦିନ ମାର୍କେଟ୍‌ରେ ମିତାଲିକୁ ଦେଖିବା ପରେ ତାଙ୍କର ପ୍ରେମିକାଟି ଈର୍ଷାରେ ଜଳି ଯାଇଥିଲା। ମିତାଲିର ରଙ୍ଗ, ରୂପ, ବେଶଭୂଷା ନେଇ ବିଦ୍ରୂପ କରିଥିଲା

ଅଭିଜିତ୍‌ଙ୍କୁ । କଥା କଥାକେ ଅଭିଜିତ୍‌ଙ୍କୁ ଆକ୍ଷେପ କରି କହୁଥିଲା । ତା' ପାଇଁ ଯେ ପତ୍ନୀ ସହିତ ସମ୍ପର୍କ ରଖିନାହାନ୍ତି, ଏକଥା ସେ ଆଉ ବିଶ୍ୱାସ କରୁନଥିଲା । କେଉଁ ଏକ ଦୁର୍ବଳ ମୁହୂର୍ତ୍ତରେ ସ୍ଥାପିତ ହୋଇଯାଇଥିବା ସମ୍ପର୍କ ପ୍ରତି ଏକନିଷ୍ଠ ରହି ଅଭିଜିତଙ୍କୁ ଯେ କେତେ ଦୁଃଖ, ଅପମାନ, ଅସମ୍ମାନର ସମ୍ମୁଖୀନ ହେବାକୁ ପଡୁଥିଲା -ସେଥିପ୍ରତି ତା'ର ଏତେ ଟିକେ ଦରଦ ନଥିଲା । ଧୀରେ ଧୀରେ ଅଭିଜିତ୍‌ଙ୍କ ଆଖିରୁ ମୋହର ପରଦା ଅପସରି ଯାଉଥିଲା । ସେ ଆବିଷ୍କାର କଲେ- ଏକୁଟିଆ ତାଙ୍କ ସହିତ ନୁହେଁ – ଆହୁରି ଅନେକଙ୍କ ସହିତ ବି ମହିଳା ଜଣକ ସେଭଳି ସମ୍ପର୍କ ରଖିଛନ୍ତି । କେବଳ ଦେହବିଳାସିନୀ ନାରୀଟିଏ ସେ । ଯୋଉ ସ୍ତ୍ରୀଲୋକ ମାଆ ହୋଇ ସାରିବା ପରେ ବି ନିଜ ସ୍ୱାମୀ ପ୍ରତି ବିଶ୍ୱସ୍ତା ରହିପାରିନି – ପ୍ରେମିକ ପାଖରେ ସେ ବିଶ୍ୱସ୍ତା ହେବ ବୋଲି ଆଶା କରିବା ନିରର୍ଥକ । ମହିଳାଟିର କୁତ୍ସିତ ସ୍ୱରୂପଟିକୁ ଉପଲବ୍ଧି କରିବା ପରେ ଆତ୍ମଗ୍ଲାନିରେ ବୁଡ଼ିଗଲେ ସେ । ନିଜକୁ ଅପସାରିତ କରିଆଣିଲେ – ସେଇ ମାୟାବିନୀର ମୋହପାଶ କାଟିଦେଇ ଫେରିଆସିଲେ ଘରକୁ । ଅପରାଧବୋଧର  କାଳିମାରେ ଆବୃତ୍ତ ହୋଇ ରହିଥିଲା ତାଙ୍କର ସମଗ୍ର ଅନ୍ତରାତ୍ମା । ଅନୁତପ୍ତ ହୃଦୟ ନେଇ ମିତାଲି ପାଖକୁ ଫେରିଆସିଲେ ମଧ ନିଜକୁ ଖୁବ୍ ଛୋଟ ମଣୁଥିଲେ ସେ ମିତାଲି ପରି ଝିଅଟିର କନକୋଜ୍ଜ୍ୱଳ ବ୍ୟକ୍ତିତ୍ୱ ନିକଟରେ । ଯେଉଁ ପ୍ରକାରେ ସେ ବାରବାର ଅପମାନିତ କରିଛନ୍ତି ତାକୁ- ହୁଏତ ସେ ଆଉ ଗ୍ରହଣ କରିବାକୁ ପ୍ରସ୍ତୁତ ହେବନାହିଁ ଅଭିଜିତ୍‌ଙ୍କୁ । କି ପ୍ରକାର ପ୍ରାୟଶ୍ଚିତ କଲେ ସେ ମିତାଲିର ବିଶ୍ୱାସଭାଜନ ହୋଇପାରିବେ – ଶ୍ରଦ୍ଧାର ଅଧିକାରୀ ହୋଇପାରିବେ, ବୁଝିପାରୁନଥିଲେ ।

ଅତିକ୍ରାନ୍ତ ସନ୍ଧ୍ୟାର ଉଦାସୀନତାକୁ ଭେଦ କରି ଆକାଶରେ ଉଇଁ ଆସିଥିଲା ପୂର୍ଣ୍ଣମୀ ଜହ୍ନ । ମୁଠା ମୁଠା ଖୁସି ଯେମିତି ବିଞ୍ଛି ହୋଇ ପଡୁଥିଲା ଆକାଶର ଅଗଣାରେ । ଏଇ ଜହ୍ନ ପରି ତାଙ୍କ ମିତାଲି । ଅକାତର ଭାବରେ ଆନନ୍ଦ ବାଣ୍ଟି ଚାଲିଥାଏ ତା' ସଂସ୍ପର୍ଶରେ ଆସୁଥିବା ପ୍ରତ୍ୟେକଙ୍କୁ । ଆଜି କିନ୍ତୁ ଦୁଃଖର କଳାମେଘ ଅନ୍ତରାଳରେ ନିସ୍ତେଜ ହୋଇ ପଡ଼ି ରହିଛି ସେ । ଖୁବ୍ ସଂକୋଚର ସହିତ ମିତାଲିର କାନ୍ଧରେ ହାତ ରଖିଲେ ଅଭିଜିତ୍ । ଧୀରେ ଆଖି ଖୋଲିଲା ସେ । କେତେ ଲୁହ ସଞ୍ଚିତ ଥିଲା ତା' ଆଖିପତା ତଳେ, କେଜାଣି – ସେ ଲୁହର ଧାର ଯେମିତି ବନ୍ଦ ହେଉନଥିଲା । ଅଭିଜିତ୍ ମୁଣ୍ଡ ହଲେଇ ମନାକଲେ ତାକୁ କାନ୍ଦିବା ପାଇଁ । କିଛି ସମୟ ପରେ ବ୍ୟାଗ୍‌ରୁ ରୁମାଲ୍ କାଢ଼ି ଲୁହପୋଛିଲା ମିତାଲି । ବାହାରକୁ ଚାହିଁଲା । ଆକାଶରେ ପୂର୍ଣ୍ଣମୀ ଜହ୍ନ- ଚାରିଆଡ଼େ ଜ୍ୟୋସ୍ନାର ଜୁଆର । ତାରାର ପଟୁଆର ନେଇ ଆଲୋକ ଓ ଆନନ୍ଦର ଅଭିଯାନରେ ଯେମିତି ବାହାରିଛି ଏ ଜହ୍ନ । ମିତାଲିର ହୃଦୟରେ କେବଳ ଅନ୍ଧାରର ରାଜତ୍ୱ । କେତେ ଏକାକୀ ସେ ଏଇ ବିରାଟ ପୃଥିବୀରେ । ବାପା, ମାଆ, ଭାଇ, ଭଉଣୀ କେହି ନାହାନ୍ତି ତା'ର । ଅସ୍ପଷ୍ଟ ସମ୍ପର୍କର

ରେଖାଟିକୁ ଗୋଟିଏ ଦସ୍ତଖତ୍‌ରେ ଏଇମାତ୍ର ପୋଛିଦେଇ ଆସିଛି ସେ। ବାପାଙ୍କ ଉପରେ ପ୍ରଚଣ୍ଡ ଅଭିମାନ ହେଉଥିଲା ତା'ର। ତାଙ୍କ ଭିତରେ ଯେ ମିତାଲିର ଭବିଷ୍ୟତ ନେଇ ବ୍ୟାକୁଳତାଟିଏ ରହିଥିଲା - ଏକଥା ହେଲେ ସେ ଆଗରୁ ଜାଣିଥାଆନ୍ତା ! ବାପା, ତୁମର ଘରବାଡ଼ି, ସମ୍ପତ୍ତି, ଜମି- କିଛି ମୁଁ ଚାହିଁ ନଥିଲି। କେବଳ ତୁମର ସ୍ନେହ ଟିକକ ହିଁ ଚାହୁଁଥିଲି। ସେଇତକ ପାଇଥିଲେ ଆଜି ଏମିତି ସର୍ବହରା ଭଳି ଲାଗୁନଥାନ୍ତା ମୋତେ। କାହିଁକି ଏ କଥା କଲ ବାପା ? କାହିଁକି ?

- "ମିତା" ଆସ୍ତେ ଡାକିଲେ ଅଭିଜିତ୍। ଲୁହଭରା ଆଖି ଫେରାଇଲା ମିତାଲି।

- "ଆଉ କାନ୍ଦନି।" ଅଭିଜିତ୍ କହିଲେ।

- " ହସିବାକୁ ତ ମନାକଲ- କାନ୍ଦିବାକୁ ବି ମନା କରିବ ? ମୁଁ କାନ୍ଦିଲେ ତ ତୁମର ଖୁସି ହେବା କଥା।"

- "ନା - ମୋତେ ଭଲ ଲାଗୁନି ତୁମେ କାନ୍ଦିଲେ।" ଅଭିଜିତ୍ କହିଲେ।

କ୍ରୋଧ ଆଉ ଅଭିମାନରେ ଯେମିତି ଫାଟି ପଡ଼ିଲା ମିତାଲି। ଜ୍ୱଳନ୍ତ ଦୃଷ୍ଟିରେ ଅଭିଜିତ୍‌ଙ୍କୁ ଚାହିଁ କହିଲା, "କ'ଣ ଭାବ ତୁମେ ମୋତେ ? ମୁଁ କ'ଣ ଗୋଟେ କଣ୍ଢେଇ ? ତୁମେ ଚାହିଁଲେ ମୁଁ ହସିବି - ତୁମେ ଚାହିଁଲେ ମୁଁ କାନ୍ଦିବି ? ତୁମେ ଯେମିତି ଇଚ୍ଛା ସେମିତି ମୋ ସହିତ ବ୍ୟବହାର କରୁଥିବ- ମୋର କିଛି ପ୍ରତିକ୍ରିୟା ହେବନାହିଁ ? ଏମିତି ଗୋଟାଏ ଅବାଞ୍ଛିତ ଜୀବନ ମୁଁ ଚାହୁଁନି। ମୋର ମରିଯିବା ଦରକାର।" ମିତାଲି କୋହ ଉଠାଇ କାନ୍ଦୁଥିଲା।

- "ପ୍ଲିଜ୍ ମିତୁ - ଏମିତି ହୁଅନି, ଡ୍ରାଇଭର୍ ଶୁଣୁଛି ଯେ।" ଅଭିଜିତ୍ ଏଥର ମିତାଲିକୁ ଜୋର୍‌କରି ଆଉଜାଇ ଆଣିଲେ ପାଖକୁ। ଲୁହପୋଛି ଧୀରେ ଧୀରେ ଥାପୁଡ଼ାଇ ଦେଉଥିଲେ ତା କାନ୍ଧକୁ। ଅବିନ୍ୟସ୍ତ କେଶ ରାଶିକୁ ଯତ୍ନରେ ସଜାଡ଼ି ଦେଇ ସାଉଁଳାଇ ଦେଲେ ମୁଣ୍ଡ। ଅନେକ ସମୟ କାନ୍ଦିବା ପରେ ଅଭିଜିତ୍‌ଙ୍କ କାନ୍ଧରେ ମୁଣ୍ଡ ରଖି ଶୋଇ ଯାଇଥିଲା ମିତାଲି। ତା'ର ଲୁହବତୁରା ନିଷ୍ପାପ ସୁନ୍ଦର ମୁହଁଟିକୁ ଚାହିଁ ଏକ ବେଦନାମଧୁର ପରିପୂର୍ଣ୍ଣତାରେ ଭରିଯାଇଥିଲା ଅଭିଜିତ୍‌ଙ୍କର ଅନ୍ତର। ଆକାଶରେ ବାଦଲର ପତଳା ଓଢ଼ଣି ତଳେ ଜହ୍ନର ଲୁଚକାଳି ଖେଳ ଚାଲିଥିଲା। ତାକୁଇ ଦେଖୁ ଦେଖୁ ଅନ୍ୟମନସ୍କ ହୋଇ ପଡ଼ିଲେ ଅଭିଜିତ୍।

# ନିଜ ପରି କେହି ଜଣେ

ସମ୍ବାଦପତ୍ରରେ ପ୍ରକାଶ ପାଇଥିବା ସେହି ଖବର ଦୁଇଟି ଅନ୍ୟମାନଙ୍କ ପାଇଁ ସାମୟିକ ଭାବରେ ଆଲୋଡ଼ନ ସୃଷ୍ଟିକାରୀ ହୋଇଥିଲେ ମଧ୍ୟ ଅନୁରୂପାଙ୍କର ସମଗ୍ର ଅସ୍ତିତ୍ୱକୁ ଦୋହଲାଇ ଦେଇଥିଲା। ଯୌତୁକ ଦାବି କରି ବାହାବେଦୀରୁ ବର ଉଠିଯିବା, କନ୍ୟାପକ୍ଷର ମୁରବିମାନେ ବର ତଥା ବରକର୍ତ୍ତାଙ୍କର ଗୋଡ଼ହାତ ଧରିବା ତ ଆମ ସମାଜରେ ନିତିଦିନିଆ ଘଟଣା। ଯୌତୁକ ଦାବି କାରିବା ଯଦିଓ ଆଇନ୍ ଦୃଷ୍ଟିରୁ ଦଣ୍ଡନୀୟ ଅପରାଧ- ତେବେ ବି ପ୍ରକାଶ୍ୟରେ ସେକଥା ବାରମ୍ବାର ଘଟୁଛି ଏବଂ ସମସ୍ତେ ଦେଖି ମଧ୍ୟ ନ ଦେଖିଲା ପରି ରହୁଛନ୍ତି। ବରପକ୍ଷର ଯୌତୁକ ଦାବିକୁ ପ୍ରତିବାଦ କରି ବେଦୀ ଉପରୁ କନ୍ୟା ଉଠିଯିବା କଥା ମଧ୍ୟ କୋଉଠି କୋଉଠି ଘଟିବାର ଶୁଣାଯାଏ। କିନ୍ତୁ ବିବାହର ସମସ୍ତ ବିଧିବିଧାନ ସରିଯିବା ପରେ ବି ବରପକ୍ଷର ଅଯୌକ୍ତିକ ଦାବିର ପ୍ରତିବାଦ କରି କନ୍ୟା ଶାଶୂଘରକୁ ଯିବାକୁ ମନା କରିଦେବା, ଏମିତି କି ବିବାହକୁ ଅସ୍ୱୀକାର କରିବା, ପୁଣି ସେ ପର୍ଯ୍ୟନ୍ତ ବରପକ୍ଷ ନେଇ ସାରିଥିବା ସମସ୍ତ ଟଙ୍କା ତଥା ଜିନିଷପତ୍ର ଫେରସ୍ତ ଦେବା ପାଇଁ ଦୃଢ଼ ଭାବରେ ଦାବି କରିବା, ଏ କଥା ସ୍ୱପ୍ନ ପରି ଲାଗୁଥିଲା ଅନୁରୂପାଙ୍କୁ। ଇଚ୍ଛାରେ ହେଉ ବା ଅନିଚ୍ଛାରେ ହେଉ କିମ୍ବା ଜୋର୍ ଜବରଦସ୍ତିରେ ହେଉ- କୁମାରୀ ଝିଅଟିର ମୁଣ୍ଡରେ କେହି ସିନ୍ଦୂର ଲଗାଇ ଦେଲେ ତାକୁ ସ୍ୱାମୀ ରୂପରେ ସ୍ୱୀକାର କରିବାକୁ ଝିଅଟି ବାଧ୍ୟ ହେଉଥିଲା। ତାକୁ ନିଜର ଇହକାଳ ପରକାଳର ପ୍ରଭୁ ଭାବରେ ମାନି ନେଉଥିଲା। ଏବେ ସମୟ ବଦଳିଛି। ଝିଅକୁ ବାହା କରିଦେବା ପରେ 'ଦେଲି ନାରୀ, ହେଲି ପାରି' ବୋଲି କହିବାକୁ କେହି କେହି ଚାହୁଁନାହାନ୍ତି। ଝିଅର ନିରାପତ୍ତା ପାଇଁ, ସୁରକ୍ଷିତ ଭବିଷ୍ୟତ ପାଇଁ ଆବଶ୍ୟକ ହେଲେ ପ୍ରଚଳିତ ବିଧିବ୍ୟବସ୍ଥା ଓ ପରମ୍ପରାର ବିରୁଦ୍ଧାଚରଣ କରିବାକୁ ଝିଅର ପରିବାର ପଶ୍ଚାତ୍‌ପଦ ହେଉନାହାନ୍ତି। ଅତ୍ୟନ୍ତ ସାହସିକତାର ସହିତ ଝିଅକୁ ସମ୍ମାନର ସହ ସମାଜରେ ବଞ୍ଚିବାର ଅଧିକାର ଦେଉଛନ୍ତି। ଯଦିଓ ଏଭଳି ଘଟଣା ଖୁବ୍ କମ୍ ଘଟୁଛି- ଲୋକମାନେ ଏ କଥା ଦେଖି ଏବେ ନାକ ଟେକୁନାହାନ୍ତି, ବରଂ ପ୍ରଶଂସା କରୁଛନ୍ତି।

ବହୁରାଷ୍ଟ୍ରୀୟ କମ୍ପାନୀର ପଦସ୍ଥ ଅଫିସର ବରପାତ୍ରଟିର କ'ଣ ବା ଅଭାବ ଥିଲା ? କନ୍ୟାପିତାଙ୍କୁ ସର୍ବସ୍ୱାନ୍ତ ନ କରି ମଧ୍ୟ ସେ ବେଶ୍ ସୁଖସ୍ୱାଚ୍ଛନ୍ଦ୍ୟ ତଥା ଐଶ୍ୱର୍ଯ୍ୟର ଅଧିକାରୀ ହୋଇପାରିଥାଆନ୍ତା ! ଅତ୍ୟଧିକ ଲୋଭ କରି କ'ଣ ଅବା ପାଇଲା ସେ ? ନବବଧୂକୁ ନେଇ ସସମ୍ମାନ ଘରକୁ ବାହୁଡ଼ିଥାଆନ୍ତା । ଭୋଜିଭାତ, ବନ୍ଧୁମିଳନ, ହସଖୁସିରେ ଉଚ୍ଛୁଳି ପଡ଼ିଥାଆନ୍ତା ତାଙ୍କ ଘର । କିନ୍ତୁ ବାହା ହେବା ପରେ ବି ତାକୁ ଶିଶୁପାଳ ହେବାକୁ ପଡ଼ିଲା । ଜୋତାମାଳ ପିନ୍ଧି ପୋଲିସ୍ ଜିପ୍‌ରେ ବସି ବାପା, ମାମୁଙ୍କ ସହିତ ହାଜତକୁ ଯିବାକୁ ପଡ଼ିଲା ତାକୁ । ଏ ଘଟଣା ପୁଣି ଲକ୍ଷ ଲକ୍ଷ ଲୋକ ଟେଲିଭିଜନ୍‌ରୁ ଦେଖିଲେ, ସମ୍ବାଦପତ୍ରରୁ ପଢ଼ିଲେ । କି ଲଜ୍ଜା ! ଏ ଘଟଣା ପରେ ସମାଜରେ ମୁଣ୍ଡ ଉଠାଇ ସ୍ୱାଭିମାନର ସହିତ ସେମାନେ ଚଳିପାରିବେ ତ ! କେଜାଣି- ଏମିତି ଲୋକମାନଙ୍କର ଲଜ୍ଜା ସରମ କି ସ୍ୱାଭିମାନ ବୋଲି କିଛି ଥାଏ କି ନାହିଁ !

ଦୀର୍ଘ ସଇଁତିରିଶ ବର୍ଷ କାଳ ଛାତି ଭିତରର ଯେଉଁ ଜ୍ୱାଳା ଅନୁରୂପାଙ୍କୁ ଜର୍ଜରିତ କରୁଥିଲା, ସେଥିରେ କିଏ ଯେମିତି ଶୀତଳ ପ୍ରଲେପ ବୋଳି ଦେଇଥିଲା । ସିଏ ସିନା ପାରିନଥିଲେ- ଏ ସମାଜର କୌଣସି ନା କୌଣସି ସ୍ଥାନରେ କେହି ଜଣେ ସେକଥା କରି ଦେଖାଇଛି । ବିବାହ ନାମକ ଯଜ୍ଞବେଦୀରେ ନିଜକୁ ଆହୁତି ଦେଇନାହିଁ ସେହି ସାହସିନୀ, ସ୍ୱାଭିମାନୀ ଝିଅଟି । ତା'ପରିବାର ମଧ୍ୟ ତାକୁ ସମର୍ଥନ କରିଛନ୍ତି ।

ଅନୁରୂପା ଭୀରୁ - ଏ କଥା ସେ ସ୍ୱୀକାର କରିବେ । ନିଜର ଭୀରୁତା ପାଇଁ, କୁଣ୍ଠିତ ସ୍ୱଭାବ ପାଇଁ ଅନେକ କଷ୍ଟ ସେ ପାଇଛନ୍ତି, ଅନେକ ଅପମାନ, ନିର୍ଯାତନାର ଶିକାର ହୋଇଛନ୍ତି । ମନ ବିଦ୍ରୋହ କରିଛି, ପ୍ରାଣ ଛଟପଟ ହୋଇଛି, ଯନ୍ତ୍ରଣାରେ ଜର୍ଜରିତ ହୋଇଉଠିଛି ଶରୀର । କିନ୍ତୁ ପ୍ରତିବାଦର କ୍ଷୀଣ ସ୍ୱରଟିଏ ମଧ୍ୟ ନିର୍ଗତ ହୋଇନାହିଁ ତାଙ୍କ କଣ୍ଠରୁ । କେବେ ପଶୁଟିଏ ପରି ତ କେବେ ଜଡ଼ ପଦାର୍ଥଟିଏ ପରି ଆଚରଣ କରାଯାଇଛି ତାଙ୍କ ସହିତ । ସେ ନୀରବରେ ସହିଛନ୍ତି । ନ ସହି ତାଙ୍କର ଉପାୟ ବା କ'ଣ ଥିଲା ? ଏତେ ବର୍ଷ ବିତିଗଲା ପରେ ବି ସିଏ ସେହି ସଇଁତିରିଶ ବର୍ଷ ତଳର ଅସହାୟା କିଶୋରୀ ବଧୂଟିଏ ହୋଇ ରହିଯାଇଛନ୍ତି । ଚାଳିଶୋତ୍ତୀର୍ଣ୍ଣ ବୟସରେ ମଧ୍ୟ ସେ କଥା କହନ୍ତି ଖୁବ୍ ଜଗି ରଖି । ପାଞ୍ଚୋଟି ସନ୍ତାନକୁ ଜନ୍ମ ଦେଇଛନ୍ତି, ସେମାନଙ୍କୁ ଲାଳନପାଳନ କରି ବଡ଼ କରିଛନ୍ତି । ସମସ୍ତଙ୍କ ପାଇଁ ରାନ୍ଧିଛନ୍ତି, ବାଢ଼ିଛନ୍ତି । ଶାଶୂ-ଶ୍ୱଶୁରଙ୍କର ସେବା କରିଛନ୍ତି, ପରିବାରର ସମସ୍ତଙ୍କର ଯତ୍ନ କରିଛନ୍ତି । ସେତିକି କେବଳ ତାଙ୍କର ପରିଚୟ । ସମସ୍ତଙ୍କର ସେବାଦାସୀ, ସ୍ୱାମୀଙ୍କର ସାମୟିକ ଶଯ୍ୟାସଙ୍ଗିନୀ ତଥା ସନ୍ତାନ ଉତ୍ପାଦନକାରୀ ଯନ୍ତ୍ର । ଅନୁରୂପା ଜାଣନ୍ତି- ତାଙ୍କର ସ୍ୱାମୀଙ୍କର ଅନେକ ନାରୀ ବନ୍ଧୁ ଅଛନ୍ତି, ଯେଉଁମାନଙ୍କ ସହିତ ତାଙ୍କର ସମ୍ପର୍କ ବନ୍ଧୁତାର ସୀମାରେଖା ଡେଇଁ ଅନେକଦୂର ଯିବାରେ କୌଣସି

ପ୍ରତିବନ୍ଧକ ବା ସଙ୍କୋଚ ନାହିଁ। ଏ କଥା ଘରେ ବାହାରେ ଅନେକେ ଜାଣନ୍ତି। ଜାଣିବା ପରେ ବି ତାଙ୍କର ମାନସମ୍ମାନ, ପ୍ରତିଷ୍ଠା କୋଉଥିରେ ବି କିଛି ଊଣା ହୋଇନାହିଁ। ଅତ୍ୟନ୍ତ ଦମ୍ଭର ସହିତ ସେ ସମାଜରେ ଆତଯାତ ହୁଅନ୍ତି; କାହିଁକି ନା ସେ ସୁଦର୍ଶନ ପୁରୁଷ, ସେ ସଦ୍‌ବଂଶଜ। ସେ ସମାଜରେ ସୁପ୍ରତିଷ୍ଠିତ। କିନ୍ତୁ ଅନୁରୂପା ଭଲ ଭାବରେ ଚିହ୍ନିଛନ୍ତି ତାଙ୍କ ସ୍ୱାମୀ ଅନିରୁଦ୍ଧଙ୍କର କୁତ୍ସିତ ରୂପକୁ, ତାଙ୍କ ଚରିତ୍ରର ସମସ୍ତ ଅନ୍ଧାରି ଦିଗକୁ, ହିଂସା, ଲୋଭ ଆଉ ସ୍ୱାର୍ଥପରତାରେ ଭରପୂର ସେଇ ବ୍ୟକ୍ତିତ୍ୱଟିକୁ - ଯିଏ ନିଜ ଛଡ଼ା ଆଉ କାହାରି ଅସ୍ତିତ୍ୱକୁ ଆଦୌ ଗୁରୁତ୍ୱ ଦିଅନ୍ତି ନାହିଁ। ଏହି ପ୍ରକାର ଜଣେ ମଣିଷକୁ କେମିତି ଅନୁରୂପାଙ୍କ ପାଇଁ ସର୍ବଶ୍ରେଷ୍ଠ ପାତ୍ର ବୋଲି ଭାବି ବସିଲେ ତାଙ୍କ ବାପା, ସିଏ ବୁଝିପାରନ୍ତି ନାହିଁ। ପୁଣି ଅନୁରୂପାଙ୍କ ପରି ଏତେ ସାଧାରଣ ଝିଅକୁ ଅନିରୁଦ୍ଧ ବି କେମିତି ବିବାହ କରିବାକୁ ରାଜି ହୋଇଥିଲେ କେଜାଣି! କୌଣସି ଦିଗରୁ ତ ସେ ଅନିରୁଦ୍ଧଙ୍କ ପାଇଁ ଉପଯୁକ୍ତ ନଥିଲେ।

ନିଜକୁ କେବେ ସୁନ୍ଦରୀ ବୋଲି ଭାବିନଥିଲେ ଅନୁରୂପା। ରଙ୍ଗରୂପ ଅନୁଯାୟୀ ଖୁବ୍ ସାଧାରଣ ଝିଅଟିଏ ଥିଲେ ସେ। ସେଥିପାଇଁ ତାଙ୍କ ମନରେ ଆଦୌ ଅବସୋସ୍ ନଥିଲା। ସେ ତାଙ୍କ ପରିବାରରେ ସମସ୍ତଙ୍କର ଗେହ୍ଲାଝିଅ ଥିଲେ। ଭଲ ପାଠ ପଢୁଥିଲେ, ଶ୍ରେଣୀରେ ପୋଜିସନ୍ ରଖୁଥିଲେ, ସୁନ୍ଦର ଚିତ୍ର ଆଙ୍କୁଥିଲେ, ଝୋଟି ଚିତା ପକାଉଥିଲେ,ଗୀତ ଗାଉଥିଲେ। ରୋଷେଇବାସରେ ମଧ୍ୟ ଖୁବ୍ ଭଲ ହାତ ଥିଲା ତାଙ୍କର। ଛୁଟିଦିନରେ ନୂଆ ନୂଆ ରାନ୍ଧଣା କରି ଘର ଲୋକଙ୍କୁ ଚଖାଉଥିଲେ, ସାହିପଡ଼ିଶାରେ ବାଣ୍ଟୁଥିଲେ। ସମସ୍ତେ କହୁଥିଲେ, "ଭାଗ୍ୟରେ ଥିଲେ ଏମିତି ଝିଅକୁ କିଏ ବୋହୂ କରିନେବ।" ବାହାଘର କଥା ସ୍ୱପ୍ନରେ ବି ଭାବୁନଥିଲେ ଅନୁରୂପା। ବରଂ ତାଙ୍କର ସ୍ୱପ୍ନ ଥିଲା ଡାକ୍ତରି ପାଠ ପଢ଼ିବେ, ଡାକ୍ତରାଣୀ ହୋଇ ଲୋକମାନଙ୍କର ସେବା କରିବେ। ପାଠ ତାଙ୍କ ପାଇଁ କିଛି କଷ୍ଟ ନଥିଲା। ସୁଯୋଗ ପାଇଥିଲେ ସେ ହୁଏତ ଡାକ୍ତରାଣୀ ହୋଇପାରିଥାନ୍ତେ। କିନ୍ତୁ ସେ ସୁଯୋଗ ତାଙ୍କୁ ମିଳିନଥିଲା। ବାପା ତାଙ୍କର କୌଣସି ବନ୍ଧୁଙ୍କର ପ୍ରରୋଚନାରେ ଅନୁରୂପାଙ୍କର ବାହାଘର ପକ୍କା କରିଦେଲେ। ରାଜକୁମାର ପରି ସୁନ୍ଦର ବର। ସହରରେ ବିରାଟ କୋଠା, ମୋଟରଗାଡ଼ି, ବଡ଼ଲୋକ ଶ୍ୱଶୁର। ଆଉ କ'ଣ ଦରକାର? ଝିଅ ତ ରାଜରାଣୀ ହୋଇ ରହିବ। ଅନୁରୂପାଙ୍କର ପାଠ ପଢ଼ିବାର ଇଚ୍ଛାକୁ ସମସ୍ତେ ଫୁତ୍କାରରେ ଉଡ଼େଇ ଦେଇଥିଲେ। ଧୁତ୍ - ଝିଅପିଲାଟା, ପାଠପଢ଼ି କ'ଣ କରିବ? ତା' ରୋଜଗାରକୁ କିଏ ଚାହିଁ ବସିଛି? ଏତେ ବଢ଼ିଆ ପ୍ରସ୍ତାବକୁ ମନା କରିଦେଲେ ପଛରେ ପସ୍ତେଇବ।

ପ୍ରବଳ ଅନିଚ୍ଛା ଓ ପ୍ରତିବାଦ ସତ୍ତ୍ୱେ ବାହା ହେବାକୁ ପଡ଼ିଥିଲା ଅନୁରୂପାଙ୍କୁ।

ବାହାଘର ପୂର୍ବରୁ ତାଙ୍କୁ ଶ୍ୱଶୁର ଘରର ଲୋକମାନେ ଅନେକଥର ଦେଖିବାକୁ ଆସିଥିଲେ ମଧ୍ୟ ଅନିରୁଦ୍ଧ ଆଦୌ ଦେଖିନଥିଲେ। ଅନୁରୂପାଙ୍କ ଫଟୋ ଦେଖି ସେ କୁଆଡ଼େ ରାଜି ହୋଇଯାଇଥିଲେ। ଖୁବ୍ ଫଟୋଜେନିକ୍ ଚେହେରା ଅନୁରୂପାଙ୍କର। ବରପକ୍ଷ ବେଶ୍ ଥିଲାବାଲା ହୋଇଥିଲେ ମଧ୍ୟ ଯୌତୁକର ଲମ୍ବାଫର୍ଦ୍ଦ ଆସିଥିଲା। ଆଦରିଣୀ କନ୍ୟାର ଭବିଷ୍ୟତର ନିଶ୍ଚିନ୍ତ ସୁଖୀ ଜୀବନର କଥା ଚିନ୍ତା କରି ବାପା ସବୁଥିରେ ରାଜି ହୋଇ ଯାଇଥିଲେ। ଧାରକରଜ କରି ଯୌତୁକର ଲମ୍ବା ତାଲିକା ପୂରଣକରିବା ସହିତ ନିଜର ମନମୁତାବକ ଆହୁରି କେତେ ଜିନିଷ ଦେଇଥିଲେ। ନିର୍ବନ୍ଧ ସମୟରେ ନଗଦ ଟଙ୍କା କିଛି ଦିଆଯାଇଥିଲା। ବଳକା ଟଙ୍କା ବାହାଘରବେଳେ ବେଦୀ ଉପରେ ଦିଆହେବ ବୋଲି କଥା ଛିଣ୍ଡିଥିଲା। ଅନୁରୂପା ସେ ସବୁ କଥା ଜାଣିନଥିଲେ। ଜାଣିଥିଲେ ସେ ହୁଏତ ବାହା ହେବାକୁ ରାଜି ହୋଇନଥାନ୍ତେ। ଯେତେବେଳେ ଜାଣିଲେ- ସେତେବେଳେ ସେ ପ୍ରଚଣ୍ଡ ଦୁଃଖ, ଲଜ୍ଜା ଆଉ ବିସ୍ମୟରେ ହତବାକ୍ ହୋଇଗଲେ। ହାତଗଣ୍ଠି ପଡ଼ିବା ପୂର୍ବରୁ ନଗଦ ଟଙ୍କା କଥା ଉଠିଲା। ବରକର୍ତ୍ତାଙ୍କ ହାତରେ ବାପା ଟଙ୍କା ଦେବା ଏବଂ ସେ ନିଠେଇ ନିଠେଇ ନୋଟ୍ ବିଡ଼ାର ସବୁତକ ନୋଟ୍ ଗୋଟି ଗୋଟି ଗଣିବାର ଦୃଶ୍ୟ ଓଢ଼ଣା ଭିତରୁ ଦେଖି ପାରିଥିଲେ ଅନୁରୂପା । ତାଙ୍କର ବଡ଼ଲୋକ ଶ୍ୱଶୁରଙ୍କର ଏଭଳି ହୀନ ମନୋବୃତ୍ତି ତାଙ୍କୁ କ୍ଷୁବ୍ଧ କରିଥିଲା। ଓଢ଼ଣା ଭିତରୁ ତାଙ୍କ ଜୀବନର ସର୍ବେସର୍ବା ହେବାକୁ ଯାଉଥିବା ମଣିଷଟିକୁ ମଧ୍ୟ ଦେଖିବାକୁ ଚେଷ୍ଟା କରିଥିଲେ। ବେଶ୍ ସୁଦର୍ଶନ ଏବଂ ସ୍ୱାସ୍ଥ୍ୟବାନ୍ ବ୍ୟକ୍ତି ଜଣକ ନିର୍ବିକାର ଭାବରେ ବସି ରହିଥିଲେ। ଏଥିରେ ତାଙ୍କର ସମ୍ମତି ରହିଥିଲା ନିଶ୍ଚୟ। କିନ୍ତୁ ହାତଗଣ୍ଠି ପଡ଼ିଲାବେଳକୁ ସେଇ ନିର୍ବିକାର ମଣିଷଜଣକ ହଠାତ୍ କହି ଉଠିଲେ, "ଟିକେ ରୁହ, କନ୍ୟା ମୁହଁରୁ ଓଢ଼ଣା ବାହାର କର। ମୁଁ ଦେଖିଲା ପରେ ଯାଇ ହାତଗଣ୍ଠି ପଡ଼ିବ।"

କି ନିର୍ଲଜ୍ଜ କଥା !! ଏକଥା କୋଉଠି ହୁଏନା କ'ଣ ? କନ୍ୟାପକ୍ଷ ଲୋକଙ୍କ ମଧ୍ୟରେ ଚହଳ ପଡ଼ିଗଲା। ଅନୁରୂପାଙ୍କର କାନମୁଣ୍ଡା ଅପମାନରେ ଝାଇଁ ଝାଇଁ ହୋଇଗଲା। ସେ ଉଠିପଡ଼ିଥିଲେ। ତାଙ୍କ ପାଖରେ ଲାଗିକି ବସିଥିବା ବାରିକାଣୀ ତାଙ୍କ କାନ୍ଧରେ ଚାପ ଦେଇ ବସାଇଲା ଏବଂ ଚୁପ୍‌କିନା କାନରେ କହିଲା, "ଚୁପ୍ ହୋଇ ବସ।"

– "ଯୋଉ ଝିଅକୁ ମୁଁ ପସନ୍ଦ କରିଥିଲି ଇଏ ବୋଧହୁଏ ସେଇ ଝିଅ ନୁହେଁ।" ଅନିରୁଦ୍ଧ କହିଥିଲେ।

– "ଛି ଛି – ଇଏ ପୁଣି କି କଥା! ବରପକ୍ଷର ଲୋକ ଥରକୁ ଥର ଆସି ଦେଖିଛନ୍ତି – ପସନ୍ଦ କରି ମୁଦି ପିନ୍ଧାଇଛନ୍ତି – କଥାବାର୍ତ୍ତା କରିଛନ୍ତି। କେହି କିଛି କହୁନାହାନ୍ତି କାହିଁକି ?"

- "ନାଇଁ ଆଜ୍ଞା - ଇଏ ସେଇ ଝିଅ। ତିନିପୁଅରେ ତ ଆମର ସେଇ ଗୋଟିଏ ବୋଲି ଝିଅ। ଆଉ ଗୋଟେ ଝିଅ ଆମେ କୋଉଠୁ ଆଣିବୁ ? ବାହାଘର ପାଇଁ ଝିଅ ଉପାସରେ ଅଛି ତ - ଝାଉଁଳି ପଡ଼ିଛି।" କନ୍ୟାପକ୍ଷରୁ କେହି କହିଲେ।

- "ଆଣିବେନି କାହିଁକି ? ନିଜର ଅସୁନ୍ଦରୀ କାଳି ଝିଅକୁ ଲୁଚାଇ ଆଉ କାହାର ଗୋରୀ ସୁନ୍ଦରୀ ଝିଅକୁ ଦେଖାଇ ଦେଇଛ। ଏ ଝିଅର ହାତରୁ ଜଣାପଡୁଛି - ଇଏ ତ୍ରିପଣ୍ଡ କାଳି।" ବରପକ୍ଷର କେହି କହିଲେ।

ଅନୁରୂପା କାଳି ଝିଅ।। ଏ କଥା ସେ ଜୀବନରେ ପ୍ରଥମଥର ପାଇଁ ଶୁଣିଲେ। ସେ ଗୋରୀମାନଙ୍କ ମଧ୍ୟରେ ଗଣାଯିବେନି ସତ - ମାତ୍ର ତ୍ରିପଣ୍ଡ କାଳି।।

ମୁଣ୍ଡ ଉପରର ଓଢ଼ଣୀଟା କିଏ ଖସାଇବାକୁ ଚେଷ୍ଟା କରୁଛି ଜାଣି ଅନୁରୂପା ହାତରେ ଭିଡ଼ି ଧରିଲେ ଓଢ଼ଣୀଟି। ପରମୂହୂର୍ତ୍ତରେ କିନ୍ତୁ ଜୋର୍ କରି ତାଙ୍କ ମୁଣ୍ଡରୁ ଓଢ଼ଣୀଟି ଖସାଇ ଦିଆଗଲା। ପ୍ରଚଣ୍ଡ ଅପମାନ ଆଉ ଲଜ୍ଜାରେ ସଙ୍କୁଚିତ ହୋଇଗଲେ ସେ। ଇଚ୍ଛା ହେଉଥିଲା ସେଇଠୁ ଉଠି ଆସିବାକୁ ।ବରକୁ, ବରକର୍ତ୍ତାଙ୍କୁ ଯାହା ନାହିଁ ତାହା ଗାଳି ଦେବାକୁ ପ୍ରବଳ ଇଚ୍ଛା ହେଉଥିଲା। ନାଟକ ଭଳି, ସିନେମା ଭଳି ଲାଗୁଥିଲା ଏ ଘଟଣା। ତାଙ୍କ ଜୀବନରେ ଯେ ଏଭଳି ଚରମ ଦୃଶ୍ୟର ଅବତାରଣା ହେବ- ଏ କଥା ସେ କଳ୍ପନା କରିନଥିଲେ।

ବାପା କାକୁତି ମିନତି କରୁଥିଲେ, "ଆପଣଙ୍କୁ ହାତ ଯୋଡୁଛି- ଗୋଡ଼ ଧରୁଛି। ଝିଅ ଆମର ମଙ୍ଗୁଳା ସରିଛି- ବାଡୁଅପାଣି ଗାଧୋଇ ସାରିଛି- ଏମିତି କଥା କୁହନ୍ତୁନି। ଆପଣ ଆମକୁ ଯାହା କହିବେ ପ୍ରାଣପାତ କରି ତାକୁ ପୂରଣ କରିବୁ। ବାହାଘରଟା ହେବାକୁ ଦିଅନ୍ତୁ।"

ଆମ ସମାଜରେ କନ୍ୟାପିତା କି ଅସହାୟ ସତେ।

ଅନୁରୂପା ବେଦୀରୁ ଉଠିପଡ଼ିଲେ। ନା- ଏମିତି ବାହାଘର ତାଙ୍କର ଦରକାର ନାହିଁ। ବାପା କାହିଁକି ଏମାନଙ୍କ ଗୋଡ଼ହାତ ଧରୁଛନ୍ତି ? ସିଏ କ'ଣ ବୁଝିପାରୁନାହାନ୍ତି ଏମିତି ଲୋକ ହାତରେ ଝିଅକୁ ଟେକିଦେଲେ ଝିଅ କେବେ ବି ସୁଖୀ ହେବନାହିଁ। ଝିଅ ପ୍ରତି ତାଙ୍କର ଇଏ କି ଭଲପାଇବା। ନା- ଝିଅର ଜୀବନ ଅପେକ୍ଷା ସାମାଜିକ ସମ୍ମାନ ବାପାଙ୍କ ପାଇଁ ବଡ଼ ହୋଇଯାଇଛି। ମଙ୍ଗୁଳା କନ୍ୟା ଘରେ ରହିଲେ କେମିତି ସେ ମୁହଁ ଦେଖେଇବେ ଲୋକଙ୍କ ପାଖରେ।

"କାନ୍ଦନା ମା'- ସବୁ ଠିକ୍ ହୋଇଯିବ। ମୁଁ ସର୍ବସ୍ୱାନ୍ତ ହୋଇଯାଏ- କିଛି ଚିନ୍ତା ନାହିଁ। ଏ ବାହାଘର ହେବ- ନିଶ୍ଚୟ ହେବ।" ବାପା ତାଙ୍କ କାନ୍ଧ ଧରି ବେଦୀରେ ପୁଣି ବସାଇଦେଲେ।

ବାହାଘର ହେଲା । ଝିଅର ତଥାକଥିତ କଳା ରଙ୍ଗ ପାଇଁ ବାପାଙ୍କୁ ଆହୁରି ଲକ୍ଷେ ଟଙ୍କା କ୍ଷତିପୂରଣ ଦେବାକୁ ହେଲା । ପୁଣି ବର୍ଷସାରା ବିଭିନ୍ନ ପୂଜାପର୍ବ, ଓଷାବ୍ରତରେ ମଧ୍ୟ ଯଥେଷ୍ଟ ଭାରଥୋର ପଠେଇଲେ ବି ଅନୁରୂପାର ଶାଶୂଘର ଲୋକଙ୍କୁ ସନ୍ତୁଷ୍ଟ କରିବା ଆଦୌ ସମ୍ଭବ ହୋଇନଥିଲା ତାଙ୍କ ବାପାଙ୍କ ପାଇଁ । ବରଂ ତାଙ୍କର କାଳିକନ୍ୟାଟିକୁ ଘରେ ଆଶ୍ରା ଦେଇଛନ୍ତି - ବଧୂର ମର୍ଯ୍ୟାଦା ଦେଇ ଯେମିତି ସେମାନଙ୍କୁ ଧନ୍ୟ କରି ଦେଇଛନ୍ତି ଅନୁରୂପାଙ୍କର ଶାଶୂ -ଶ୍ୱଶୁର ଓ ସ୍ୱାମୀ- ସେହିଭଳି ବ୍ୟବହାର ଦେଖାଉଥିଲେ ।

ଅଭିମାନରେ ତଥା ଭୟରେ ଅନୁରୂପା ତାଙ୍କ ବାପଘରକୁ ଆଦୌ ଯାଉନଥିଲେ । ଅଭିମାନ ଥିଲା ବାପାବୋଉଙ୍କ ଉପରେ । ତାଙ୍କ ଇଚ୍ଛା ବିରୁଦ୍ଧରେ ବାହାଘର କରି ଦେଇ ଅନୁରୂପାଙ୍କ ଜୀବନଟାକୁ ନର୍କରେ ପରିଣତ କରିବା ସହିତ ନିଜେ ମଧ୍ୟ ନର୍କ ଯନ୍ତ୍ରଣା ଭୋଗୁଥିଲେ ତାଙ୍କ ବାପା । ଏତେ ଆଦରର ଝିଅଟି ଶାଶୂଘରେ କି ଅବସ୍ଥାରେ ରହିଛି ସେ ସମ୍ପର୍କରେ ଯେତିକି ମାତ୍ର ଜାଣିବାକୁ ପାଇଥିଲେ ସେଇଥିରେ ସେ ମର୍ମାହତ ହୋଇ ଶଯ୍ୟାଶାୟୀ ହୋଇପଡ଼ିଥିଲେ । ପ୍ରତ୍ୟକ୍ଷ ଭାବରେ ଯଦି ସବୁକଥା ଜାଣିବାକୁ ପାଇବେ- ସେ ଆଉ ବଞ୍ଚିପାରିବେ ନାହିଁ । ଘରର ଆର୍ଥିକ ଅବସ୍ଥା ମଧ୍ୟ ଶୋଚନୀୟ ହୋଇପଡ଼ିଥିଲା । ନିଜର ସାନଭାଇ ତିନିଜଣଙ୍କର ଭବିଷ୍ୟତ ନେଇ ବ୍ୟାକୁଳ ହୋଇପଡୁଥିଲେ ବି କିଛି କରିବାର ଉପାୟ ନଥିଲା ଅନୁରୂପାଙ୍କର । ସାନଭାଇମାନଙ୍କ ପାଖରେ ନିଜକୁ ସେ ଦୋଷୀ ମଣୁଥିଲେ । ଶାଶୂଘରର ଅପମାନଜନକ ପରିସର ଭିତରୁ ବାହାରି ଆସି ବାପଘରେ ବାପାଭାଇଙ୍କ ଉପରେ ବୋଝ ହେବାକୁ ସେ ଚାହିଁନଥିଲେ । ବାହା ହେଲା ଝିଅ ଶାଶୂଘରକୁ ସବାରୀରେ ଯାଏ- ସେଇଠୁ ଯାଏ ମଶାଣିକି କୋକେଇରେ ବୁହାହୋଇ । ନିଜକୁ କୋକେଇରେ ଯିବାର କଳ୍ପନା କରି ଆଶ୍ୱସ୍ତ ହେଉଥିଲେ ବି ଜୀବନଟା ଯେମିତି ଅଜର ଅମର ହୋଇଯାଇଥିଲା- ଯେତେ ଦୁଃଖ,କଷ୍ଟ, ଅପମାନ ପାଇଲେ ବି ପ୍ରାଣ ଛାଡୁନଥିଲା ।

ଶାଶୂଘରେ ସେ ବଧୂର ଯଥାର୍ଥ ମର୍ଯ୍ୟାଦା ପାଇନଥିଲେ । କେବଳ କାମ କରିବା ଲୋକଟିଏ ହୋଇ ରହିଯାଇଥିଲେ । ତାଙ୍କ ଭିତରେ ରହିଥିବା ନିଃସ୍ୱାର୍ଥ ସେବା ମନୋଭାବ ତାଙ୍କୁ କର୍ମଜଞ୍ଜାଳ ମଧ୍ୟରେ ବୁଡ଼ାଇ ରଖିବାରେ ସାହାଯ୍ୟ କରିଥିଲା । କାମକୁ ସେ ଭଲ ପାଉଥିଲେ । ମଣିଷକୁ ଭଲପାଉଥିଲେ । ଗଛଲତା, ଜୀବଜନ୍ତୁ ସମସ୍ତଙ୍କୁ ଭଲ ପାଉଥିଲେ । ଶାଶୂଘରର କୁକୁର, ବିଲେଇ, ଗାଈମାନଙ୍କଠାରୁ ସେ ତାଙ୍କ ସ୍ନେହର ପ୍ରତିଦାନ ପାଇଥିଲେ, କିନ୍ତୁ ଜଣେ ହେଲେ ମଣିଷଙ୍କଠାରୁ ନୁହେଁ । ଏମିତିକି ତାଙ୍କର ଗର୍ଭଜାତ ସନ୍ତାନମାନେ ମଧ୍ୟ ତାଙ୍କୁ ଅବହେଳାର ଦୃଷ୍ଟିରେ ଦେଖୁଥିଲେ । ଏଇ ଅଧାପାଠୋଇ ସାଧାରଣ ସ୍ତ୍ରୀଲୋକଟି ଯେ ସେମାନଙ୍କର ମାଆ ଏ କଥା ସେମାନଙ୍କର ବନ୍ଧୁବାନ୍ଧବ, ସାଙ୍ଗସାଥୀଙ୍କ ଆଗରେ ପ୍ରକାଶ କରିବାକୁ କୁଣ୍ଠିତ ହେଉଥିଲେ । ତାଙ୍କର ବି ଦୋଷ କ'ଣ ? ସେମାନଙ୍କର

ବାପାଙ୍କଠାରୁ ଆରମ୍ଭ କରି ପରିବାରର ଅନ୍ୟ ସମସ୍ତେ ଏଇ ଲୋକଟି ସହିତ ଯେଉଁ ପ୍ରକାର ବ୍ୟବହାର କରନ୍ତି - ଛୋଟବେଳୁ ସେମାନେ ତ ସେଇସବୁ ଦେଖିଛନ୍ତି ଓ ଶିଖିଛନ୍ତି। ତେଣୁ ମାଆକୁ ବ୍ୟଙ୍ଗବିଦ୍ରୂପ କରି କଥା କହିବା, ମାଆ ଉପରେ ତୋଡ଼ ଦେଖାଇବା, ଖାଇବା ଜିନିଷ ଭଲ ନ ଲାଗିଲେ ଥାଳି ଉଠାଇ ଫିଙ୍ଗିଦେବାରେ ମଧ୍ୟ କିଛି ଦୋଷ ଦେଖୁନଥିଲେ କେହି। ପାଞ୍ଚୋଟି ଧୁରନ୍ଧର ପୁଅର ମାଆ ହୋଇଥିଲେ ଅନୁରୂପା, ଝିଅ ନଥିଲା ତାଙ୍କର। ପ୍ରତ୍ୟେକ ଥର ନିଜ ଶରୀରରେ ମାତୃତ୍ୱର ସମ୍ଭାବନା ପ୍ରକାଶ ପାଇବା ପରେ ସେ ଈଶ୍ୱରଙ୍କୁ ପ୍ରାର୍ଥନା କରୁଥିଲେ, "ହେ ପ୍ରଭୁ, ମୋ ଗର୍ଭରେ ଝିଅଟିଏ ଦିଅନାହିଁ।" କନ୍ୟା ସନ୍ତାନ ନ ଚାହିଁବା ପଛରେ ତାଙ୍କର ଉଦ୍ଦେଶ୍ୟ ଥିଲା ସିଏ ଯେଉଁ ଦୁଃଖ, ଯନ୍ତ୍ରଣା ଆଉ ଅପମାନ ଭୋଗୁଛନ୍ତି, ତାଙ୍କ ଗର୍ଭଜାତ କନ୍ୟାଟି ସେ ଦୁଃଖ ନ ସହୁ। ତାଙ୍କର ପ୍ରତିଛାୟାଟିଏ ଏ ପୃଥିବୀକୁ ନ ଆସିଲେ କାହାର କ'ଣ କ୍ଷତି ହୋଇଯିବ ଯେ। ଭଗବାନ ତାଙ୍କର ପ୍ରାର୍ଥନା ଶୁଣିଛନ୍ତି। ଗୋଟିକ ପରେ ଗୋଟିଏ ପୁତ୍ର ସନ୍ତାନ ସେ ଜନ୍ମ ଦେଇଛନ୍ତି। ପିଲାମାନେ ସମସ୍ତେ ବାପାଙ୍କ ପରି ହୋଇଛନ୍ତି; ଗୋରା ଆଉ ସୁନ୍ଦର। ଜଣେ ବି ଅନୁରୂପାଙ୍କ ପରି ହୋଇନାହାନ୍ତି, ଏମାନଙ୍କ ଭାଷାରେ କଳା ଆଉ ଅସୁନ୍ଦର।

-"ବୋହୂଟିର ରଙ୍ଗ ଟିକେ ଊଣା ହେଲେ କ'ଣ ହେଲା ? ତା' ଚେହେରା ବହୁତ ଭଲ। ଦେଖୁନ- ସେ ଆସୁ ଆସୁ ପୁଅର ବଡ଼ ଚାକିରି ହେଲା, ଶ୍ୱଶୁରଙ୍କର ପ୍ରମୋସନ୍ ହେଲା। ବଂଶରକ୍ଷା ପାଇଁ ପୁଅର ମାଆ ହେଲା।" ଭଲମଣିଷ ବନ୍ଧୁବାନ୍ଧବ ବା ସାହିପଡ଼ିଶାର କେହି ମନ୍ତବ୍ୟ ଦେଲେ ତୁରନ୍ତ ମୁହଁ ମୋଡ଼ି ଦିଅନ୍ତି ଶାଶୂ।

- "ଥାଉ ଥାଉ - ସେମିତି ମୁହଁବଙ୍କା କଥା କୁହନି। କାଲି କୋତରୀ ଯାଇ ମୁଣ୍ଡରେ ବସିବ। ଯିଏ ଯେମିତି ଭାଗ୍ୟ ନେଇଆସିଛି - ସିଏ ସେମିତି ଫଳ ପାଇବ। ଏଇଟା ଗୋଟେ କୋଉ ମଣିଷରେ ଲେଖା- ଯା'ରି ଯୋଗୁଁ ସମସ୍ତଙ୍କର ସବୁ ହେଇଯାଉଛି। ସେଃ।"

ଅନୁରୂପାଙ୍କୁ ମଣିଷରେ ବି ଗଣନ୍ତିନି କେହି ଏ ଘରେ। କାଠ, ପଥର, ଜଡ଼ ପଦାର୍ଥଟିଏ ଅଥବା ମେସିନ୍‌ଟିଏ। ଅନ୍ୟ ସମସ୍ତଙ୍କର ଅନାଦର, ଅବହେଳାକୁ ବରଦାସ୍ତ କରିବାରେ ଅଭ୍ୟସ୍ତ ହୋଇଗଲେଣି ଅନୁରୂପା। ବେଶି କଷ୍ଟ ଲାଗେନି ତାଙ୍କୁ। କଷ୍ଟ ଲାଗେ ନିଜ ସନ୍ତାନମାନଙ୍କର ଅବଜ୍ଞା ଭାବ। ନିଜ ଶରୀରରୁ ସୃଷ୍ଟି କରିଥିବା, ମୃତ୍ୟୁ ସହିତ ସଂଗ୍ରାମ କରି ସେମାନଙ୍କୁ ଏ ସଂସାରର ଆଲୋକ ଦେଖାଇଥିବା, ବୁକୁର ଅମୃତ ଦେଇ ସେମାନଙ୍କୁ ଲାଳନ କରିଥିବା ଏଇ ଜନ୍ମଦାତ୍ରୀଟି ପ୍ରତି ପିଲାମାନଙ୍କର ଅକୃତଜ୍ଞତା ତାଙ୍କୁ ବ୍ୟଥିତ କରେ। ପାଞ୍ଚଜଣଯାକ ପୁଅ ଏବେ ଦୂରରେ ରହନ୍ତି। ସମସ୍ତେ ବେଶ୍ ଉଚ୍ଚ ପଦପଦବୀରେ କାମ କରନ୍ତି ବିଭିନ୍ନ ସଂସ୍ଥାରେ। କିଏ କ'ଣ କରନ୍ତି ସେ ଖବର ସଠିକ୍

ଭାବରେ ଜଣାନାହିଁ ଅନୁରୂପାଙ୍କୁ। କେହି ଏ ପର୍ଯ୍ୟନ୍ତ ବାହା ହୋଇନାହାନ୍ତି। ଜେଜେ, ଜେଜେମା' ଓ ସେମାନଙ୍କର ବାପା କେତେ ଯେ କନ୍ୟା ଦେଖିଲେଣି ତା'ର ହିସାବ ନାହିଁ। କୋଉଠି ବି ମନ ପାଉନାହିଁ। ମନ ପାଉନି ବା ଦର ଛିଣ୍ଡୁନି ? ପାଞ୍ଚୋଟି ଯୋଗ୍ୟପୁତ୍ରଙ୍କୁ ଦେଖି ଚାହିଁ ଠିକ୍ ଜାଗାରେ ବାହାଘର କରିପାରିଲେ ଯା'ଙ୍କର ଦଶ ପୁରୁଷ ଯାଏ ଆରାମରେ ଚଳିଯିବେ। ଅନୁରୂପାଙ୍କର ମତାମତର କିଛି ବି ମୂଲ୍ୟ ନାହିଁ- କୌଣସି କଥାରେ ମଧ୍ୟ। ବାହାଘର ପରି ଗୁରୁତ୍ୱପୂର୍ଣ୍ଣ କଥାରେ କିଏ ପଚାରେ ତାଙ୍କୁ!

ଯଦି କିଏ ପଚାରନ୍ତା - ସିଏ ଆଗ୍ରହରେ ସଙ୍ଖୋଳି ଆଣନ୍ତେ ସେଇ ସାହସିନୀ, ସ୍ୱାଭିମାନୀ ଝିଅଟିକୁ । ବୋହୂ ଭାବରେ ବନ୍ଦାପନା କରି ନିଅନ୍ତେ। ତାଙ୍କର ସାରା ଜୀବନର ବ୍ୟର୍ଥତାକୁ ରୂପାନ୍ତରିତ କରିଦିଅନ୍ତା ସେଇ ଝିଅ ପରମ ସାର୍ଥକତାରେ। ଏ ଘରର ପରିବେଶ ବଦଳି ଯାଆନ୍ତା, ବଦଳି ଯାଆନ୍ତା ପରମ୍ପରା। ଅବାନ୍ତର ହେଲେ ମଧ୍ୟ ନିଜ ପୁଅମାନଙ୍କ ପାଖରେ ସେଇ ଝିଅଟିର କାଳ୍ପନିକ ରୂପଟିଏ ଆଙ୍କି ଠିଆ କରେଇ ଦେଖିଲେ ସେ- କାହା ପାଖରେ ଠିକ୍ ମାନୁଛି ଝିଅଟି ? ବଡ଼ପୁଅ ଅନିମେଷ, ତା'ପର ପୁଅ ଅନିକେତ, ତୃତୀୟ ପୁଅ ଅନୁଭବ, ତା'ପର ଅନୁରାଗ ନା ସବା ସାନପୁଅ ଅନୁପମ ? ନା - କାହା ପାଖରେ ବି ସେ ଖାପ ଖାଉନାହିଁ। ସିଏ ତ ବହ୍ନିକନ୍ୟା - ଅଥବା ବିଜୁଳି କନ୍ୟା। ସେଇ ଝିଅର ସ୍ୱାମୀ ହେବାର ଯୋଗ୍ୟତା ଏମାନଙ୍କର କାହାରି ନାହିଁ। ଏମାନେ ସମସ୍ତେ ଅନିରୁଦ୍ଧଙ୍କର ଦାୟାଦ। ବିବାହିତା ପତ୍ନୀକୁ ମର୍ଯ୍ୟାଦା ଦେଇ ଶିଖି ନଥିବା, ସ୍ତ୍ରୀକୁ ଗୃହପାଳିତ ଜୀବଟିଏ ମଣୁଥିବା ଅର୍ଥପିପାସୁ, ବିଷୟାସକ୍ତ ଗୋଟେ ନିମ୍ନ ଚେତନାର ଅଧିକାରୀ ମଣିଷର ଅଂଶ ଏମାନେ। ତେଜସ୍ୱିନୀ, ଜ୍ୟୋତିର୍ମୟୀ ନାରୀର ସ୍ୱାମୀ ହେବାର ସୌଭାଗ୍ୟ ଏମାନଙ୍କୁ ମିଳିବ କାହିଁକି ? ନା- ସେ ଝିଅଟିକୁ ସେ ନିଜ ଅନ୍ତରରେ ସାଇତି ରଖିବେ। ସିଏ ତାଙ୍କର ନିଭୃତ ମନର ପ୍ରତିବିମ୍ବ। ତାଙ୍କ ଯନ୍ତ୍ରଣାକ୍ଲିଷ୍ଟ ଜୀବନର ଆଶ୍ୱାସନା, ଆଗାମୀ ସ୍ୱପ୍ନର ସମ୍ଭାବନା। ତାଙ୍କୁ ଏମିତି ଅପାତ୍ରରେ ଦାନ କରିପାରିବେ ନାହିଁ ସେ।

- 'ସାନମା', ତୁମକୁ ବାବୁ ଡାକୁଛନ୍ତି।" ସନାତନର ଡାକରେ ସଚେତନ ହେଲେ ଅନୁରୂପା। ସନାତନ ଏ ଘରେ ଅନେକ ଦିନ ହେଲା ରହିଲାଣି। ବଜାର ସଉଦା କରେ, ବୋଲହାକ କରେ। ଅନୁରୂପାଙ୍କୁ ସେ ଖୁବ୍ ଶ୍ରଦ୍ଧା କରେ। ଅନିରୁଦ୍ଧ ଡାକୁଛନ୍ତି ଅନୁରୂପାଙ୍କୁ। ସତର୍କ ହୋଇଗଲେ ମନେ ମନେ ସେ। ଏଭଳି ଡାକରାର ଉଦ୍ଦେଶ୍ୟ ସେ ଜାଣନ୍ତି। ଯାହା ଯୋଉଠି ଅସୁବିଧା ହୋଇଥିବ - ସବୁତକ ରାଗ ଅନୁରୂପାଙ୍କ ଉପରେ ଅଜାଡ଼ି ଦେବେ ସେ। ଏତେବର୍ଷ ଧରି ସେଇଆ ତ ଦେଖି ଆସୁଛନ୍ତି ଅନୁରୂପା - ନିର୍ବିକାର ଭାବରେ ସହିଆସୁଛନ୍ତି ମଧ୍ୟ। ଆଜି କିନ୍ତୁ ମନଟା ଅନ୍ୟ ପ୍ରକାର ଲାଗୁଥିଲା। କାହିଁକି ସେ ସହି ଚାଲୁଥିବେ ଏମିତି ଅନ୍ୟାୟ, ଅତ୍ୟାଚାରକୁ ? ନା- ଆଉ ସହିବେ ନାହିଁ।

ଏଣିକି ସେ ପ୍ରତିବାଦ କରିବେ। ନିଜର ଅବଶିଷ୍ଟ ଜୀବନକୁ ଆଉ ଅକାରଣରେ ସରିଯିବାକୁ ଦେବେନି ସେ। ସିଏ କାଠପଥର ନୁହଁନ୍ତି- ରକ୍ତମାଂସରେ ଗଢ଼ା ମଣିଷ ସେ; ତାଙ୍କର ବି ମନ ଅଛି, ହୃଦୟ ଅଛି, ଆତ୍ମସମ୍ମାନବୋଧ ରହିଛି। ଯାହା ହେଉଛି ହେଉ- ସେ ଆଉ ଚୁପ୍ ହୋଇ ରହିପାରିବେନି। ମନକୁ ଦୃଢ଼ କଲେ ଅନୁରୂପା।

-"ଆସନ୍ତୁ ଆସନ୍ତୁ ମହାରାଣୀ - ନା ନା- ମହାରାଣୀ କାହିଁକି କହିବି ? ରାଜମାତା କହିଲେ ଠିକ୍ ହେବ। ଆପଣଙ୍କ ଯୋଗ୍ୟପୁତ୍ର ମନକୁ ମନ ବାହା ହୋଇ ବୋହୂ ନେଇ କାଲି ପହଞ୍ଚୁଛନ୍ତି। ପୁଅବୋହୂଙ୍କୁ ସଙ୍ଖୋଳିବାର ଆୟୋଜନ କରନ୍ତୁ ଏବେ।" ଅନୁରୂପାଙ୍କୁ ଦେଖୁ ଦେଖୁ ବିଦ୍ରୂପଭରା କଣ୍ଠରେ ଅନିରୁଦ୍ଧ କହିଲେ।

-"ଯୋଗ୍ୟ ମାତାଙ୍କର ଯୋଗ୍ୟ ପୁତ୍ର। କ'ଣ ଆଉ କରନ୍ତା ସେ ? "ମୁହଁ ଛିଞ୍ଚାଡ଼ି କହିଲେ ଶାଶୂ। ଅନୁରୂପା ସ୍ତବ୍ଧ ହୋଇଗଲେ। କୋଉ ପୁଅ ତାଙ୍କର ମନକୁ ମନ ବାହା ହୋଇ ପଡ଼ିଚି ? ତାଙ୍କର ଗର୍ଭଜାତ ପାଞ୍ଚୋଟି ଯାକ ପୁଅ ବିବାହଯୋଗ୍ୟ। କହିବାକୁ ଗଲେ ବଡ଼ ଦୁଇଜଣଙ୍କର ବିବାହ ବୟସ ବରଂ ଟିକେ ଅଧିକ ହୋଇଗଲାଣି। ପରିବାରର ଲୋକମାନଙ୍କ ଉପରେ କନ୍ୟା ବାଛିବାର ଦାୟିତ୍ୱ ଦେଇ ସେମାନେ ହୁଏତ ଓଥରା ହୋଇ ରହିଯିବେ। ଦର କଷାକଷି ହେଉ ହେଉ ବିବାହ ବୟସ ଅତିକ୍ରାନ୍ତ ହୋଇଯାଇଥିବ। ସେମାନେ ଯଦି ନିଜେ କାହାକୁ ପସନ୍ଦ କରି ବାହା ହୋଇଯିବେ ତ ମନ୍ଦ କ'ଣ ? କିନ୍ତୁ କୋଉ ପୁଅ ତାଙ୍କର ବାହା ହୋଇଯାଇଛି ନିଜେ ନିଜେ ? ଅନିମେଷ, ଅନିକେତ, ଅନୁଭବ, ଅନୁରାଗ ନା ଅନୁପମ ? ଯିଏ ହେଲେ ବି ଅନୁରୂପାଙ୍କର କିଛି ଯାଏ ଆସେ ନାହିଁ। ପୁଅମାନଙ୍କୁ ସେ ଜନ୍ମ ଦେଇଛନ୍ତି ସତ- ସେମାନଙ୍କୁ ନିଜର କରିପାରିନାହାନ୍ତି। ନିଜର କରିବାକୁ ଦିଆଯାଇନାହିଁ ତାଙ୍କୁ। ଜନ୍ମିତ ସନ୍ତାନମାନେ ମଧ୍ୟ ତାଙ୍କ ପାଇଁ ଦୂରର ମଣିଷ। ମାଆ ହିସାବରେ ସ୍ୱତଃସ୍ଫୂର୍ତ୍ତ ଭାବରେ ପିଲାମାନଙ୍କର ମଙ୍ଗଳ କାମନା କରିଛନ୍ତି ସେ, କିନ୍ତୁ ସେଇ ଦୂରରୁ ଦୂରରୁ। ତାଙ୍କ ପାଖରେ କେହି ଅଝଟ କରିନାହାନ୍ତି କି ତାଙ୍କୁ ଆପଣାପଣରେ କୁଣ୍ଢାଇ ଧରିନାହାନ୍ତି। ପୁଅମାନେ ଯଦି ନିଜର ହୋଇନାହାନ୍ତି - ବୋହୂକୁ ନେଇ ଖୁସି ହେବାର କୌଣସି ହେତୁ ନାହିଁ।

- "କେଜାଣି କୋଉ ଜାତିର ଝିଅ ସେ- ଖ୍ରୀଷ୍ଟିଆନ୍ କି ମୁସଲ୍‌ମାନ କି ଆଉ କୋଉ ଜାତି ? ଏ ଘର ଆଉ ଘର ହୋଇ ରହିବନି।" ଶ୍ୱଶୁର କହିଲେ ଅବସୋସ୍ ପ୍ରକଟ କରି।

- "ବାହା ହେବା ପାଇଁ ଏମିତି ଅଥୟ ଯେ ବାବୁ ଭାବି ପାରିଲେ ନାହିଁ - ମୁଣ୍ଡ ଉପରେ ଦି' ଦି'ଟା ବଡ଼ଭାଇ ଅଛନ୍ତି - ମୁଁ କେମିତି ଆଗତୁରା ବାହାହୋଇ ପଡ଼ିବି ? ବାହାଘର କ'ଣ ପିଲାଖେଳ କଥା ହୋଇଛି ? ପୁଅଝିଅ ନିଜକୁ ନିଜେ ପସନ୍ଦ କରି ବାହା

ହୋଇଯିବେ ? ବାହାଘର ହେଉଛି ଦି'ଟା ପରିବାରର ବନ୍ଧନ।" ଅନିରୁଦ୍ଧ କହିଲେ।

- "ସତେ ! ନିଜ ବାହାଘର ବେଳକୁ ଏ କଥା ଭାବିପାରିନଥିଲ ତ ! ବାହାଘର ଯଦି ଦି'ଟା ପରିବାରର ବନ୍ଧନ- ମୋ ବାପାଙ୍କୁ କାହିଁକି ଏମିତି ସର୍ବସ୍ୱାନ୍ତ କରିଦେଲ ?" ମନେ ମନେ କହିଲେ ଅନୁରୂପା। ଅନଭ୍ୟସ୍ତତା ହେତୁ ଇଚ୍ଛା କରି ମଧ୍ୟ ମୁହଁରେ ଉଚ୍ଚାରଣ କରି ପାରିଲେ ନାହିଁ ନିଜ ମନର କ୍ଷୋଭକୁ। କିନ୍ତୁ ସିଧା ଚାହିଁଲେ ସ୍ୱାମୀଙ୍କ ମୁହଁକୁ। ମନେମନେ ଆମୋଦିତ ହେଉଥିଲେ ସେ। ଭଲ ହେଇଛି- ଅନୁଭବ ତା ପସନ୍ଦର ଝିଅକୁ ବାହା ହୋଇଯାଇଛି। ତାକୁ ନେଇ ମୂଲଚାଲ କରିବାର ସୁଯୋଗ ଏମାନେ ପାଇବେ ନାହିଁ ବୋଲି ଏଭଳି ଆକ୍ରୋଶରେ ଭାଙ୍ଗି ପଡୁଛନ୍ତି।

- "ଏମିତି ଜଳକାଙ୍କ ପରି ଚାହିଁଚ କ'ଣ ? ଯାଅ ଯାଅ- ଖୁସିରେ ନାଚିବ। ସାହିପଡ଼ିଶାଙ୍କୁ ମିଠେଇ ବାଣ୍ଟିବ ! ଦଉଚି ସେ ଟୋକାକୁ- । ପୁଳା ପୁଳା ଟଙ୍କା ଖର୍ଚ୍ଚ କରି ତୋତେ ପାଠ ପଢ଼େଇଥିଲି ବୋଲି ସିନା ତୁ ବିଦେଶରେ ଭଲ କମ୍ପାନୀରେ ଚାକିରି ପାଇଲୁ। ଯେମିତି ନିଜ ମୁଣ୍ଡକୁ ହାତ ପାଇଗଲା- ଘର, ପରିବାର, ବାପାମାଆ ସବୁ ଭୁଲିଗଲୁ ? କୋଉ ଲୋରା ନା ଡୋରା ନା କୋରାକୁ ବାହା ହେଇଗଲୁ କୋର୍ଟରେ ! ସେମାନଙ୍କୁ କେହି ଘରେ ପୂରେଇବନି କହିଦେଉଛି। ସିଏ ତାଙ୍କର ଯୁଆଡେ ଯାଉଛନ୍ତି ଯାଆନ୍ତୁ- ଯୋଉଠି ରହୁଛନ୍ତି ରୁହନ୍ତୁ। ଏ ଘର ଦୁଆରବନ୍ଧ ମଡ଼େଇ ଦେବିନି ତାଙ୍କୁ।" ଅନିରୁଦ୍ଧଙ୍କର କ୍ରୋଧଭରା ବକ୍ତବ୍ୟକୁ ଶାନ୍ତ କରିବାପାଇଁ ତାଙ୍କ ବୋଉ ଚାପା କଣ୍ଠରେ କହିଲେ, "ଆରେ, ବୋକାଟା କିରେ ? ଏମିତି ରାଗିଲେ ଲାଭ କ'ଣ ହେବ ଶୁଣେ ? ଯାହା କ୍ଷତି ହେବ- ଆମରି ହେବ। ରୋଜଗାରିଆ ପୁଅ ହାତରୁ ଖସିଯିବ। ମୋ ମନ କହୁଛି - ଅନୁଭବ ପରି ହୁସିଆର୍ ପିଲା କେବେ ଏମିତି ସେମିତି ଝିଅ ବାଛି ନଥିବ। ଦେଖିବୁ - ସେ ବିରାଟ ବଡ଼ଲୋକ ଘରର ଦିବ୍ୟସୁନ୍ଦରୀ ଝିଅ ହୋଇଥିବ। କୋଟିପତି ହୋଇଥିବ ନିଷ୍ଚେ। ଟିକେ ଧୈର୍ଯ୍ୟ ଧରି କାଲି ପର୍ଯ୍ୟନ୍ତ ରହିଯା। ତା'ପରେ ଯାହା କରିବା କଥା କରିବୁ।"

କୋଉଥିରେ ଆସୁଛି - କେତେବେଳେ ଆସି ପହଞ୍ଚିବ, କିଛି ବି ଜଣାଇନଥିଲା ଅନୁଭବ। ଘରକୁ ତ ଆସୁଛି -ଯେତେବେଳେ ଆସିଲେ ବି କ'ଣ ହେଲା ? ପୁଅବୋହୂଙ୍କୁ ସ୍ୱାଗତ କରିବା ପାଇଁ ଅନୁରୂପା ଉତ୍କଣ୍ଠିତ ଭାବରେ ଅପେକ୍ଷା କରିଥିଲେ। ବିଧିବିଧାନ ଅନୁଯାୟୀ ବାହାଘର ହୋଇଥିଲେ ସେଥିରେ ମାଆର ଭୂମିକା ଥାଏ। ଏ ପ୍ରକାର ବାହାଘରରେ ମାଆ କ'ଣ, ବିଶେଷ କାହାରି ପ୍ରୟୋଜନ ହୁଏନାହିଁ। ଆଶା ଓ ନିରାଶା ମଧ୍ୟରେ ଆନ୍ଦୋଳିତ ହୋଇ ଅପେକ୍ଷା କରିଥିଲେ ଅନୁଭବର ଜେଜେ, ଜେଜେମା' ଓ ବାପା। ବନ୍ଦାଣ ଥାଳିଟିଏ ସଜାଡ଼ି ରଖିଥିଲେ ଅନୁରୂପା। ପୁଅ ଯେମିତି ବାହା ହୋଇଥାଉ ପଛେ - ଯାହାକୁ ସିଏ

ବାହା ହୋଇଛି ଏ ଘରର ବୋହୂ ସେ – ଏ ଘରର ଲକ୍ଷ୍ମୀ। ତାକୁ ଆଦରରେ ସ୍ୱାଗତ କରିବା ସମସ୍ତଙ୍କର କର୍ତ୍ତବ୍ୟ। କେହି ନ କଲେ ମଧ୍ୟ ନିଜ କର୍ତ୍ତବ୍ୟ ପାଳନରେ ଅବହେଳା କରିପାରିବେ ନାହିଁ ଅନୁରୂପା। ସାରା ଜୀବନ ତ ସେଇଆ ହିଁ କରିଆସିଛନ୍ତି ସେ।

ଟ୍ୟାକ୍ସିରେ ଆସି ପହଞ୍ଚିଲା ଅନୁଭବ – ନବବଧୂକୁ ଧରି। ସନାତନଠାରୁ ଖବର ପାଇ ସାହିପଡ଼ିଶାର କିଛି ଲୋକ ମଧ୍ୟ କୌତୂହଳର ସହିତ ଠିଆ ହୋଇଥିଲେ। ଗାଡ଼ି ରହିବା ସଙ୍ଗେ ସଙ୍ଗେ ଭୁଁ କରି ଶଙ୍ଖ ବାଜି ଉଠିଲା। ହୁଳହୁଳି ଶବ୍ଦରେ ଉଛୁଳି ଉଠିଲା ଅଗଣା। ଗାଡ଼ିରୁ ପ୍ରଥମେ ଓହ୍ଲାଇଲା ଅନୁଭବ। ଇସ୍ – କି ଦୟନୀୟ ଦିଶୁଛି ସେ ! ଖୁବ୍ ଦେହ ଖରାପ ହୋଇଥିଲା ନିଶ୍ଚୟ।ତକ୍‌ତକ୍ ଗୋରା ଦେହଟା ତମ୍ବାଟିଆ ଦିଶୁଛି। ତା'ପଛେ ପଛେ ଓହ୍ଲାଇଲା ବୋହୂ ଲୋରା। ପ୍ରଥମେ ତା' ପାଦର ହାଇହିଲ୍ ଦିଶିଲା। ତା'ପରେ ଗୋଡ଼ – ଆଣ୍ଠୁ ଉପର ଯାଏ ଫୁଙ୍ଗୁଳା, ଶେଷରେ ନିଜେ ଲୋରା ସମ୍ପୂର୍ଣ୍ଣ ଭାବରେ ଗୋଟାପଣେ। ଦୀର୍ଘଦେହୀ, କୃଷ୍ଣକାୟା, ମୋଟା ମୋଟା ଓଠ, କୁଞ୍ଚୁକୁଞ୍ଚିଆ କେଶ। ପିନ୍ଧିଛି ଫିକା ରଙ୍ଗର ଗାଉନ୍‌ଟିଏ। ଦେହରେ କୋଉଠି ଅଳଙ୍କାରର ଚିହ୍ନ ନାହିଁ। ଦ୍ୱିତୀୟ ଥର ପାଇଁ ହୁଳହୁଳି ଦେବାକୁ ଯାଇଥିବା ଜିଭଗୁଡ଼ିକ ଜଡ଼ ପାଲଟି ଗଲେ, ଶଙ୍ଖ ବଜାଇବା ଲୋକ ଭୁଲିଗଲା ଶଙ୍ଖ ବଜାଇବାକୁ। ସମସ୍ତେ ଷ୍ଟାଚ୍ୟୁ ପାଲଟି ଯାଇଥିଲେ ସତେ କି ? ଅନୁଭବ ପରି ସୁନ୍ଦର ଯୁବକ ନିକଟରେ ବଡ଼ ବେଖାପ ଦିଶୁଥିଲା ଝିଅଟି। ଏମିତିକା ପସନ୍ଦ ଅନୁଭବର ! ଅନୁରୂପା ବନ୍ଦାଣ ଥାଳି ଧରି ପୁଅବୋହୂଙ୍କ ପାଖକୁ ଗଲେ।

– "ବୋଉ, ଇଏ ଲୋରା, ତୋ ବୋହୂ।" ଅନୁଭବ ପରିଚୟ କରାଇଦେଲା।

– "ହ୍ୟାଲୋ 'ବୋଉ' ! ହାଓ ଆର୍ ୟୁ ?" ଲୋରା ଅନୁରୂପାଙ୍କୁ କହିଲା। ତା'ର ମୋଟା ଓଠ ଫାଙ୍କରୁ ମାଢ଼ି ସହିତ ଅଧିକାଂଶ ଦାନ୍ତ ମଧ୍ୟ ଦିଶୁଥିଲା।

– "ଆଇ ଆମ୍ ଫାଇନ୍ ମାଇଁ ଡିଅର୍।" ଅନୁରୂପା ବେଶ୍ ସୁନ୍ଦର ଭାବରେ ଉତ୍ତର ଦେଲେ। ବିସ୍ମିତ ଦୃଷ୍ଟିରେ ତାଙ୍କୁ ଚାହିଁଲେ ଅନୁଭବ। ବୋଉ ପୁଣି ଇଂଲିଶ୍ କହୁଛି ! ଆଶ୍ଚର୍ଯ୍ୟ। ଲୋରାର ହାତଧରି ଅନୁରୂପା ତାକୁ ଘର ଭିତରକୁ ନେଇ ଆସୁଥିଲେ। ପଛେ ପଛେ ଆସୁଥିଲା ଅନୁଭବ।

– "ଜାଣିଛୁ ବୋଉ – ଗତବର୍ଷ 'ସୁନାମୀ' ପୂର୍ବରୁ ମୁଁ ଆଣ୍ଡାମାନ୍ ଯାଇଥିଲି ବୁଲିବାକୁ। ସୁନାମୀର ପ୍ରବଳ ଢେଉରେ ମୁଁ ଭାସିଯାଇ ତିନିଦିନ ବେହୋଶ୍ ହୋଇ ଗୋଟାଏ ଦୁର୍ଗମ ଅଞ୍ଚଳରେ ପଡ଼ିଥିଲି। ଭଲେଣ୍ଟିଅର୍‌ମାନଙ୍କ ସହିତ ଲୋରା ଯାଇ ପହଞ୍ଚିଥିଲା ସେଇଠି। ସିଏ ନିଜେ ନର୍ସ୍। ମାସେ କାଳ ଅନେକ ଯତ୍ନ କରି ଅନେକ କଷ୍ଟ ସହି ମୋତେ ବଞ୍ଚାଇଥିଲା। ସେତିକିବେଳେ ମୋର ତୋ କଥା ବହୁତ ମନେପଡ଼ିଥିଲା। ସୁସ୍ଥ ହେବା ପରେ ଠିକ୍ କଲି ଲୋରା ଯଦି ରାଜି ହୁଏ – ସାରା ଜୀବନ ପାଇଁ ଆମେ ଏକାଠି

ରହିବୁ। ଏ ବାହାଘରକୁ ଘରେ କେହି ପସନ୍ଦ କରିବେ ନାହିଁ - ମୁଁ ଭଲ କି ଜାଣିଛି। କିନ୍ତୁ- ମୋର ବିଶ୍ୱାସ ଲୋରାକୁ ତୁ ନିଶ୍ଚୟ ପସନ୍ଦ କରିବୁ।" ଅନୁଭବର କଥାଗୁଡ଼ିକ ଅନୁରୂପାଙ୍କ ପ୍ରାଣରେ ଅପୂର୍ବ ପୁଲକ ସୃଷ୍ଟି କରୁଥିଲା। ନିଜ ପୁଅକୁ ବି ଚିହ୍ନିବାକୁ ବାକିଥିଲା ତାଙ୍କର। ଲୋରାର ମୁହଁକୁ ସେ ନିରୀକ୍ଷଣ କଲେ। ଫିକ୍ କିନା ପୁଣି ହସିଦେଲା ସେ। ମାଢ଼ି ସହିତ ଦାନ୍ତସବୁ ଦିଶିଲା। ବାଃ - କି ସୁନ୍ଦର ଆଖି ଦୁଇଟି ତାଙ୍କ ବୋହୂର । ସାରା ସଂସାରର ସ୍ନେହ, ପ୍ରେମ, ମମତା ଯେମିତି ପ୍ରତିବିମ୍ବିତ ହେଉଛି ସେ ଆଖିରେ। ଭାରି ଭଲ ଲାଗିଲା ଅନୁରୂପାଙ୍କୁ। ପ୍ରକୃତରେ ଭାରି ଭଲ ଝିଅ ହୋଇଥିବ ଲୋରା। ତାଙ୍କ ପୁଅଟିକୁ ଯିଏ ଏତେ ବେଶି ଭଲପାଉଛି - ସିଏ ତ ସବୁଠାରୁ ପ୍ରିୟ ତାଙ୍କ ପାଇଁ।

# ଅନ୍ୱେଷାର ଘର

- "ଆମ ଘରକୁ ନିଶ୍ଚୟ ଆସିବ।" - ଖୁବ୍ ଆନ୍ତରିକ ଭାବରେ ସମସ୍ତଙ୍କୁ କହିଥାଏ ଅନ୍ୱେଷା। ଏଭଳି ନିମନ୍ତ୍ରଣରେ ଏତେ ଟିକେ କୃତ୍ରିମତା ନଥାଏ। ସେଇଥିପାଇଁ ତା' ଘରକୁ ଆସିବାରେ କେହି ସାମାନ୍ୟ ହେଲେ ଦ୍ୱିଧା ଅନୁଭବ କରିନଥାନ୍ତି। ବେଳ ଅବେଳରେ ଯେତେବେଳେ ଯିଏ ପହଞ୍ଚିଗଲେ ବି ଅକାତର ଭାବରେ, ଖୁସି ମନରେ ସ୍ୱାଗତ କରନ୍ତି ଅନ୍ୱେଷା ଓ ଅନିମେଷ। ପୁଣି ଥରେ ରାନ୍ଧିବାକୁ ପଡ଼ିଲେ ଅନ୍ୱେଷା ବାଡ଼େଇ କଟାଡ଼ି ହୋଇ ମୁହଁ ହାଣ୍ଡି ପରି କରେନି, କି ଅତିଥିଙ୍କୁ ଦେଖେଇ ଶୁଣେଇ ଦି'ପଦ କଥା କହିଦିଏନି। ଅନିମେଷ ବି ଖର୍ଚ୍ଚ କଥା ଭାବି ଚିଡ଼୍‌ଚିଡ଼୍ ହୁଅନ୍ତି ନାହିଁ। ଘରେ ଯାହା ଥାଏ, ଅତିଥିଙ୍କୁ ସେଇଥିରେ ସତ୍କାର କରନ୍ତି। ସେମାନଙ୍କର ଆପଣାପଣରେ ଅତିଥି ହୋଇଯାଆନ୍ତି ଘରର ସଦସ୍ୟ। ତାଙ୍କ ପାଖରୁ ବିଦାୟ ନେଇ ଗଲାବେଳକୁ ଅଶ୍ରୁସଜଳ ନୟନରେ ଯାଆନ୍ତି ପୁଣି ଆସିବାର ପ୍ରତିଶ୍ରୁତି ସହିତ। ଅନିମେଷଙ୍କ ପରିବାରଟି ଦୁଇଟି ପୁଅ ଝିଅ ଏବଂ ପତ୍ନୀ ଅନ୍ୱେଷାଙ୍କୁ ନେଇ ଛୋଟିଆ ମନେହେଉଥିଲେ ମଧ୍ୟ ତାଙ୍କ ଘର ସର୍ବଦା ଭରପୂର ହୋଇ ରହିଥାଏ ବନ୍ଧୁବାନ୍ଧବ ତଥା ଅତିଥି ଅଭ୍ୟାଗତଙ୍କ ଗହଣରେ।

ନା, ସେମାନଙ୍କର ଘର କିଛି ବିରାଟ ଅଟ୍ଟାଳିକା ନଥିଲା, କି ସୁଦୃଶ୍ୟ ବଙ୍ଗଳା ନଥିଲା। ଦୁଇ ବଖରାର ଛୋଟିଆ ସରକାରୀ କ୍ୱାର୍ଟର୍ସ, ତା' ବି ନିଜର ନୁହେଁ, ଅନିମେଷଙ୍କର ଜଣେ ସମ୍ପର୍କୀୟ ଭାଇଙ୍କର କ୍ୱାର୍ଟର୍ସ , ଯିଏ କି ଅବିବାହିତ ଏବଂ ଅନ୍ୟତ୍ର ରହୁଥିଲେ-ମେସ୍‌ରେ। ଅନିମେଷଙ୍କୁ ସରକାରୀ କ୍ୱାର୍ଟର୍ସଟିଏ ମିଳିବା ପର୍ଯ୍ୟନ୍ତ ସେଇ ଘରଟିକୁ ରଖିବା ପାଇଁ ଚାହୁଁଥିଲେ ଭାଇ। ଏକୁଟିଆ ଘରଟିଏ ନେଇ ବିଭିନ୍ନ ଝମେଲା ଉଠେଇବାକୁ ଇଚ୍ଛା କରୁନଥିଲେ ସେ। ସାନଭାଇକୁ କ୍ୱାର୍ଟର୍ସ ମିଳିଗଲେ ନିଜ ନାମରେ ଥିବା କ୍ୱାର୍ଟର୍ସଟିକୁ ସରେଣ୍ଡର୍ କରିଦେବେ ବୋଲି କହୁଥିଲେ।

ଘର ଆଗରେ ଥିଲା ସୁନ୍ଦର ଛୋଟିଆ ବଗିଚାଟିଏ। ରାସ୍ତାରେ ଚାଲି ଯାଉଥିବା ଲୋକ ବି ଟିକିଏ ଫେରି ଚାହିଁବ ସେଇ ବଗିଚାକୁ । କ'ଣ ବିଶେଷତ୍ୱ ଥିଲା ସେଇ

ବଗିଚାଟିର ? ଅନ୍ୟମାନଙ୍କ ବଗିଚା ପରି କିଛି ଫୁଲ ଆଉ ଫଳର ଗଛ ତ ଲାଗିଥିଲା ସେଇଠି। ବିଭିନ୍ନ ଋତୁରେ ରଙ୍ଗବେରଙ୍ଗର ଫୁଲ ଫୁଟୁଥିଲା। ଟଗର, ଡରାଟ, ମନ୍ଦାର, ମଲ୍ଲି, ସେବତୀ, ଡାଲିଆ, ଗେଣ୍ଡୁ - ଏମିତି କେତେ ଜାତିର। ପୁଣି ପଟାଳିମାନଙ୍କରେ ଛନଛନିଆ ଦିଶୁଥିଲା ଲେଉଟିଆ, କୋଶଳା, ପାଳଙ୍ଗ, ଧନିଆ। ବାଇଗଣ, ଟମାଟୋ, ଲଙ୍କାମରିଚ, ଭେଣ୍ଡି, ଝୁଡ଼ୁଙ୍ଗ, ବିନ୍ ବି ଫଳୁଥିଲା। ଛୋଟିଆ ଜାଗାଟିର ଯଥାର୍ଥ ସଦୁପଯୋଗ ହୋଇଥିଲା। ଇଏ ବି ସେମିତି ନୂଆ କଥା କିଛି ନଥିଲା। ସେମିତି ତ ବହୁତ ଲୋକଙ୍କ ଘରେ ଥାଏ। ମାତ୍ର ତାଙ୍କ ବଗିଚ୍ଚର ନିଆରାପଣ ଥିଲା, ଗଛମାନେ ସମସ୍ତେ ଖୁବ୍ ବେଶି ଜୀବନ୍ତ ଆଉ ହସନ୍ତ ଦିଶୁଥିଲେ। ବହୁ ଆଦର ଯତ୍ନରେ ଲାଳିତ ସନ୍ତାନ ପରି ନରମ, କୋମଳ ଆଉ ଜ୍ୟୋତିସ୍ନାତ। ପୁଣି ସେଇ ବଗିଚାର ମୋହ ଟାଣି ଆଣୁଥିଲା ଜାତିଜାତିକା ପ୍ରଜାପତିଙ୍କୁ, ମହୁମାଛି ଆଉ ଭଅଁରଙ୍କୁ। ଆସୁଥିଲେ ହଳଦିବସନ୍ତ, କଜ୍ଜଳପାତି, କାଠହଣା, କୋଇଲି ଆଉ କୁମ୍ପାଟୁଆ। ଫୁଲଚୁଇଁ ଦୁଇଟି ତ ସେଇ ବଗିଚା ଭିତରେ କ୍ରୋଟନ୍ କି ମନିପ୍ଲାଣ୍ଟ୍ ଗଛର ପତ୍ରକୁ ଯୋଡ଼ି ତାଙ୍କର ନୀଡ଼ଟିଏ ବନେଇଥିଲେ ଏବଂ ତାଙ୍କର ମଧୁର ସ୍ୱର ଝଙ୍କାରରେ ପରିବେଶକୁ ମାଧୁର୍ଯ୍ୟମଣ୍ଡିତ କରିଦେଉଥିଲେ। ଅନ୍ୟ ପକ୍ଷୀମାନେ ମଧ ସେମାନଙ୍କର କୂଜନ କାକଳୀରେ ତାରିଫ୍ କରୁଥିଲେ ଫୁଲମାନଙ୍କର ସୁନ୍ଦରତାକୁ, ଗଛମାନଙ୍କର ସାନନ୍ଦ ଆମନ୍ତ୍ରଣକୁ, ସର୍ବୋପରି ଅନିମେଷ ଓ ଅନ୍ୱେଷାଙ୍କର ଆନ୍ତରିକତାକୁ। ମଣିଷଠାରୁ ଆରମ୍ଭ କରି ପଶୁପକ୍ଷୀ, ଗଛଲତା ସମସ୍ତଙ୍କ ପ୍ରତି ଅଫୁରନ୍ତ ଭଲ ପାଇବାରେ ଆଦୌ କାର୍ପଣ୍ୟ ନଥିଲା ସେମାନଙ୍କର। ଘରଟିର ମର୍ଯ୍ୟାଦା ବଢ଼ାଇ ଦେଉଥିଲା ସେଇ ଇଲାକାର ସବୁଠାରୁ ବଡ଼ ଆମ୍ବଗଛଟି ଏବଂ ତାକୁ ଅତି ଆଦରରେ ବେଢ଼ାଇ ଧରିଥିବା ବିରାଟକାୟ ପତ୍ରମାନଙ୍କ ଦ୍ୱାରା ଶୋଭିତ ମନିପ୍ଲାଣ୍ଟ୍ ଲତାଟି। ଆଖିରେ ପଡ଼ିଯିବା ଭଳି ସେମାନଙ୍କର ଅବସ୍ଥିତି। ସେଇ ମନିପ୍ଲାଣ୍ଟ୍ ପତ୍ରମାନଙ୍କର ସମୃଦ୍ଧ ଆକାର ପ୍ରକାର ଦେଖି ସମସ୍ତେ କହନ୍ତି, "ତୁମର ବହୁତ ଟଙ୍କା ଆସିବ। ଦେଖୁନ, ମନିପ୍ଲାଣ୍ଟ୍ ଗଛ ସେକଥା କେମିତି ଜଣାଇଦେଉଛି। ଏତେ ବଡ଼ ବଡ଼ ପତ୍ର ସହଜରେ ଦେଖାଯାଏ ନାହିଁ।" ଅନ୍ୱେଷା ଏକଥା ଶୁଣି ହସିଦେଇ କହେ, "ଟଙ୍କା ଆସିବ କ'ଣ ? ଆସିସାରିଲାଣି ତ - ଖାଲି ଆମ ଘରେ ଏତେ ଟଙ୍କା ରଖିବାର ଜାଗା ନାହିଁ ବୋଲି ଦାଣ୍ଡରେ ଆଣି ପୋତି ଦେଇଛୁ। ସେଇ ଟଙ୍କା ଏବେ ଗଛରେ ଫଳୁଛି।" ଅନ୍ୱେଷାର ସାନ ଭଉଣୀ ତନିଷା କହେ, "ମୋ ଅପା ଆଉ ଅନିମେଷ ଭାଇଙ୍କ ମନ ଯେମିତି ବଡ଼, ତାଙ୍କ ଗଛର ପତ୍ର ବି ସେମିତି ବଡ଼।"

ଘରର ଅର୍ଥ ଇଟା, ସିମେଣ୍ଟ, ପଥରରେ ଗଢ଼ା ଚାରି କାନ୍ଥର ଏକ ବନ୍ଧନୀ ନଥିଲା ସେମାନଙ୍କ ପାଇଁ। ସେମାନଙ୍କ ଘର ଥିଲା ତାଙ୍କ ହୃଦୟରେ। ହୃଦୟରେ ସ୍ଥାନ

ରହିଥିଲେ ଘରଟିର ସ୍ଥୂଳ ଆକାର ଯାହା ହୋଇଥିଲେ ମଧ୍ୟ ସାତପର ମଣିଷଙ୍କୁ ବି ଜାଗା ଧରିଯାଏ ସେଥିରେ। ହୃଦୟ ସଙ୍କୀର୍ଣ୍ଣ ହୋଇଥିଲେ, ସ୍ୱାର୍ଥପର ହୋଇଥିଲେ, ଆପଣାଜନଙ୍କୁ ବି ଜାଗା ଧରେନାହିଁ। ଭାଇଙ୍କର କ୍ୱାର୍ଟର୍ସକୁ ହିଁ ଏଯାବତ୍ ଅନ୍ୱେଷା ନିଜର ଘର ବୋଲି ଭାବି ଆସିଥିଲା। ତାକୁ ହିଁ ଯଥାସମ୍ଭବ ସଜାଇ ରଖିଥିଲା - ସ୍ନେହ, ମମତା, ପ୍ରେମ, ଦୟା, କରୁଣା, କ୍ଷମା ଆଉ ଆନ୍ତରିକତାରେ - ଅନାବିଳ ଭଲ ପାଇବାରେ। ସେ ଘର ସେମାନଙ୍କର ଅତି ଆପଣାର ଥିଲା। ଘରର ସତ୍ତା ସେମାନଙ୍କ ପ୍ରତି ବିଶ୍ୱସ୍ତ ଥିଲା । ସେଇଥିପାଇଁ ବିଶେଷ କିଛି ଅଘଟଣ ଘଟି ନଥିଲା ସେ ଘରେ। ଥରେ ଦି'ଥର ଚୋର ପଶିଥିଲା - କିନ୍ତୁ ପ୍ଲାଷ୍ଟିକ୍, ବାଲ୍‌ଟି,ମଗ୍, ଅଗଣା ତାରରେ ଶୁଖୁଥିବା ନିତିପିନ୍ଧା ଲୁଗା ବ୍ୟତୀତ ଆଉ କିଛି ନେବାର ସୁଯୋଗ ପାଇନଥିଲା । ପିଲାମାନେ ସେଇ ଘରୁ ପ୍ରଥମେ ସ୍କୁଲ୍ ଯିବା ଆରମ୍ଭ କରିଥିଲେ। ସେଇଠି ସେମାନଙ୍କର ସ୍କୁଲ୍, କଲେଜ୍ ପାଠପଢ଼ା ସରିଥିଲା। ଆହୁରି କେତେ କେତେ ସୁନ୍ଦର ଘଟଣା ଘଟିଥିଲା ସେ ଘରେ। ଅନ୍ୱେଷା ଓ ଅନିମେଷଙ୍କର ସୁଖମୟ ଦାମ୍ପତ୍ୟର ସବୁଜ ସୁନ୍ଦର ଅଧ୍ୟାୟଟି ସେଇଠି ଅତି ଚମତ୍କାର ଭାବରେ ରୂପାୟିତ ହୋଇଥିଲା। ତେଣୁ ସେମାନେ କୃତଜ୍ଞ ଥିଲେ ସେ ଘର ପ୍ରତି। ସେଇଥିପାଇଁ ସରକାରୀ ବ୍ୟବସ୍ଥାକୁ ଅପେକ୍ଷା ନ କରି ନିଜ ଖର୍ଚ୍ଚରେ ଆବଶ୍ୟକ ମୁତାବକ ମରାମତି କରାଇବାଠାରୁ ଆରମ୍ଭ କରି ରଙ୍ଗ କରିବା ଯାଏ ନିଜେ ହିଁ କରିନେଉଥିଲେ।

ସେ ଘରର ପରିସର ବାହାରକୁ କ୍ୱଚିତ୍ ଯାଉଥିଲା ଅନ୍ୱେଷା। ଅବସର ସମୟରେ ସାହି ପଡ଼ିଶାର କାହା ଘରକୁ ଯାଇ ଏଣୁ ତେଣୁ ବାଜେ ଗପକରିବାକୁ ଭଲପାଉନଥିଲା ସେ। ତା' ବୋଲି ଏକୁଟିଆ ବାହାରା ହୋଇ ରହୁନଥିଲେ ସେମାନେ। ପଡ଼ୋଶୀମାନଙ୍କର ଭଲମନ୍ଦରେ ସବୁଠୁ ଆଗ ଯାଇ ସେମାନେ ଠିଆ ହେଉଥିଲେ। ଅଭାବ, ଅସୁବିଧା, ଭଲମନ୍ଦରେ ନିଃସଙ୍କୋଚରେ ସମସ୍ତେ ପହଞ୍ଚି ଯାଉଥିଲେ ଅନିମେଷ ଓ ଅନ୍ୱେଷାଙ୍କ ଘରେ। ଝିଅଦେଖା ପାଇଁ, ଝଗଡ଼ା ମେଣ୍ଟାଇବା ପାଇଁ ତାଙ୍କ ଘର ଭଳି ସୁବିଧା ଜାଗା ଆଉ ନଥିଲା। କିଏ ଅଭିମାନ କରି ଘରୁ ଚାଲି ଆସିଲା ତ ସେଇଠି ଯାଇ ପହଞ୍ଚୁଥିଲା। ଅନିମେଷଙ୍କ ବନ୍ଧୁମାନେ କେବେ କେବେ ଭୋଜି କରୁଥିଲେ ସେ ଘରେ, ତ କେବେ ଅନ୍ୱେଷାର ବାନ୍ଧବୀମାନେ। ସମସ୍ତଙ୍କ ପାଇଁ ନିଶ୍ଚିତ ଆଶ୍ରୟର, ନିଶ୍ଚିତ ଭରସାର ଥିଲା ସେ ଘର। ସାହାଯ୍ୟ, ସହଯୋଗର ହାତଟିଏ ବଢ଼ାଇଦେବା ପାଇଁ ସବୁବେଳେ ପ୍ରଚୁର ଅର୍ଥର ଆବଶ୍ୟକତା ନଥାଏ; ସ୍ନେହ, ସହାନୁଭୂତିରେ ଭରପୂର ମନଟିଏ ବି କିଛି କମ୍ ନୁହେଁ। ସେଇଥିପାଇଁ ଅନ୍ୱେଷାର ନିୟମିତ ଅତିଥି କିଛି ଥିଲେ। ଧୁଡୁଧୁଡ଼ିଆ ଭିକାରୀ ବୁଢ଼ାଟିଏ, ଯାହାକୁ ଗଣ୍ଡାଏ ଖାଇବାକୁ ନ ଦେଲେ ସେ ଉଠିବ ନାହିଁ ଦୁଆରୁ। ତାକୁ ଦେଖିଲେ ସମସ୍ତେ ଥଟ୍ଟା କରି ଅନ୍ୱେଷାକୁ କହୁଥିଲେ, "ହେଇଟି, ତମର ବୁଢ଼ାପୁଅ

ଆସିଗଲେ, ଖୁଏଇ ପିଏଇ ବିଦାକରିବ ଯାଅ।" ଆଉ କେତେ ଜଣ ଭିକାରୀ ମଧ ନିୟମିତ ଆସନ୍ତି, ଭିକ ପାଇବାକୁ ଯେତିକି ନୁହେଁ - ଅନ୍ୱେଷାକୁ ଥରେ ଦେଖିଯିବାକୁ। ତାଙ୍କ ଭଳି ଲୋକମାନଙ୍କର ସୁଖଦୁଃଖ, ଭଲମନ୍ଦର କଥା କେତେ ଜଣ ପଚାରନ୍ତି ପାଖରେ ବସାଇ ? କଦଳୀବାଲା, ବିସ୍କୁଟ୍‌ବାଲା, ମାଛବାଲା ତ ଆସନ୍ତି; ଏମିତି କି ଗୁଜରାଟୀ ଶାଢ଼ିବାଲୀ ଜଣେ ବି ଅଧିକାଂଶ ସମୟରେ ଆସି ପହଞ୍ଚିଯାଏ – ଅଝଟ ଲଗାଏ ତା' ପାଖରୁ କିଛି କିଣିବାକୁ। ଅନ୍ୱେଷା ଯାହା ପସରାର 'ବଉନି' କରିଦେବ ତା'ର ଭଲ ବିକ୍ରି ହେବ ବୋଲି ସେମାନେ ବିଶ୍ୱାସ କରନ୍ତି। ଧୂ ଧୂ ଖରାବେଳଟାରେ ଗୁଜରାଟୀ ଶାଢ଼ିବାଲୀ ଆସି ପହଞ୍ଚିଯିବ। ଶାଢ଼ି ନ ରଖିଲେ ନାଇଁ - ଦେଖିବାକୁ ତ ମନା ନାହିଁ। ଯେତେବେଳେ ସୁବିଧା ହେବ, ରଖିବ। ଅନ୍ୱେଷାର ଯଦି କିଛି ପସନ୍ଦ ହୁଏ, ତ ସେଇଟା ସେ ରଖିଦେଇପାରେ। ଖାଲି ବଉନି ବାବଦକୁ ପାଞ୍ଚ ଟଙ୍କା ଖଣ୍ଡେ ତା' ହାତକୁ ବଢ଼ାଇଦେଲେ ହେଲା। ତା'ର ଏଇ ଗଭୀର ବିଶ୍ୱାସ ଦେଖି ଅନ୍ୱେଷା ହସିଦେଇ କହେ, "ମୁଁ ଯଦି ଏମିତି ଲକ୍ଷ୍ମୀମନ୍ତ ହୋଇଥାଆନ୍ତି, ଏ ପର୍ଯ୍ୟନ୍ତ କୋଉଠି ଟିପେ ଜାଗା କି ଘର ନ କିଣି ରହିଥାଆନ୍ତି ? ଟଙ୍କା, ସୁନା, ଧନ ସମ୍ପତ୍ତି କିଛି ନ ଥାଇ ମୁଁ କି ଲକ୍ଷ୍ମୀମନ୍ତ କହିଲୁ ?" ସବିତା ନାମ୍ନୀ ସେଇ ଗୁଜରାଟୀ ସ୍ତ୍ରୀ ଲୋକଟି ବିଶ୍ୱାସର ହସଟିଏ ହସିଦେଇ କହେ, "ସେଗୁଡ଼ା ତୋର କ'ଣ ହେବ ମା' ? ତୋ ଘରକୁ ଆସିଲେ ଯେମିତି ଲାଗେ, ଆଉ କୋଉଠି ବି ସେମିତି  ଲାଗେନାହିଁ। ଭାରି ଲକ୍ଷ୍ମୀମନ୍ତ ଘର ତୁମର।"

ଅନିମେଷଙ୍କୁ କ୍ୱାଟର୍ସଟିଏ ମିଳିବାରେ ଯାହା ଯାହା ଯୋଗ୍ୟତା ଦରକାର, ସବୁ ରହିଥିଲା। ତାଙ୍କ ସାଙ୍ଗରେ ଚାକିରି ଆରମ୍ଭ କରିଥିବା ପ୍ରାୟ ସମସ୍ତେ କୋଉ କାଳରୁ ସରକାରୀ କ୍ୱାଟର୍ସ୍ ପାଇସାରିଥିଲେ। ତାଙ୍କର ବହୁ ପଛରେ ଚାକିରି କରିଥିବା ବ୍ୟକ୍ତିମାନେ ମଧ ସରକାରୀ କ୍ୱାଟର୍ସ୍‌ମାନ ପାଇ ତାଙ୍କ ଆଖପାଖରେ ରହୁଥିଲେ। କେଜାଣି କାହିଁକି ଅନିମେଷଙ୍କ ନାମରେ କ୍ୱାଟର୍ସଟିଏ ହୋଇପାରୁନଥିଲା। ଆଶାୟୀ ପ୍ରାର୍ଥୀଙ୍କ ମଧରେ ତାଙ୍କର ନାମ ପ୍ରଥମ ଦଶ ପନ୍ଦର ଜଣଙ୍କ ମଧରେ ଅନେକ ବର୍ଷ ଧରି ରହିଆସିଥିଲା। ତା'ସତ୍ତ୍ୱେ ତାଙ୍କୁ କେଉଁ ଅଜଣା କାରଣରୁ ଘରଟିଏ ମିଳୁନଥିଲା। ତାଙ୍କର ମଧ ଜିଦ୍ ଥିଲା- ଉଚିତ ମାର୍ଗରେ, ସତ୍‌ପଥରେ ଥାଇ ନିଜର ନ୍ୟାଯ୍ୟ ଅଧିକାର ପାଇବା ପାଇଁ ଅପେକ୍ଷା କରିବେ। ଅନ୍ୟମାନଙ୍କ ଭଳି କିଛି ଅନୁଚିତ ମାର୍ଗ ସେ ଅବଲମ୍ବନ କରିବେ ନାହିଁ। ଅନ୍ୱେଷା କେବେ କେବେ ବ୍ୟସ୍ତ ହେଲେ ଭାଇ ଆଶ୍ୱାସନା ଦିଅନ୍ତି, "କାହିଁକି ବ୍ୟସ୍ତ ହେଉଚୁ ? ତୁ କ'ଣ ଜଙ୍ଗଲରେ ଅଛୁ ? ତୁମର ଯେ ପର୍ଯ୍ୟନ୍ତ ସୁବିଧା ନହୋଇଛି, ଏଇଠି ଥାଅ।" ନିଜର ଜାଗା କିଣି ଘରଟିଏ କରିବା କଥା ସେମାନେ ଭାବି ନଥିଲେ। ଅନିମେଷଙ୍କର ଯାହା ରୋଜଗାର, ସେଥିରେ ଏବେଠାରୁ ଘରଟିଏ କରିବାକୁ ଚାହିଁଲେ କେତେ କ'ଣ

ଅସୁବିଧା ହୋଇଯିବ। ପିଲାମାନେ ଭଲ ପଢୁଛନ୍ତି। ସେମାନଙ୍କର ଜୀବନ ଗଢ଼ିହେବାର ସମୟରେ ନାନା ପ୍ରକାର ଆବଶ୍ୟକତା ରହିଛି। ସେମାନଙ୍କର ଶିକ୍ଷା, ଦୀକ୍ଷା, ଖାଦ୍ୟପେୟ, ପୋଷାକରୁ କାଟି ଭବିଷ୍ୟତର ଘର ପାଇଁ ସଞ୍ଚୟ କରିବାରେ ବି ବିଶ୍ୱାସ କରୁନଥିଲେ ଅନିମେଷ ଓ ଅନ୍ୱେଷା। ବର୍ତ୍ତମାନରେ ହିଁ ବିଶ୍ୱାସ କରୁଥିଲେ ଦୁହେଁ। ତେଣୁ ବର୍ତ୍ତମାନଟାକୁ ଯେତେ ଦୂର ସୁନ୍ଦର ଓ ସାର୍ଥକ କରାଯାଇପାରେ ସେଥିପାଇଁ ଯତ୍ନବାନ୍ ଥିଲେ। ସେମାନଙ୍କର ଭବିଷ୍ୟତ ତ ସେମାନଙ୍କ ପିଲାମାନେ। ପିଲାମାନଙ୍କୁ ଉପଯୁକ୍ତ ମଣିଷ କରିପାରିଲେ ହିଁ ଜୀବନରେ ଶାନ୍ତି ପାଇବେ ସେମାନେ।

ଅବଶେଷରେ କିନ୍ତୁ ସେମାନଙ୍କ ପାଇଁ ଚିନ୍ତାକରିବାର ସମୟ ଆସିଗଲା। ଭାଇଙ୍କର ଅବସର ନେବାର ବେଳ ପାଖେଇ ଆସିଲା। ଏକୋଇଶ ବର୍ଷ ଧରି ଅନିମେଷ ରହି ଆସୁଥିବା କ୍ୱାର୍ଟର୍ସ୍‌ଟିକୁ ଏଥର ଛାଡ଼ିବାକୁ ହେବ। ନିଷ୍ଚିତ ଆଶ୍ରୟଟିଏ ଥିଲା ବୋଲି ନିଜର ଘରଟିଏ ପାଇଁ ଗଭୀର ଭାବରେ ଚିନ୍ତାକରିବାକୁ ପଡ଼ିନଥିଲା କେବେ। ଅନ୍ୱେଷାକୁ କିଛି ନ ଜଣେଇଲେ ମଧ୍ୟ ଅନିମେଷଙ୍କର ମୁହଁ ଦେଖିଲେ ସେ ବୁଝିପାରେ ତାଙ୍କର ମାନସିକ ବ୍ୟସ୍ତତାର କଥା; ସିଏ ନିଜେ ମଧ୍ୟ ଉଦାସ ହୋଇଯାଏ। ତାଙ୍କର ଶୁଖିଲା ମୁହଁକୁ ଚାହିଁ ସେ ପଚାରିପାରେନା, "ଘର କଥା କ'ଣ ହେଲା ?" ସିଏ ତ ଜାଣେ, ସବୁଦିନ ନିୟମ କଲା ପରି ନିର୍ଦ୍ଦିଷ୍ଟ ବିଭାଗକୁ ଯାଇ ସେ କ୍ୱାର୍ଟର୍ସ୍ କଥା ବୁଝନ୍ତି। ଖୁବ୍ ଶୀଘ୍ର ମିଳିଯିବାର ଆଶ୍ୱାସନା ପାଆନ୍ତି। ତା'ପର ଦିନ, ପର ଦିନର ତା'ପର ଦିନ ଗଲାବେଳକୁ ବି ସେଇ ଏକା କଥା। ତାଲିକାରେ କେତେବେଳେ ତାଙ୍କ ନାମ ତିନି, ଚାରିକୁ ଚାଲିଯାଏ ତ ପୁଣି କେବେ ଖସିଯାଏ କୋଡ଼ିଏ ପଚିଶକୁ। ଶୁଭେଚ୍ଛୁ ବନ୍ଧୁ କେହି ପରାମର୍ଶ ଦେଉଥିଲେ କିଛି ପଇସାପତ୍ର ଖର୍ଚ୍ଚ କରିବାକୁ। ଲାଞ୍ଚ ଦେଇ କୌଣସି କାର୍ଯ୍ୟ କରିବେ ନାହିଁ ବୋଲି ରୋକ୍‌ଠୋକ୍ ମନା କରିଦେଲେ ଅନିମେଷ। ବନ୍ଧୁବାନ୍ଧବ, ଚିହ୍ନା ପରିଚୟରେ ଏଭଳି ପ୍ରଭାବଶାଳୀ ଲୋକ ରହିଥିଲେ, ଯେଉଁମାନଙ୍କର ପଦିଏ କଥାରେ କାମଟି ହୋଇଯାଇଥାଆନ୍ତା। ସେ ପ୍ରଚେଷ୍ଟା ମଧ୍ୟ କଲେନାହିଁ। କେଜାଣି କାହିଁକି, ତାଙ୍କର ବିଶ୍ୱାସ ଥିଲା, ଡେରିରେ ହେଉ ପଛେ, ସଳଖ ବାଟରେ ତାଙ୍କ କାମଟି ହୋଇଯିବ। ଏ ପୃଥିବୀରୁ ସବୁତକ ଭଲପଣ ସରିଯାଇନାହିଁ। ସ୍ୱାର୍ଥପର, ଆତ୍ମକେନ୍ଦ୍ରିକ, ବାସନାସର୍ବସ୍ୱ, ମତଲବ୍‌ବାଜ ମଣିଷମାନଙ୍କ ଭିତରେ ଏବେ ବି କିଛି ସଚ୍ଚୋଟତା ହୁଏତ ଅବଶିଷ୍ଟ ରହିଥିବ।

ନା- ସେଭଳି କିଛି ଘଟିଲା ନାହିଁ। ଭାଇ ଅବସର ଗ୍ରହଣ କଲେ। ତା'ପରେ ତାଙ୍କର କ୍ୱାର୍ଟର୍ସ୍‌ଟିକୁ ବେଶିଦିନ ରଖିବା ଉଚିତ ହେବନାହିଁ। ତାଙ୍କର ପେନ୍‌ସନ୍ ଇତ୍ୟାଦି ମିଳିବାରେ ବିଳମ୍ବ ହୋଇଯିବ। ଏତେବର୍ଷ ଧରି ଅକାତର ଭାବରେ ସେମାନଙ୍କୁ ଯେଉଁ ନିଶ୍ଚିତ ଆଶ୍ରୟର ସୁବିଧାଟିଏ ଭାଇ ଦେଇଆସିଛନ୍ତି, ତାଙ୍କ ପ୍ରତି ଆଜୀବନ କୃତଜ୍ଞ ରହିବେ

ଅନିମେଷ ଓ ଅନ୍ୱେଷା। ଭାଇଙ୍କୁ କୌଣସି ପ୍ରକାର ଅସୁବିଧାରେ ପକାଇବେ ନାହିଁ।

ଘରଟିକୁ ଛାଡ଼ିବା କଥା ଭାବିବାମାତ୍ରେ ବିଷଣ୍ଣ ହୋଇପଡ଼ିଲା ଅନ୍ୱେଷା। ଏଡ଼େ ବଡ଼ ପୃଥିବୀରେ ଏଇ ଦୁଇ ବଖରାର କ୍ୱାଟର୍ସଟି ତ ତାଙ୍କ ପରିବାରର ନିଶ୍ଚିତ ଆଶ୍ରୟସ୍ଥଳ ଥିଲା। ଯୁଆଡ଼େ ଗଲେ ମଧ ଏଇ ଶାନ୍ତିର ନୀଡ଼ଟିକୁ ଫେରିଆସିବା ପାଇଁ ମନ ବ୍ୟାକୁଳ ହୁଏ। ଏ ଘରର କାନ୍ଥ, ବାଡ଼, କବାଟ, ଝରକା, ଚଟାଣ ସବୁଥିରେ ଯେମିତି ଏକ ଆପଣାପଣର ଭାବ ଲାଗି ରହିଛି। ରୋଷେଇଘରେ ମହାଲକ୍ଷ୍ମୀଙ୍କର କୃପାଦୃଷ୍ଟି। କେହି ଜଣେ ଭୋକିଲା ହୋଇ ଯାଏନାହିଁ ଏ ଘରୁ। ଏଠି କାହାକୁ ଅବାଞ୍ଛିତ, ଅବହେଳିତ ମନେହୁଏ ନାହିଁ। ସମସ୍ତଙ୍କୁ ଆଶ୍ରା, ଭରସା, ବିଶ୍ୱାସ ଆଉ ଆଶ୍ୱାସନା ଯୋଗାଇ ଦେଇ ପାରୁଥିବା ଏଇ ପ୍ରିୟ ପରିସରକୁ ଛାଡ଼ି, କୁଆଡ଼େ ଯିବେ ସେମାନେ ? ଏଭଳି ଆଶ୍ରୟଟିଏ ସତରେ କୋଉଠି ଆଉ ରହିଛି ସେମାନଙ୍କ ପାଇଁ ? ଅନ୍ୱେଷା ମୁହଁ ଶୁଖେଇ ରହିଲେ ଅନିମେଷ ଗମ୍ଭୀର ହୋଇଯାଉଥିଲେ। ଅବସୋସ୍‌ଭରା କଣ୍ଠରେ କହୁଥିଲେ, "ମୋ ଦ୍ୱାରା କିଛି ହୋଇପାରିବ ନାହିଁ। ତୁମର ସବୁ ସାଙ୍ଗମାନେ ନିଜର ବଢ଼ିଆ ବଢ଼ିଆ ଘର କରି କେଡ଼େ ଆରାମରେ, କେଡ଼େ ନିଶ୍ଚିନ୍ତରେ ଅଛନ୍ତି। ତୁମକୁ ମୁଁ ଏପର୍ଯ୍ୟନ୍ତ ସେତିକି ନିଶ୍ଚିନ୍ତତା ଦେଇପାରିଲିନାହିଁ।" ଏ କଥା ଶୁଣିଲେ ଅନ୍ୱେଷା ଲେଉଟେଇ କହେ, "ସବୁ ଦୋଷ ତ ମୋର। ମୁଁ ଯଦି ସୁଗୃହିଣୀ ହୋଇଥାଆନ୍ତି, ତୁମେ ଏ ପର୍ଯ୍ୟନ୍ତ ଘର ନ କରି ରହିଥାଆନ୍ତ ? ମୋର ହାତରେ କି ଗୋଡ଼ରେ ଲକ୍ଷ୍ମୀ ନାହାନ୍ତି ବୋଲି ଏଭଳି ଅବସ୍ଥା ଆମର। ତୁମ ସାଙ୍ଗରେ ଚାକିରି ଆରମ୍ଭ କରିଥିବା ତୁମର ବନ୍ଧୁମାନଙ୍କ ମଧ୍ୟରୁ ବି ତ ବହୁତ ଜଣ ନିଜର ଘର କରିସାରିଲେଣି।"

– "ହାତ ଗୋଡ଼ରେ ଲକ୍ଷ୍ମୀ ଆମର ଦରକାର ନାହିଁ। ଲକ୍ଷ୍ମୀ ଆମର ହୃଦୟରେ ଥାଆନ୍ତୁ। ଶୁଣ – ଆଉ ସରକାରୀ କ୍ୱାଟର୍ସର ଆଶା ରଖିବା ନାହିଁ। ଭଡ଼ାଘରଟିଏ ଦେଖି ଖୁବ୍ ଶୀଘ୍ର ଚାଲିଯିବା।" ଅନିମେଷ କହିଥିଲେ।

ସ୍ୱାମୀଙ୍କ ମନରେ କଷ୍ଟ ନ ଦେବା ପାଇଁ ଅନ୍ୱେଷା ତାଙ୍କ କଥାରେ ସମ୍ମତ ହୋଇଥିଲେ ବି ଭିତରେ ଭିତରେ ବହୁତ କଷ୍ଟ ପାଉଥିଲା ନିଜେ। ଭଲ ମଣିଷଟେ, ସଚ୍ଚୋଟ ମଣିଷଟେ କାହିଁକି ସବୁଠି ଅବହେଳିତ, ଆପାଙ୍‌କ୍ତେୟ ହୋଇ ରହିଯାଏ ଏ ପୃଥିବୀରେ ! ନିଜ କର୍ତ୍ତବ୍ୟରେ ସାମାନ୍ୟତମ ନିଷ୍ଠା ନଥିବା ଲୋକମାନେ କଳେ, ବଳେ କୌଶଳେ ନିଜ ନିଜର କାର୍ଯ୍ୟ ହାସଲ କରିପାରୁଥିବାବେଳେ ଅନିମେଷଙ୍କ ଭଳି ନିଷ୍ଠାପର ମଣିଷଟି ତାଙ୍କର ନ୍ୟାଯ୍ୟ ପ୍ରାପ୍ତିରୁ ବଞ୍ଚିତ ହେବେ କାହିଁକି ? ଏ କାହିଁକିର ଉତ୍ତର କାହାଠାରୁ ପାଇବ ବୋଲି ଅନ୍ୱେଷା ଆଶା କରୁନଥିଲା। ଅନିମେଷଙ୍କର ଜୀବନ ସହିତ ଯେଉଁଦିନଠୁ ତା' ଜୀବନ ସାମିଲ୍ ହୋଇଯାଇଛି – ଉଭୟଙ୍କର ସୁଖଦୁଃଖ, ଭଲମନ୍ଦ

ସବୁ ତ ଏକାକାର ହୋଇଯାଇଛି । ଅନିମେଷ ସବୁବେଳେ ଚେଷ୍ଟାକରିଥାଆନ୍ତି କୌଣସି ଦୁଃଖର ଧାସ ଅନ୍ୱେଷାକୁ ଯେମିତି ଛୁଇଁନପାରେ । ଅନ୍ୱେଷା ମଧ୍ୟ ପ୍ରାଣପଣେ ଚେଷ୍ଟାକରିଥାଏ ଅନିମେଷଙ୍କର ସମ୍ମାନ ରକ୍ଷା କରିବାକୁ, ତାଙ୍କୁ ସୁଖୀ କରିବାକୁ ।

– "ଜିନିଷପତ୍ର ସବୁ ପ୍ୟାକିଂ କରିବା ଆରମ୍ଭ କରିଦିଅ । ଦୁଇ ତିନି ଦିନ ମଧ୍ୟରେ ଆମେ ଏଇ ଘରଟିକୁ ଛାଡ଼ିଦେବା ।" ଅନିମେଷ ଦିନେ ଘୋଷଣା କଲେ ।

– "ଏ ଘର ଛାଡ଼ି କୁଆଡ଼େ ଯିବା ଆମେ" ? ତୁରନ୍ତ ପଚାରିଦେଇଥିଲା ଅନ୍ୱେଷା ।

– " କୁଆଡ଼େ ହେଲେ ତ ଯିବାକୁ ହେବ । ଏ ଘର ଆଉ ବେଶି ଦିନ ରଖିହେବନି ।" ଅନିମେଷ କହିଥିଲେ ।

– "କ୍ୱାର୍ଟର୍ସ୍ ମିଳିଗଲା କି" ? ଅନ୍ୱେଷା ପଚାରିଥିଲା ।

– "ନା ।" ଅନିମେଷ ସଂକ୍ଷେପରେ ଜବାବ ଦେଇଥିଲେ ।

– "ତେବେ ଆମେ ଯିବା କୁଆଡ଼େ ?" ଅସହାୟ କଣ୍ଠରେ ପଚାରିଥିଲା ଅନ୍ୱେଷା । ତା' ମନରେ କାହିଁକି କେଜାଣି ଛୋଟିଆ ଆଶାଟିଏ ରହିଥିଲା, ସେମାନଙ୍କୁ ନିଶ୍ଚୟ ସରକାରୀ କ୍ୱାର୍ଟର୍ସଟିଏ ଯଥା ସମୟରେ ମିଳିଯିବ । ଏ ପର୍ଯ୍ୟନ୍ତ ତାଙ୍କର ଜରୁରୀ ଆବଶ୍ୟକତା ପଡ଼ିନଥିଲା ବୋଲି ସେକଥା ହୋଇନଥିଲା । ଏମିତି କି ସେମାନେ ରହିଆସୁଥିବା କ୍ୱାର୍ଟର୍ସଟି ମଧ୍ୟ ସେମାନଙ୍କୁ ମିଳିଯାଇପାରେ ବୋଲି ପ୍ରଚ୍ଛନ୍ନ ଆକାଙ୍କ୍ଷାଟିଏ ସେ ପୋଷଣ କରିଆସୁଥିଲା । କିନ୍ତୁ ଅନିମେଷଙ୍କର ଘୋଷଣା ତାକୁ ବିଷଣ୍ଣ କରିଦେଲା । ତା'ର ସେହି ବିଷାଦିତ ରୂପଟି ଅନିମେଷଙ୍କୁ ମଧ୍ୟ ବ୍ୟଥିତ କରିଦେଲା । ତଥାପି ନିଜକୁ ସମ୍ଭାଳିନେଇ ସେ କହିଲେ, "କାହିଁକି ? ଯୋଉମାନେ ସରକାରୀ ଚାକିରି କରିନାହାନ୍ତି, ଯାହାଙ୍କୁ ସରକାରୀ ଘର ମିଳିନାହିଁ – ସେମାନେ କ'ଣ ରହିନାହାନ୍ତି କୋଉଠି ? ତୁମର ଖାଲି ସରକାରୀ ଘର ମିଳିଲେ ଯିବ, ନ ହେଲେ ନାହିଁ ?"

– "ସେ କଥା ମୁଁ କେତେବେଳେ କହିଲି ? ତୁମେ ମୋତେ ଯୋଉଠିକୁ ନେବ, ଯେମିତି ବି ରଖିବ ମୁଁ ରହିବାକୁ ପ୍ରସ୍ତୁତ ଅଛି ।" – ଅନ୍ୱେଷା କହିଲା ।

– "ସତେ ? ହଉ, ଦେଖିବା ଯେ । ପଛରେ ଯଦି ପାଟି କରିବ, ଆଉ କିଛି ଶୁଣାଯିବନି ।" ଅନିମେଷ କହିଲେ । ତାଙ୍କ କଣ୍ଠ ମଧ୍ୟ ହାଲ୍‌କା ଶୁଭୁଥିଲା ଆମୋଦର ସ୍ପର୍ଶରେ ।

ଏକୋଇଶ ବର୍ଷ ରହଣିର ଆୟୋଜନ କିଛି କମ୍ ନଥିଲା ସେଇ ଦୁଇ ବଖୁରିଆ ଘରଟିରେ । ଏତେଗୁଡାଏ ଜିନିଷ କୋଉଠି କେମିତି ଖୁନ୍ଦିଖାନ୍ଦି, ଖଞ୍ଜିଖାଞ୍ଜି ରଖାଯାଇଥିଲା, ପ୍ୟାକିଂ କଲାବେଳକୁ ଜଣାପଡ଼ିଲା । ବଡ଼ ବଡ଼ କାର୍ଟୁନ୍ ଏବଂ ଅଖାରେ ଅନେକ ଜିନିଷ

ରହିଗଲା । ପୁଅଝିଅ ଦୁହେଁ ବାହାରେ ରହି ପଢୁଛନ୍ତି । ସେମାନଙ୍କର ଜିନିଷଗୁଡ଼ିକୁ ମଧ୍ୟ ଯତ୍ନର ସହିତ ସଜାଡ଼ି ରଖାଗଲା । ଛୁଟିରେ ଘରକୁ ଆସି ନିଜ ଜିନିଷ ନ ପାଇଲେ ଅନ୍ୱେଷାକୁ ନୟାନ୍ତ କରିଦେବେ ସେମାନେ । କାଚ ଜିନିଷ, ସଜାସଜି ଜିନିଷ, କଣ୍ଢେଇ, ଆଇନା ଇତ୍ୟାଦି ଖୁବ୍ ସାବଧାନତାର ସହିତ ପ୍ୟାକିଂ ହେଲା । ବହିପତ୍ର, ମ୍ୟାଗାଜିନ୍, ପିଲାଦୁହିଁଙ୍କର ପୁରୁଣା ବହି, ନୋଟ୍‌ଖାତା ଏ ସବୁ ମଧ୍ୟ କିଛି କମ୍ ନଥିଲା ।

ସେମାନେ ଘରଛାଡ଼ିବା କଥା ସାହିପଡ଼ିଶାରେ କାହାରିକୁ ମଧ୍ୟ ଜଣାଇନଥିଲେ । ହୁଏତ କିଏ କେତେ ପ୍ରକାରର ପରାମର୍ଶ, ଉପଦେଶ ଦେଇଥାଆନ୍ତେ, ଯାହା କରିବା ସମ୍ଭବ ନଥିଲା । ଯିବା ଯଦି ନିଶ୍ଚିତ, ଅନ୍ୟମାନଙ୍କ ମନରେ ଯେତେ କମ୍ ସମୟ ଦୁଃଖ ଦିଆଯାଇପାରିବ - ସେଇ ଚେଷ୍ଟା କରିଥିଲେ ସେମାନେ । ଯୋଉଦିନ ଜିନିଷପତ୍ର ବୋହିବା ପାଇଁ ଦୁଆରେ ଆସି ଟ୍ରକ୍ ଠିଆ ହେଲା, ପଡ଼ୋଶୀମାନେ ଆଶ୍ଚର୍ଯ୍ୟ ହେଲେ । ଏମାନଙ୍କର ଜିନିଷପତ୍ର ସବୁ ଯାଉଛି କୁଆଡ଼େ ? ସେମାନେ ଏ ଘର ଛାଡ଼ିଦେଉଛନ୍ତି ଜାଣି ସମସ୍ତେ ଯେମିତି ଆକାଶରୁ ପଡ଼ିଲେ । କି ଅନ୍ୟାୟ କଥା ! ଏମିତି କିଏ ଯାଏ ? ଏତେ ବର୍ଷର ସମ୍ପର୍କର କ'ଣ କିଛି ମୂଲ୍ୟ ନାହିଁ ? ଜିନିଷପତ୍ର ବାନ୍ଧି ଏକାଥରେ ଉଠିଲ, ଚାଲିଲ ! ଜଣକ ପରେ ଜଣେ ପଡ଼ୋଶୀ ଆସି ସେମାନଙ୍କର କ୍ଷୋଭ, ଅଭିମାନ ପ୍ରକଟ କଲେ । କେମିତି ସେମାନଙ୍କୁ ବୁଝାଇହେବ ଯେ ଅନ୍ୱେଷା ହେରିକା ବି କିଛି ଖୁସିରେ ଯାଉନାହାନ୍ତି ଏଠୁ । ଏକୋଇଶ ବର୍ଷର ସମ୍ପର୍କ ଆଉ ବନ୍ଧନର ଚେର ଉପୁଡ଼ାଇବା କ'ଣ ସାଧାରଣ କଥା ହୋଇଛି ! ସେଇ କଷ୍ଟକର କାମଟିକୁ କରିବା ପାଇଁ, ମନର ଦୃଢ଼ତା ଅକ୍ଷୁଣ୍ଣ ରଖିବା ପାଇଁ ସେମାନେ ନୀରବରେ ଶକ୍ତି ସଂଗଠିତ କରିଛନ୍ତି । ଅନ୍ୱେଷା ସବୁଦିନ ପରି ବଗିଚାରେ ପାଣି ଦେଇଛି, ଘାସ ସଫା କରିଛି; ଗଛମାନଙ୍କୁ ଆଦର କରି କହିଛି, "ତୁମମାନଙ୍କୁ ଯତ୍ନ କରିବା ଆଉ ସମ୍ଭବ ହେବନାହିଁ । ଆଜିଠାରୁ ନିଜେ ନିଜେ ବଞ୍ଚିବା ଶିଖ, ଆଉ କେହି ଆସି ତୁମର ଯତ୍ନ ନେବା ପର୍ଯ୍ୟନ୍ତ ।"

ଅନିମେଷଙ୍କୁ ସାହାଯ୍ୟ କରିବା ପାଇଁ ସ୍ୱେଚ୍ଛାକୃତ ଭାବରେ କେତେ ଜଣ ଆଗେଇ ଆସିଥିଲେ । ଟ୍ରକ୍‌ରେ ଜିନିଷପତ୍ର ସବୁ ଚାଲିଗଲା ପରେ ଅଳ୍ପ କିଛି ଜିନିଷପତ୍ର ସହିତ ଅନ୍ୱେଷା ରହିଥିଲା । ଟ୍ୟାକ୍ସି ଆସିଲେ ସେ ଯିବ ବୋଲି ଅପେକ୍ଷା କରିଥିଲା । ଠିକା ଚାକରାଣୀ ପାର୍ବତୀ ବୋଧହୁଏ ବହୁତ ବେଳରୁ ଅପେକ୍ଷା କରିଥିଲା । ଟ୍ରକ୍ ଯିବା ପରେ ପରେ ସେ ପହଞ୍ଚି ସକ୍ ସକ୍ ହୋଇ କାନ୍ଦିବା ଆରମ୍ଭ କଲା । ସକାଳୁ ତା' ଘରକୁ ଗୁଡ଼ାଏ ପୁରୁଣା ଲୁଗା, ବାସନ, ପ୍ଲାଷ୍ଟିକ୍ ଡବା, ବୋତଲ, ଶିଳ, ଚକି, ପୁରୁଣା ଚଉକି, ଟୁଲ୍, ମାଞ୍ଜିଆ - ଏମିତି କେତେ କ'ଣ ବୋହିନେଲାଣି ସେ । ଅନ୍ୱେଷା କାହାରିକୁ କିଛି ଦେବା କଥାରେ ଆଦୌ କୃପଣ ହୁଏନାହିଁ । ପାର୍ବତୀର ଯେତେବେଳେ ଯାହା ଦରକାର - ମୁହଁ

ଖୋଲିବା ମାତ୍ରେ ତାକୁ ମିଳିଯାଉଥାଏ ଅନ୍ୱେଷାଠାରୁ। ଏମିତି ମାଆଟିଏ ଆଉ କୋଉଠୁ ପାଇବ ସେ। ଘରଟିକୁ ଛାଡ଼ିବା ପୂର୍ବରୁ ସୁନ୍ଦର ଭାବରେ ସଫା ସୁତୁରା କରିଦେଇ ଯିବାକୁ ଅନ୍ୱେଷା ଚାହୁଁଥିଲା। ପାର୍ବତୀ ସହିତ ସେ ମଧ୍ୟ ଲାଗିପଡ଼ିଲା ଘରଗୁଡ଼ିକୁ ଝଡ଼ାଝଡ଼ି କରି ସଫା କରିବାରେ। ସବୁ ଅଳିଆ ଗୋଟାଗୋଟି କରି ବାରିଆଡ଼େ ନେଇ ନିଆଁ ଲଗେଇଦେଲା। ପାର୍ବତୀକୁ ମାସକର ଦରମା ସହିତ ଆଉ କିଛି ଅଧିକ ଟଙ୍କା ଦେଇ ବିଦା କଲା ପରେ ଘରେ ତାଲା ଦେଇ ସେ ପଡ଼ୋଶୀମାନଙ୍କ ଘରକୁ ଦେଖା କରିବାକୁ ଗଲା।

– "ଏମିତି କପଟ କଲ ଆମ ସହିତ, ଅନୁ ଅପା? ଏମିତି କ'ଣ କିଏ ଯାଏ?"

– "ତୁମ ସାଙ୍ଗରେ କଟି, କିଛି କଥା କହିବୁନି ଆମେ।"

– " ଆମକୁ ଏତେ ପର କଲୁ, ମା' ଅନୁ, ଏତେ ବଡ଼ କଥା ଆମକୁ ଲୁଚାଇଲୁ? କାହିଁକି ସମସ୍ତଙ୍କୁ ନିଜର କରି ଏତେ ଭଲପାଉଥିଲୁ?"

– "କୋଉଠି ନିଶ୍ଚେ ଘରଦ୍ୱାର କରି ସାରିଲଣି । କାହାକୁ ଟିକେ ଖବର ବି କଲନି? କୋଉଠି ଘର କରିଛ? କେତେ ବଖରା?"

କେତେ ପ୍ରକାରର କଥା। ବିଷଣ୍ଣ ହସ ହସି ସମସ୍ତଙ୍କ କଥାକୁ ସହିଗଲା ଅନ୍ୱେଷା। ଏମାନଙ୍କୁ ସେ କହିପାରିବନି ଯେ କିଛି ଗୌରବର ସହିତ ସେମାନେ ଏଠୁ ଯାଉନାହାନ୍ତି। ଅନ୍ୟାୟ ପାଖରେ, ଅସତ୍ୟ ପାଖରେ ପରାସ୍ତ ହୋଇ ଏ ଘର ଛାଡ଼ି ଯାଉଛନ୍ତି। ସରକାରଙ୍କ ପାଖରୁ ନିଜର ଦରମା ଗଣ୍ଡାକ ଗ୍ରହଣ କରିବା ବ୍ୟତୀତ ଆଉ କୌଣସି କାମରେ ହାତ ନ ଲଗାଉଥିବା ଲୋକଙ୍କୁ ଘର ମିଳୁଛି, ଅସତ୍ ଉପାୟରେ ସରକାରୀ ସମ୍ପତ୍ତିକୁ ହଡ଼ପ କରୁଥିବା ଲୋକଙ୍କୁ ଘର ମିଳୁଛି, ଦୁଇ ଏବଂ ଦୁଇରୁ ଅଧିକ ପତ୍ନୀ ରଖିଥିବା ଲୋକଙ୍କୁ ଘର ମିଳୁଛି, ବାପା, ମା' କିମ୍ବା ସ୍ତ୍ରୀଙ୍କୁ ଦୁରାରୋଗ୍ୟ କୌଣସି ବ୍ୟାଧିର ମିଥ୍ୟା କାରଣ ଦେଖାଇଥିବା ଲୋକଙ୍କୁ ଘର ମିଳୁଛି, ବାପାଙ୍କୁ ବାଡ଼ାଉଥିବା ଲୋକଙ୍କୁ ବି ଘର ମିଳୁଛି; ଅଥଚ ଅନିମେଷଙ୍କ ଭଳି ସତ, ସରଳ ତଥା ନିଷ୍ପାପର ମଣିଷଟିକୁ ନିରାଶ ହେବାକୁ ପଡୁଛି। ଇଏ କ'ଣ କମ୍ ଲଜ୍ଜାର କଥା।

ପଡ଼ୋଶୀମାନଙ୍କ ସହିତ ଦେଖାକରି ସମସ୍ତଙ୍କୁ ଯଥାମାନ୍ୟ ଜଣାଇ ଅନ୍ୱେଷା ପୁଣି ଫେରିଆସିଲା ଘରକୁ । ହଁ - ଏଠୁ ପୂରାପୂରି ଚାଲି ନ ଯିବା ପର୍ଯ୍ୟନ୍ତ ସେଇ ଘରଟାକୁ ତ ସେ ନିଜ ଘର ବୋଲି କହୁଥିବ। ଗ୍ରୀଲ୍‌ରେ ତାଲା ପକେଇ ଭିତରକୁ ଗଲା। ଶୂନ୍ୟଘର- ଜିନିଷପତ୍ର କିଛି ନାହିଁ। କେବଳ ଅନ୍ୱେଷାର ଲୁଗାପଟା ଓ କିଛି ଅଳଙ୍କାର ଥିବା ସୁଟ୍‌କେଶ୍‌ଟିଏ ରହିଛି। ସଉପଟିଏ ଅଛି ବସିବାକୁ। କାନ୍ଥରେ ସେଯାଏଁ ଜଗଜ୍ଜନନୀଙ୍କ

ଫଟୋଟିଏ ଅଛି । ସେଇ ଫଟୋଟିକୁ ଧରି ନୂଆ ବସାଘରେ ପ୍ରବେଶ କରିବ ବୋଲି ସେଇଟିକୁ ସେ ରଖିଦେଇଛି । ଫଟୋଟି ପାଖରେ ଯାଇ ଠିଆ ହେଲା ଅନ୍ୱେଷା । ବିଶ୍ୱଜନନୀଙ୍କ ମୁହଁରେ ଉଚ୍ଛୁଳା ହସର ଉଲ୍ଲସିତ ଭାବ । ଅଭିମାନରେ ଅନ୍ୱେଷାର ଆଖି ଛଳଛଳ ହେଲା । ମନେ ମନେ କହିଲା, "ଆମ ଅବସ୍ଥା ଦେଖି ହସୁଛ ନା ? ବେଶିଗୁଡ଼ାଏ କ'ଣ ତୁମକୁ ମାଗିଛି କେବେ ? ପରିବାରର ମଙ୍ଗଳ କାମନା ରକିଛି, ବିଶ୍ୱକଲ୍ୟାଣ ପାଇଁ ପ୍ରାର୍ଥନା କରିଛି । ପ୍ରଥମ ଥର ଲାଗି ନିଜ ପାଇଁ କିଛି ମାଗିଥିଲି । ତୁମ ନୀରବତା ମୋତେ ବ୍ୟଥିତ କରୁଛି । ହଉ- ତୁମରି ଇଚ୍ଛା ପୂର୍ଣ୍ଣ ହେଉ ।"

ଈଶ୍ୱରଙ୍କୁ କିଛି ମାଗିବାକୁ ଇଚ୍ଛା ହୁଏନି ଅନ୍ୱେଷାର । ସିଏତ ସର୍ବବ୍ୟାପୀ - ପରଂବ୍ରହ୍ମ । କାହା ପାଇଁ କ'ଣ ଦରକାର, ତାଙ୍କଠାରୁ କିଏ ବେଶି ଜାଣିପାରିବ ? ତଥାପି ଅନିମେଷଙ୍କର ବ୍ୟସ୍ତ ବିବ୍ରତ ତଥା ଅସହାୟ ମୁହଁକୁ ଦେଖି ଦିନେ ଏକାନ୍ତରେ, ଗୋପନରେ ପ୍ରାର୍ଥନା କରିଥିଲା ସେ ବିଶ୍ୱଜନନୀଙ୍କୁ, "ମା', ଆମର ଘରଟିଏ ଲୋଡ଼ା, ମୁଣ୍ଡ ଗୁଞ୍ଜିବାର ଆଶ୍ରୟଟିଏ ଦରକାର, ସରକାରୀ ଘରଟିଏ ହେଉ ବା ଭଡ଼ାଘର ଅଥବା ନିଜର ଘରଟିଏ ହେଉ- ଯାହା ଆମର ଏକାନ୍ତ ପ୍ରୟୋଜନ ବୋଲି ତୁମର ମନେହେବ - ତାହା ହିଁ ଆମକୁ ମିଳୁ ।" ସେ ପ୍ରାର୍ଥନା ଯେ ତାଙ୍କ କାନକୁ ଛୁଇଁବନି - ଅନ୍ୱେଷା ଭାବିନଥିଲା । ଏତେଦିନର ନିର୍ଭର ଆଶ୍ରୟସ୍ଥଳରୁ ବିଚ୍ୟୁତ ହୋଇ ଏକ ଅନିଶ୍ଚିତ ଅଜଣା ପରିବେଶ ମଧ୍ୟକୁ ବାଧ ହୋଇ ଯାଉଥିଲାବେଳେ ଈଶ୍ୱରଙ୍କ ପ୍ରତି ଅଭିମାନରେ ତା'ର ଅନ୍ତର ରୁଦ୍ଧ ହୋଇଯାଉଥିଲା ।

ଝରକା ପାଖରେ ଆସି ଠିଆହେଲା ଅନ୍ୱେଷା । ଶୋଇବା ଘରର ଝରକା ପାଖ ଜାଗାଟି ତା'ର ଖୁବ୍ ପ୍ରିୟ ଥିଲା । ସେଇଠି ହିଁ ଟେବୁଲ୍ ଚେୟାର୍ ପକେଇ ସେ ବସୁଥିଲା ଲେଖାପଢ଼ା କରିବାକୁ । ସେଇ ଝରକା ବାଟରେ ଗଛପତ୍ର ଫାଙ୍କରେ ଟିକେ ଆକାଶ ଦିଶୁଥିଲା । ସେଇଠି ବସି ସେ ବଗିଚାର ଗଛପତ୍ରମାନଙ୍କ ସହିତ ବିଭିନ୍ନ ପକ୍ଷୀ, ଫୁଲ, ପ୍ରଜାପତିଙ୍କୁ ଦେଖି ମୁଗ୍ଧ ହେଉଥିଲା । ଝର୍କା ଫାଙ୍କରୁ ଦିଶୁଥିବା ଟିକେ ଆକାଶରୁ କେବେ କେବେ ଛିଟିକି ଆସୁଥିଲା ଜହ୍ନ ଆଲୁଅ । ଜ୍ୟୋତ୍ସ୍ନାର ଜୁଆରରେ ପ୍ଲାବିତ ନ ହେଲେ ବି ତିଳତଣ୍ଡୁଳିତ ସେଇ ଜ୍ୟୋତ୍ସ୍ନାଲୋକ ଯେତେବେଳେ ତା'ର ପଢ଼ାଟେବୁଲ ଡେଇଁ ତା' ବିଛଣାରେ ପଡୁଥିଲା, ଭାରି ରୋମାଣ୍ଟିକ୍ ଲାଗୁଥିଲା ତାକୁ । ଏ ସବୁ ହୁଏତ ସ୍ୱପ୍ନ ହୋଇଯିବ ତା' ପାଇଁ । ସିଏ ଜାଣେନି - ଯୋଉ ଘରେ ଯାଇ ତା'ର ସର୍ବସ୍ୱ ଠୁଳ ହୋଇସାରିଲାଣି - ସେ ଘରର ପରିବେଶ କ'ଣ ! ଶାନ୍ତିରେ ନିଃଶ୍ୱାସ ଟିକିଏ ନେବାର ଦିନ ହୁଏତ ତା'ର ଆଜିଠୁ ସରିଯାଉଛି ।

ଦୀର୍ଘନିଃଶ୍ୱାସ ପକେଇ ସଡପ ଉପରେ ବସିପଡ଼ିଲା ଅନ୍ୱେଷା । ଏଇ ପରିବେଶରେ ଝଙ୍କୃତ ହୋଇଛି ତା' ପିଲାମାନଙ୍କର ଦରୋଟି କଥାର ମଧୁର ଉଚ୍ଚାରଣ । ଏଇଠି ହିଁ

ସେମାନଙ୍କର ବାଗ୍ମିତାର ପରିପ୍ରକାଶ ଘଟିଛି। ସେହି ଶବ୍ଦର ତରଙ୍ଗସବୁ ଏ ଘରର ପରିବେଶରେ ଏବେ ବି ଛପି ରହିଥିବ, ଯେମିତି ପରସ୍ତ ପରସ୍ତ ଚୂନ ଆଉ ରଙ୍ଗର ଆସ୍ତରଣ ତଳେ ଛପିଯାଇଛି ତା' ପୁଅଝିଅଙ୍କର ପ୍ରଥମ ଅକ୍ଷରଶିଖାର ଆବୁରୁ ଝାବୁରୁ ଲିଖନ ଶୈଳୀ ଓ ଛବି ଅଙ୍କାର ମଧୁର ପ୍ରୟାସ। ପୁଅ ଖଡ଼୍‌ଗପୁରରେ ଇଞ୍ଜିନିଅରିଂ ପଢୁଛି, ଝିଅ କଟକରେ ମେଡ଼ିକାଲ୍ କଲେଜ୍‌ରେ ପଢୁଛି। ସେମାନଙ୍କ ପିଲାଦିନର କେତେ ଦୁର୍ଲଭ ପଦାର୍ଥ ଅନ୍ବେଷା ଖୋଜି ପାଇଛି ଜିନିଷପତ୍ର ସଜଡ଼ା ସଜଡ଼ି କରିବାବେଳେ। ପିଲାଦିନେ କାଚଗୋଲି ନେଇ ଖେଳିବାକୁ ଭାରି ଭଲପାଉଥିଲା ପୁଅ। ଖେଳୁ ଖେଳୁ କେମିତି କେଜାଣି ଗିଳିଦେଇଥିଲା କାଚଗୋଲିଟିଏ। ଗିଳିଦେଇ ମାଆକୁ ଆସି ଜଣେଇଥିଲା ସେକଥା। ତା'ପର ଦିନ ଅବଶ୍ୟ ଝାଡ଼ାରେ ବାହାରି ଯାଇଥିଲା ସେ ଗୋଲି। ତଥାପି କାଚଗୋଲିରେ ଖେଳିବାର ଅଭ୍ୟାସ ଯାଇନଥିଲା ପୁଅର । ଦିନେ ଅନିମେଷ ରାଗିଯାଇ ସେଇ କାଚଗୋଲିଗୁଡ଼ିକୁ ଷ୍ଟିଲ୍ ଆଲମାରି ଉପରକୁ ଫୋପାଡ଼ି ଦେଇଥିଲେ। ଭାରି ଆଲମାରିଟି ଆସିବା ଦିନରୁ ତା' ଜାଗାରୁ ଘୁଞ୍ଚୁନଥିଲା ।ସେଇଟି ଉଠିଯିବାରୁ ତା' ପଛପଟୁ ପୁଅର କାଚଗୋଲି ସହିତ ଆହୁରି ଅନେକ ହଜିଲା ଜିନିଷ ପାଇଲା ଅନ୍ବେଷା। ଝିଅର ଅତି ପ୍ରିୟ ରଙ୍ଗବେରଙ୍ଗୀ ପଥରମାଳିର ହାରଟିଏ, କେତୋଟି କ୍ଲିପ୍, ମୁଣ୍ଡକଣ୍ଟା, ପ୍ଲାଷ୍ଟିକ୍ ବୋତଲ ଠିପି, ବୋତାମ, ଏମିତି କେତେ କ'ଣ। ମୂଷା ନେଇ ସାଇତିଥିବ ସେଇଠି। ସେଗୁଡ଼ିକର ଏବେ ଆଉ ଆବଶ୍ୟକତା ନ ଥିଲେ ମଧ ଫୋପାଡ଼ିଦେବାକୁ ମନ ଡାକିଲାନି ଅନ୍ବେଷାର। ପିଲାମାନଙ୍କର ଜିନିଷଗୁଡ଼ିକ ସାଇତି ରଖିଲା ସେ – ଛୁଟିରେ ପିଲାମାନେ ଘରକୁ ଆସିଲେ ସେମାନଙ୍କ ଆଗରେ ତାଙ୍କ ପିଲାଦିନର ନିଧି ସମ୍ପତ୍ତିଗୁଡ଼ିକ ଟେକି ଧରିବ ସେ। ଅଦ୍ଭୁତ ଲାଗିବ ତା'ର ପିଲାମାନଙ୍କୁ ସେସବୁ ଦେଖି। କାଚଗୋଲିତକ ବାପା ଫୋପାଡ଼ି ଦେଇଥିଲେ ବୋଲି ପୁଅ କେତେ କାନ୍ଦିଥିଲା। ଭୁକିକି ଖାଇନଥିଲା। ପିଲାଦିନର ସେଇ ଅମୂଲ୍ୟ ସମ୍ପଦର କିବା ମୂଲ୍ୟ ଏବେ ତା'ର ଇଞ୍ଜିନିଅର୍ ପୁଅ ବା ଡାକ୍ତରାଣୀ ଝିଅ ପାଖରେ।

ଟ୍ୟାକ୍ସି ଆସିଗଲା ବୋଧହୁଏ। ଗେଟ୍ ଖୋଲି ଅନିମେଷ ଆସିଲେ। ଯିବାବେଳ ହୋଇଗଲା। ଅନ୍ବେଷା ନିଜର ପିନ୍ଧାଲୁଗାଟିକୁ ସଜାଡ଼ି ପଣତରେ ମୁହଁ ପୋଛିଦେଲା। ଭିତରର ସମସ୍ତ ବିଷଣ୍ଣତାକୁ ପୋଛିଦେବାକୁ ସେ ଚାହୁଁଥିଲା ଯେମିତି। ଅଗରବତୀ ପ୍ୟାକେଟ୍‌ଟିଏ କାଢ଼ି ଦିଆସିଲି ମାରି କେତୋଟି କାଠି ଜଳାଇଲା। ଚଉଁରାମୂଳକୁ ଯାଇ ଧୂପଟିଏ ରଖି ପ୍ରଣାମ କଲା। ତା'ପରେ ସବୁ ରୁମ୍, ଦାଣ୍ଡ ବାରଣ୍ଡା, ଭିତର ବାରଣ୍ଡା, ରୋଷେଇଘର ସବୁଠି ସେ ଧୂପ ଜାଳି ପ୍ରଣାମ କଲା ଏବଂ କୃତଜ୍ଞତା ଜଣାଇ ବିଦାୟ ମାଗିଲା। ଦିବ୍ୟ ଜନନୀଙ୍କର ଫଟୋଟିକୁ କାନ୍ଥରୁ ଓହ୍ଲାଇ ଛାତିରେ ଜଡ଼ାଇଧରି ସେ

ବାହାରକୁ ଆସିଲା । ବଗିଚାର ଗଛମାନଙ୍କ ଉପରେ ତା'ର ସସ୍ନେହ ଦୃଷ୍ଟି ବୁଲାଇ ଆଣି ଗେଟ୍ ଆଡ଼କୁ ଗଲା । ଅନିମେଷ ସବୁ କବାଟ, ଝରକା ବନ୍ଦ କରି ତାଲା ପକେଇ ତା' ପଛେ ପଛେ ଆସିଲେ । ଘରର ଜିନିଷପତ୍ର ସବୁ ଚାଲିଗଲା ସିନା, ଘରଛାଡ଼ିବା ପ୍ରକ୍ରିୟାର ପରବର୍ତ୍ତୀ ପର୍ଯ୍ୟାୟ ବାକି ରହିଛି । ଟେଲିଫୋନ୍, ବିଦ୍ୟୁତ୍ ଇତ୍ୟାଦି ସଂଯୋଗ ବିଚ୍ଛିନ୍ନ ହେବ । ସରକାରୀ ପଙ୍ଖାଗୁଡ଼ିକ ଖୋଲିନିଆଯିବ । ସମ୍ପୃକ୍ତ ବିଭାଗର ଲୋକ ଆସି ଘରେ ତାଲା ପକେଇବେ ।

ଗାଡ଼ି ପାଖରେ ସେମାନେ ପହଞ୍ଚିଲା ବେଳକୁ ସାହିପଡ଼ିଶାର ଅନେକ ଲୋକ ଆସି ଭିଡ଼ କରିଥିଲେ । ସମସ୍ତଙ୍କୁ ବିଦାୟ ସମ୍ଭାଷଣ ଜଣାଇଲା ଅନ୍ୱେଷା । ଆଖିରୁ ଝରଝର ହୋଇ ଲୁହ ଝରିପଡ଼ିଲା । ସେମାନଙ୍କ ଆଖି ମଧ୍ୟ ଓଦା ଓଦା ଦିଶୁଥିଲା । ଗାଡ଼ି ଛାଡ଼ିଲା ବେଳକୁ ଅନ୍ୱେଷା ଫେରି ଚାହିଁଲା ତା'ର ଏତେ ଦିନର ପ୍ରିୟ ପରିବେଶକୁ, ଅନ୍ତରଙ୍ଗ ମଣିଷମାନଙ୍କୁ । ବିଦାୟ ସମ୍ଭାଷଣସୂଚକ ହଲୁଥିବା ହାତଗୁଡ଼ିକଠାରୁ, ପ୍ରିୟ ପରିଚିତ ସ୍ଥାନଠାରୁ କ୍ରମେ ଦୂରକୁ ଦୂରକୁ ଚାଲିଯାଉଥିବାବେଳେ ତା'ର ଦୃଷ୍ଟି ଝାପ୍‌ସା ହୋଇଯାଇଥିଲା । ଅନିମେଷ ଗମ୍ଭୀର ହୋଇ ବସିଥିଲେ । ଅନ୍ୱେଷା ମଧ୍ୟ ଗୁମ୍‌ସୁମ୍ ହୋଇ ବସିରହିଥିଲା । କୋଉଠିକି ଯାଉଛି, କେମିତି ହୋଇଥିବ ତା'ର ନୂଆ ବସାଘର, ସେ ବିଷୟରେ ଭଲ ଭାବରେ କିଛି ଜଣାନଥିଲା ତାକୁ । କେତେ ସମୟ ଏମିତି ବସିରହିଥିଲା, ତା'ର ଖିଆଲ ନଥିଲା । କେମିତି ଏକ ଅସହାୟପଣ ମଧ୍ୟରେ ବୁଡ଼ିଯାଇଥିଲା ସେ ।

– "ଏଥର ଓହ୍ଲାଅ ।" ଅନିମେଷଙ୍କର ଆହ୍ୱାନରେ ସଚେତନ ହେଲା ଅନ୍ୱେଷା । କୋଉଠିକି ଆସିଲା ସେ ? ଜନଗହଳିପୂର୍ଣ୍ଣ ସହରର କୋଳାହଳଠାରୁ ଅନେକ ଦୂରରେ ନିକାଞ୍ଚନ ସ୍ଥାନଟିଏ ଭଳି ମନେହେଉଛି । ଆଖପାଖରେ ନୂଆ ତିଆରି ହୋଇଥିବା ଏବଂ ତିଆରି ହେବାର ବିଭିନ୍ନ ପର୍ଯ୍ୟାୟରେ ଥିବା ଅଳ୍ପ କେତୋଟି ଘର । ଯେଉଁ ଘର ଆଗରେ ଟ୍ୟାକ୍ସି ରହିଥିଲା, ସେଇଟି ଗୋଟିଏ ଏକମହଲା କୋଠାଘର । ନୂଆଘରଟିଏ – ଅଳ୍ପଦିନ ତଳେ ସେଇ ଘରଟି ପ୍ରତିଷ୍ଠା ହେଇଛି ବୋଧହୁଏ । ଅଧାଶୁଖିଲା ଗେଣ୍ଡୁଫୁଲର ମାଳ ଟଙ୍ଗା ହୋଇଛି ଘରର ଦୁଆର ମୁହଁରେ । ଶୁଖିଲା ଆମ୍ବପତ୍ରର ତୋରଣ ବି ରହିଛି । ଗେଟ୍ ପାଖରେ ପୂର୍ଣ୍ଣକୁମ୍ଭ ରହିଛି । ଫଟୋଟି ସହିତ ଘର ଭିତରେ ପ୍ରବେଶ କଲା ଅନ୍ୱେଷା । ପ୍ରଥମେ ପୋର୍ଟିକୋ, ତା'ପରେ ଗୋଟେ ବଡ଼ ରୁମ୍, ତା' ପାଖରେ ଆଉ ଗୋଟେ ବଡ଼ ରୁମ୍, ମଝିରେ ଡାଇନିଂ ପ୍ଲେସ୍, ତା'ପାଖରେ ଷ୍ଟୋର୍ ରୁମ୍ ଆଉ କିଚେନ୍ । ସେପାଖରେ ଆଉ ଗୋଟେ ମଧ୍ୟମ ଆକାରର ରୁମ୍ । ଆଟାଚଡ୍ ଲାଟ୍ରିନ୍ ବାଥ୍ ବି ରହିଛି । ଘରଗୁଡ଼ିକ ବେଶ୍ ଖୋଲା ମେଲା ଲାଗୁଛି । ଝରକାଗୁଡ଼ିକ ବି ବେଶ୍ ବଡ଼ ବଡ଼ । ପ୍ରଚୁର ପବନ

ହେଉଛି ପଙ୍ଖା ନ ବୁଲିଲେ ମଧ୍ୟ। ସବୁ ରୁମ୍‌ରେ ବଡ଼ ବଡ଼ ଚାରିଥାକିଆ ଶେଲ୍‌ଫ୍ ରହିଛି। ପ୍ରଥମ ରୁମ୍‌ର ଥାକରେ ନେଇ ବିଶ୍ୱଜନନୀଙ୍କ ଫଟୋଟି ରଖିଲା ଅନ୍ୱେଷା। ଧୂପ ଲଗାଇ ପ୍ରଣାମ କଲା। ସବୁ ରୁମ୍‌ରେ ଧୂପ ବୁଲାଇ ଆଣିଲା। ପବିତ୍ର ହୋଇଯାଉ ଏ ପରିବେଶ। ଅନିମେଷ ଏବଂ ତାଙ୍କର କେତେଜଣ ସହଯୋଗୀ ସ୍ତୂପୀକୃତ ଜିନିଷପତ୍ର ଖୋଲି ଆବଶ୍ୟକ ପଦାର୍ଥସବୁ ସଜାଡ଼ି ରଖୁଥାଆନ୍ତି। ଅନ୍ୱେଷା ଦେହରେ ଯେମିତି ଟିକିଏ ହେଲେ ଶକ୍ତି ନଥିଲା। ଗଦା ହୋଇ ରହିଥିବା ଜିନିଷପତ୍ରକୁ ଚାହିଁ ଚାହିଁ ଚୁପ୍‌ଚାପ୍ ବସି କ'ଣ ଭାବୁଥିଲା ସେ। ନିଜକୁ ବାସଚ୍ୟୁତ ରିଫ୍ୟୁଜିଙ୍କ ଭଳି ମନେହେଉଥିଲା ତା'ର। ଘରକୁ ନେଇ ମଣିଷ, ନା ମଣିଷ ପାଇଁ ଘର ?– ଘର ପାଇଁ ସବୁ ଜିନିଷପତ୍ରର ଆବଶ୍ୟକତା ରହିଛି ନା ଜିନିଷପତ୍ର ପାଇଁ ଘରର ଆବଶ୍ୟକତା ରହିଛି ? କୋଉଠି ତା'ର ଆପଣାର ପ୍ରିୟ ପରିସର, ଯାହାକୁ ସେ ନିଜର ଭାବିପାରିବ – ଯୋଉଠି ସେ ସ୍ୱସ୍ତିର ନିଃଶ୍ୱାସ ମାରି ନିଶ୍ଚିନ୍ତରେ ଶୋଇଥିବ ? ଏଇ ଖଟ, ବିଛଣା, ଆଲଣା, ଡ୍ରେସିଂଟେବୁଲ୍, ଆଲମାରି, ଟିଭି, ଫ୍ରିଜ୍ – ଏ ସବୁ କ'ଣ ଅନ୍ୱେଷାର ଘର, ନା ଏଇ ଖୋଲା ମେଲା ଲାଗୁଥିବା ବଡ଼ ବଡ଼ କାନ୍ଥର ଆବେଷ୍ଟନୀକୁ ସେ ଘର ବୋଲି କହିବ ? ନିଜକୁ ଏଇ ପରିବେଶ ସହିତ ସମ୍ପୃକ୍ତ କରିନପାରି ଏକ ଉଦାସ ବିଷଣ୍ଣତା ମଧ୍ୟରେ ନିଜକୁ ବୁଡ଼ାଇ ଦେଇ ନୀରବରେ ବସି ରହିଥିଲା ସେ। ନା– ତା'ର ଘରଟିଏ ନାହିଁ – ପୃଥିବୀର କୋଉ କୋଣରେ ବି ଘରଟିଏ ନାହିଁ ତା'ର।

ସନ୍ଧ୍ୟା ସୁଦ୍ଧା ଖଟ, ବିଛଣା, ଆଲଣା, ରୋଷେଇଘରର କିଛି ସାମଗ୍ରୀ ରଖା ହୋଇଗଲା। ଚଳିଲା ଭଳିଆ ସୁବିଧା ହୋଇଗଲେ ପରେ ଧୀରେ ସୁସ୍ଥେ ଅନ୍ୟାନ୍ୟ ଜିନିଷପତ୍ର କାଢ଼ି ସଜାଡ଼ି ରଖାହେବ। ରାତି ପାଇଁ ଖାଦ୍ୟ ବ୍ୟବସ୍ଥା ହୋଇସାରିଛି। ସେମାନଙ୍କର ରାନ୍ଧିବାର ସୁବିଧା ହେବା ପର୍ଯ୍ୟନ୍ତ ସେଇ ପାଖାପାଖି ରହୁଥିବା ଅନିମେଷଙ୍କର ଜଣେ ବନ୍ଧୁଙ୍କ ଘରୁ ଖାଦ୍ୟ ଆସିବ ବୋଲି ସେ କହିଦେଇ ଯାଇଛନ୍ତି । ଆଉ ଜଣେ ପଡ଼ୋଶୀଙ୍କ ଘରୁ ଥର୍ମୋଫ୍ଲାସ୍କରେ ଚା' ଆସିଗଲା। ତାଙ୍କ ଘରୁ ବି ଖାଇବାର ନିମନ୍ତ୍ରଣ। ନା– ନିହାତି ଅପନ୍ତରାରେ ପଡ଼ିନାହାନ୍ତି ସେମାନେ।

ଏତେଗୁଡ଼ାଏ ରୁମ୍‌ରେ ଲାଇଟ୍, ଫ୍ୟାନ୍ ଇତ୍ୟାଦି ଲଗାଇବାକୁ ଡେରି ହେବ। କେବଳ ଶୋଇବା ଘରର ଫ୍ୟାନ୍‌ଟି ଲାଗିପାରିଲା। ବାର୍‌ଲାଇଟ୍ ଲଗାଇବାକୁ ଡେରି ହେବ ବୋଲି ସବୁଠି ବଲ୍‌ବ୍ ଗୋଟେ ଗୋଟେ ଲଗା ହୋଇଗଲା। ଗୁଡ଼ାଏ ସ୍କ୍ରିନ୍ ଦରକାର ଏ ଘର ପାଇଁ। ପୁରୁଣା ବସା ତୁଳନାରେ ଏ ଘରର ଝରକା କବାଟଗୁଡ଼ିକର ମାପ ବଡ଼ ଏବଂ ସଂଖ୍ୟା ଅଧିକ। କାମ ଚଳିବା ପାଇଁ ପୁରୁଣା ସ୍କ୍ରିନ୍ କେତୋଟି ଟାଙ୍ଗି ଦିଆଗଲା। ଆଉ କିଛି ନ ହେଲେ ବି ସ୍କ୍ରିନ୍‌ର ବ୍ୟବସ୍ଥା ଖୁବ୍ ଶୀଘ୍ର କରିବାକୁ ହେବ। ପା'ପୋଛ ବି

ଅଧିକ ଦରକାର ହେବ ଏଠି ।

ଅନିମେଷଙ୍କୁ ସାହାଯ୍ୟ କରିବାକୁ ଆସିଥିବା ବନ୍ଧୁମାନେ ଚାଲିଗଲେଣି କେତେବେଳୁ । ସାରା ଦିନ ଗୁଡ଼ାଏ ପରିଶ୍ରମ କରି ଖୁବ୍ କ୍ଳାନ୍ତ ଦିଶୁଛନ୍ତି ଅନିମେଷ । ଭଲ ଭାବରେ ଗାଧୁଆ ପାଧୁଆ କରି ଆସିଲେ ଚା' ପିଇବେ ବୋଲି ସେ ବାଥ୍‌ରୁମ୍‌ରେ ପଶିଲେ । ଟ୍ୟାପ୍‌ରୁ ପାଣି ପଡ଼ିବାର ଶବ୍ଦ ସହିତ ଅନିମେଷଙ୍କର ଗୁଣୁଗୁଣୁ ଗୀତର ସ୍ୱର ମଧ ଶୁଭୁଛି । ଖୁସି ଅଛନ୍ତି ସେ । ଅନ୍ୱେଷା ଆଦୌ ଖୁସି ହୋଇପାରୁନି । ଚେର ଉପୁଡ଼ି ଯାଇଥିବା ଗଛଟିଏ ଭଳି ଝାଉଁଳି ପଡ଼ିଛି ସେ । ଏଇ ପରିବେଶ ସହିତ ଏଯାଏଁ ନିଜକୁ ସାମିଲ୍ କରିପାରିନି ସିଏ ।

ହଠାତ୍ ଲାଇନ୍ ଚାଲିଗଲା । ଅଜଣା ପରିବେଶରେ ଏଇ ଅନ୍ଧକାର ଅନ୍ୱେଷା ମନରେ ଭୟ ସଞ୍ଚାର କଲା । କ'ଣ କରିବ କିଛି ବୁଝିନପାରି ଠିଆହୋଇପଡ଼ିଲା ସେ । ଟର୍ଚ୍ଚ, ମହମବତୀ, ଏମିତି କି ଦିଆସିଲି କୋଉଠି ଅଛି ସେ ଜାଣିନାହିଁ । ଅଣ୍ଡାଳି ଅଣ୍ଡାଳି ସେ ଶିଡ଼ି ପାଖରେ ପହଞ୍ଚିଲା । ପାହାଚ ପରେ ପାହାଚ ଡେଇଁ ଅନ୍ୱେଷା ଛାତ ଉପରକୁ ଚାଲିଗଲା । ସେଇଠି ପହଞ୍ଚି ପୁଲକିତ ବିସ୍ମୟରେ ଅଭିଭୂତ ହୋଇଗଲା ସେ । ଏଡ଼େ ସୁନ୍ଦର ମୁକ୍ତ ଆକାଶଟିଏ ସେ କେବେ ଦେଖିଥିଲା କି ? ଘର ଭିତର ଅନ୍ଧାରିଆ ଲାଗୁଥିଲେ ମଧ ବାହାରେ ଏବେ ବି କିଛି ଆଲୋକ ଅବଶିଷ୍ଟ ରହିଛି । ସେହି ଆଲୁଅରେ ଜାଣିହେଉଛି ଚାରିଆଡ଼େ ଘେରି ରହିଛି ସବୁଜିମାମୟ ବୃକ୍ଷଲତାର ଅପୂର୍ବ ସମ୍ଭାର । ଅଦୂରରେ ଶସ୍ୟକ୍ଷେତ୍ରରେ ଶ୍ୟାମଳ ଉଲ୍ଲାସର ଢେଉ । ପଶ୍ଚିମ ଆକାଶରେ ସୂର୍ଯ୍ୟାସ୍ତ ପରବର୍ତ୍ତୀ ବର୍ଣ୍ଣିଳ ରୂପଛଟା । ସବୁକିଛି ଅଲୌକିକ ମନେ ହେଉଥିଲା ଅନ୍ୱେଷାର । ଅଳ୍ପ ଦୂରରେ ରହିଛି ଛୋଟ ପାହାଡ଼ଟିଏ । ପାହାଡ଼ର ଉପରି ଭାଗରେ ଥିବା ମନ୍ଦିରଟି ମଧ ଦିଶୁଛି । ସେଇ ମନ୍ଦିରରେ ଅଧିଷ୍ଠିତ ଥିବା ଅଜଣା ଦିଅଁଙ୍କ ଉଦ୍ଦେଶ୍ୟରେ ହାତ ଯୋଡ଼ି ପ୍ରଣାମ ଜଣାଇଲା ଅନ୍ୱେଷା । ଅନିମେଷ ଆସି ତା' ପାଖରେ କେତେବେଳେ ଠିଆ ହୋଇଥିଲେ ସେ ଜାଣିପାରିନଥିଲା । କୈଫିୟତ୍ ଦେବା ଭଳି ସେ କହିଲେ, "ଏପଟରେ ବହୁତ ସମୟ ଇଲେକ୍ଟ୍ରିକ୍ କରେଣ୍ଟ ଚାଲିଯାଏ । କ'ଣ ଆଉ କରିବା ? ଇମର୍ଜେନ୍ସି ଲାଇଟ୍‌ଟେ ଆଣିବାକୁ ହେବ । ଆମ ବଜେଟ୍ ଭିତରେ ଟାଉନ୍‌ରେ ଭଲ ଘରଟିଏ ପାଇବା ଖୁବ୍ ମୁସ୍କିଲ୍ । ପୁଣି ଘରବାଲାଙ୍କର ଦୌରାତ୍ମ୍ୟ ତ ରହିଛି । ନିଜ ମନ ମୁତାବକ ଚଳିବାରେ ବହୁତ କଟକଣା । ଏ ଘରର ମାଲିକ ଖୁବ୍ ଭଲ ମଣିଷ । ଆମ ଖୁସି ଅନୁଯାୟୀ ଚଳିବାରେ କିଛି ଅସୁବିଧା ହେବନାହିଁ ଏଠି । ପାଣିର ସମସ୍ୟା ଆଦୌ ନାହିଁ । ଲାଇନ୍ ପାଣିର ଟାଇମ୍ ଜଗି ପାଣି ସାଇତିବାକୁ ପଡ଼ିବନି । କୂଅ ଅଛି । ମୋଟର୍ ଲାଗିଛି କୂଅରେ । ଉପରେ ପାଣିଟାଙ୍କି ଅଛି । ଯେତେ ଇଚ୍ଛା ସେତେ ପାଣି ଖର୍ଚ୍ଚ କରିପାର । ଘରକୁ ଲାଗି ଅଳ୍ପ ଖାଲି ଜାଗା ବି

ଅଛି। ଆମର ଫୁଲକୁଣ୍ଡଗୁଡ଼ିକୁ ରଖିବା ପରେ ମଧ୍ୟ ମାଟିରେ ଆହୁରି କିଛି ଗଛପତ୍ର ଲଗାଇ ହେବ। ଅଳ୍ପ ଦିନ ଭିତରେ ଆମେ ବଗିଚାଟିଏ କରିଦେବା ଏଇଠି। ବେଶିଗୁଡ଼ାଏ ମାୟା କିନ୍ତୁ ଲଗେଇବନି ଏ ଘରେ। ସେ ଘର ପରି ଏ ଘରେ ମଧ୍ୟ ଆମର ରହଣି ଅସ୍ଥାୟୀ। ଘରବାଲାଙ୍କ ସହିତ କଥା ହୋଇଛି – ଆମର ନିଜର ଘରଟିଏ କରିବା ପର୍ଯ୍ୟନ୍ତ ଆମେ ଏ ଘରେ ରହିପାରିବା। ହଁ – ଏ ଘରେ ତୁମକୁ ଏକୁଟିଆ ଲାଗିବ। ଆମର ସାଙ୍ଗସାଥୀ, ବନ୍ଧୁବାନ୍ଧବ ଏତେ ବାଟ ଆସିବା ସମ୍ଭବ ହେବନି ସବୁବେଳେ। ଆଖପାଖରେ ଯେଉଁମାନେ ଅଛନ୍ତି, ସେମାନଙ୍କ ସହିତ ପରିଚିତ ହେବା। ନା କ'ଣ କହୁଛ ? ବହୁତ ମନଦୁଃଖ ହେଉଛି ନା ?"

ଅନ୍ୱେଷା ହସିଲା। କୋଉ ଭାବରେ ଅନିମେଷଙ୍କୁ କୃତଜ୍ଞତା ଜଣାଇବ ବୁଝିପାରୁନଥିଲା। ଗୋଟିଏ ଆବଦ୍ଧ, ସଂକୀର୍ଣ୍ଣ ପରିବେଶ ଭିତରୁ ଏତେ ଚମତ୍କାର ପରିବ୍ୟାପ୍ତି ମଧ୍ୟକୁ ସେ ତାକୁ ନେଇ ଆସିଛନ୍ତି । ଏ ପର୍ଯ୍ୟନ୍ତ ବୁଝି ପାରିନଥିଲା ବୋଲି ଲୁବ୍ଧ ଅଭିମାନରେ ନିଜକୁ ସନ୍ତାପିତ କରି ରଖିଥିଲା। ଏକୋଇଶ ବର୍ଷ ଯେଉଁଠାରେ କଟାଇଲା – ତା' ଜୀବନର ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ସମୟ ଯୋଉଠି ଅତିବାହିତ କଲା, ସେ ଘର ତା' ପାଇଁ ଅସ୍ଥାୟୀ ଥିଲା। ଏ ସଂସାରରେ ସବୁକିଛି ତ ଅସ୍ଥାୟୀ। ଯେଉଁମାନେ ଅଜସ୍ର ଅର୍ଥ ବ୍ୟୟ କରି ସୁଦୃଶ୍ୟ ଅଟ୍ଟାଳିକାମାନ ନିର୍ମାଣ କରିଛନ୍ତି – ସେ ଘରେ କ'ଣ ସେମାନେ ସବୁଦିନ ପାଇଁ ରହିପାରୁଛନ୍ତି ? ଦିନେ ନା ଦିନେ ତ ସମସ୍ତଙ୍କୁ ଆପଣାର ନିବାସ ଛାଡ଼ି ଚିରନ୍ତନ ପଥର ଯାତ୍ରୀ ହେବାକୁ ପଡ଼ିବ। ତେବେ ସେ ଅସ୍ଥାୟୀ ରହଣି ପାଇଁ ଏତେ ବ୍ୟାକୁଳତା କାହିଁକି ? ଯେତେଦିନ ଯୋଉଠି ରହିବାର ସୁଯୋଗ ମିଳୁଛି – ସେଇ ରହିବାଟାକୁ ସୁନ୍ଦର କରାଯାଉ, ସାର୍ଥକ କରାଯାଉ।

ଅନିମେଷ ଆଉ କିଛି କହିବାକୁ ଯାଉଥିଲେ। ଅନ୍ୱେଷା ପାଟିରେ ହାତ ଦେଇ ଠାରିଲା କିଛି ନ କହିବାକୁ। ଅନିମେଷ ଅନ୍ୱେଷା ପାଖକୁ ଲାଗି ଠିଆ ହୋଇଥିଲେ। ତାଙ୍କ ସଦ୍ୟସ୍ନାତ ଦେହର ବାସ୍ନାରେ ଅନ୍ୱେଷାର ସମସ୍ତ ଅବସନ୍ନତା, ସମସ୍ତ କ୍ଳାନ୍ତି ମେଣ୍ଟିଗଲା। ଆକାଶରେ ଗୋଟି ଗୋଟି ହୋଇ ତାରା ଉଠିସାରିଥିଲେ। ହାଲୁକା ହାଲୁକା ପତଳା ମେଘ ଖଣ୍ଡେ ଖଣ୍ଡେ ଭାସି ବୁଲୁଥିଲେ। ସେଇ ମେଘର ଓଢ଼ଣୀ ତଳୁ ଏଥର ଉଠି ଆସିଲା ଜହ୍ନ। ପରିପୂର୍ଣ୍ଣତାରେ ଭରି ଯାଇଥିଲା ଅନ୍ୱେଷାର ମନ। ଏତେସବୁ ଅପୂର୍ବ ପ୍ରାପ୍ତିର ଅଧିକାରୀ କରିବା ପାଇଁ ହୁଏତ ଦୁଇ ବଖରାର ସରକାରୀ ଘରଟିଏ ସେମାନଙ୍କୁ ମିଳିନଥିଲା। ଯେଉଁମାନେ ଏଥିପାଇଁ କୌଣସି ନା କୌଣସି ପ୍ରକାରେ ଦାୟୀ, ସେ ସମସ୍ତଙ୍କୁ ହୃଦୟର ଗଭୀର କୃତଜ୍ଞତା ଜଣାଇଲା ଅନ୍ୱେଷା ।

# ମୁଠାଏ ମଲ୍ଲୀକଢ଼ି

"ଆଲୋ ହେ ଶୋଭା, ବାଛି ବାଛି ଏଇ ଲହୁଣୀ ପିତୁଳାଟିକୁ ବୋହୂ କରି ଆଣିଚୁ ଯେ ତୋ ପୁଅର ରାଗକୁ ଇଏ ସମ୍ଭାଳି ପାରିବ ?ତାକୁ ତ ଦେଖିଲେ ଲାଗୁଚି କଥା କହୁ କହୁ ସେ କାନ୍ଦି ପକେଇବ ?" ରାତିର ବିଳମ୍ବିତ ପ୍ରହରରେ ପ୍ରାୟ ସମସ୍ତ ନିମନ୍ତିତ ଅତିଥି ଭୋଜିଭାତ ଖାଇ ଚାଲିଯିବା ପରେ ଏଇ ପୃଥୁଳକାୟା ଭଦ୍ରମହିଳା ଜଣକ ଭାରି କାଞ୍ଜିଭରମ୍ ଶାଢ଼ି ଓ ଗଦାଏ ସୁନାଗହଣାରେ ଲଦିହୋଇ ମାଟି ଦୁଲୁକେଇ ଆସି ପହଞ୍ଚିଥିଲେ । ଉପହାର ପ୍ୟାକେଟ୍ ଓ ଫୁଲତୋଡ଼ାର ଗହଳି ଭିତରେ ସନ୍ଧ୍ୟାବେଳୁ କଣ୍ଢେଇ ପରି ସାଜିସୁଜି ବସି ବସି କ୍ଳାନ୍ତ ହୋଇ ପଡ଼ିଥିଲା ସୁମନା । ଭାରି ଇଚ୍ଛା ହେଉଥିଲା ସେଇଠି କାରପେଟ୍ ଉପରେ ଗୋଡ଼ହାତ ଲମ୍ବେଇ ଶୋଇଯାଆନ୍ତା । କ୍ଳାନ୍ତ ଆଖିପତା ତା'ର ବୁଜି ହୋଇ ଆସୁଥିବା ବେଳେ ନଣନ୍ଦ ଧଇଁସଇଁ ହୋଇ ଆସି କହିଲା, "ଭାଉଜ, ସଜାଡ଼ି ହୋଇ ବସ । ସୁଧାମାଉସୀ ଆସୁଛନ୍ତି ।" ତା'ପରେ ପରେ ଯେଉଁ ମହିଳାଟି ଆସି ସୁମନା ହାତରେ ବେଶ ଓଜନିଆ ସୁନାମୁଦିଟିଏ ପିନ୍ଧାଇ ଦେଲେ, ତାଙ୍କର କଥାଶୁଣି ସୁମନାର ମୁହଁ ରକ୍ତଶୂନ୍ୟ ହୋଇଗଲା । ସୁମନା ଚିବୁକରେ ହାତ ରଖି ତା' ମୁହଁକୁ ନିରିଖେଇ ଦେଖିଲେ ସୁଧାମାଉସୀ । ଗୋଟି ଗୋଟି କରି ଗହଣା ମଧ୍ୟ ଦେଖିଲେ ତା'ର । କିଏ କୋଉଟା ଦେଇଛନ୍ତି, କେତେ ଓଜନ, କୋଉଠି ତିଆରି, ସେ ଖବର ପଚାରିଲେ । ସୁମନାର ଶାଶୂ ଶୋଭାଦେବୀ ଯେତିକି ଜାଣନ୍ତି କହିଲେ । ସୁଧାଦେବୀ ସୁମନାର ଶାଶୂଙ୍କର ଦୂରସମ୍ପର୍କୀୟା ବଡ଼ ଭଉଣୀ । କଣ୍ଟ୍ରାକ୍ଟରଙ୍କ ସ୍ତ୍ରୀ – କଞ୍ଚା ପଇସାର ସୁଅ ଛୁଟୁଛି ତାଙ୍କ ଘରେ । ଅନ୍ୟର ବ୍ୟକ୍ତିତ୍ୱକୁ ସେ ଟଙ୍କାସୁନାର ପରିମାପରେ ହିସାବ କରନ୍ତି । ବୋହୂର ଗହଣା ଗୁଡ଼ା ତାଙ୍କ ମନକୁ ପାଇଲା କି ନାହିଁ କିଛି ନ କହି ଉଠିଗଲେ ସେ ।

– "ଯାଉଛି ଲୋ ଶୋଭା – ଆଉ କେତେବେଳେ ଆସିବି ।"

– "ଖାଇବୁନି କି ଅପା ?" ଶୋଭାଦେବୀ ପଚାରିଲେ ।

– "ଆଲୋ ବାପାଲୋ – ସେ କଥା କହନା । ପାଞ୍ଚଟା ବାହାଘରରେ ହାଜିରା

ପକେଇ ଆସିଛି । ମୋର ତ ଡାଇବେଟିସ୍, ଗ୍ୟାଷ୍ଟ୍ରିକ୍, ଆହୁରି ଦୁନିଆଁ ବେମାରୀ । କୋଉଠି କ'ଣ କିଛି ଖାଏ ମୁଁ? ଘରେ ପୂଜାରୀ ସିଝା ମିଝା କ'ଣ କରିକି ରଖିଥିବ । ଆଖି କାନ ବୁଜି ସେଇଥିରୁ କିଛି ଗିଳି ଜୀବନ ବଞ୍ଚେଇବା କଥା । ତୁମମାନଙ୍କ ପରି ଭଲମନ୍ଦ କରି ଖାଇବା କ'ଣ ମୋ କପାଳରେ ଅଛି ? ଯାଉଚି । ଗୋଡ଼ ଉପରେ ଗୋଡ଼ ପକେଇ ତୁ ଏବେ ଆରାମରେ ବସି ବୋହୂ ପରଷା ଖାଇବୁ । ଥାଆଲୋ ମା' - ଭଗବାନ ତୋତେ ସୁଖରେ ରଖିଥାଆନ୍ତୁ ।" ଶେଷକଥା ପଦିକ ସେ ସୁମନାକୁ ଚାହିଁ କହିଲେ । ତାଙ୍କୁ ବଳେଇ ଦେବାକୁ ସୁମନାର ଶାଶୂ ଗଲେ ତାଙ୍କ ସାଙ୍ଗରେ । ଟିକିଏ ଆଗରୁ ପ୍ରବଳ ନିଦରେ ଆଚ୍ଛନ୍ନ ହୋଇ ପଡୁଥିବା ସୁମନାର ଆଖି ଦୁଇଟିରୁ କିନ୍ତୁ ସବୁତକ ନିଦ କାଢ଼ିନେଇ ଚାଲିଗଲେ ସେ ।

ସତରେ କ'ଣ ତା'ର ସ୍ୱାମୀ ପ୍ରଚଣ୍ଡ ରାଗୀ । ବାହାଘର ପୂର୍ବରୁ ଟିକିଏ ଟିକିଏ ତା କାନରେ ପଡ଼ିଥିଲା, "ପିଲାଟିର ସବୁ ଭଲ ଯେ ଖାଲି ଟିକିଏ 'ଟିଙ୍ଗା' ।" ସେତିକି ବେଳେ କେହି ଜଣେ ସପେଇ ଦେଇ କହିଥିଲା, "ହଁ ବା, ବାହାଘର ଆଗରୁ ଏମିତି ଅଧିକାଂଶ ପୁଅ 'ଟିଙ୍ଗା' ଥାଆନ୍ତି । ତା'ପରେ ସମସ୍ତେ ବଦଳି ଯାଆନ୍ତି ଆପେ ଆପେ ।" ସୁମନା ମଧ୍ୟ ନିଜ ମନକୁ ବୁଝେଇ ଦେଇଥିଲା ଅହେତୁକ ଭୟ ନ କରିବା ପାଇଁ । ଘରେ ବାହାରେ ସମସ୍ତେ ତାକୁ ଭାରି ଭଲ ପାଆନ୍ତି । ସୁମନା ଖୁବ୍ ସୁନା ଝିଅ । ଗାଳି ଶୁଣିଲା ପରି କୌଣସି କାମ ସେ କରେ ନାହିଁ । ସବୁ କାମ ତା'ର ନିଖୁଣ ଆଉ ସୁନ୍ଦର । ତା'ର କଥାବାର୍ତ୍ତା, ଚାଲିଚଳଣ, ଢ଼ଙ୍ଗରଙ୍ଗ କୋଉଥିରେ କିଛି ବାରିବାକୁ ନାହିଁ । ସମସ୍ତେ କହନ୍ତି, ସୁମନା ଯାହା ଘରକୁ ବୋହୂ ହୋଇ ଯିବ, ତା' ଘର ସୁନା ପାଲଟି ଯିବ । ସେଇସବୁ ପ୍ରଶଂସାର କଥା ଶୁଣି ତ ଶୋଭାଦେବୀ ନିଜର ଏକମାତ୍ର ପୁଅ ପାଇଁ ତାକୁ ବୋହୂ କରି ଆଣିବାକୁ ତା' ବାପାଙ୍କ ପାଖରେ ପ୍ରସ୍ତାବ ଦେଇଥିଲେ । ସୁମନାର ବାପା ବି ମନା କରିବେ କାହିଁକି ? ଭଲ ଘର, ଶିକ୍ଷିତ ଯୋଗ୍ୟ ପିଲା, ଛୋଟ ନିର୍ଝଞ୍ଜାଳି ପରିବାର । ସବୁଠାରୁ ବଡ଼କଥା ହେଲା ଯୌତୁକ ପାଇଁ କିଛି ଦାବି ନାହିଁ । ତୁମର ଇଚ୍ଛା ହେଲେ ଦିଅ, ନହେଲେ ନଦିଅ । ଆମର କିଛି ବି ଦରକାର ନାହିଁ । ଘରୁଆ ଘରୁ ସୁନ୍ଦର ଆଉ ଗୁଣର ଝିଅଟିଏ ଲୋଡ଼ା । ସୁମନାର ବାପା ବୋଉ ଆନନ୍ଦରେ ଗଦ୍‌ଗଦ ହୋଇ ପଡ଼ିଥିଲେ । ତାକୁ ପଦିଏ ହେଲେ ପଚାରିବାର ଆବଶ୍ୟକତା କେହି ଅନୁଭବ କରି ନଥିଲେ । ସୁନାଝିଅ ସୁମନା ବାପା ବୋଉଙ୍କର ବାଧ୍ୟ, ଅନୁଗତା ସବୁବେଳେ । ତେଣୁ ନିର୍ବିକାର ଭାବରେ ଏ ବାହାଘରକୁ ମାନି ନେଇଥିଲା । ବାହାଘରର ସମସ୍ତ ବିଧିବିଧାନ ପାଳନ କରିବାର ଫାଙ୍କେ ଫାଙ୍କେ ଭଦ୍ରଲୋକଙ୍କୁ ଯେତିକି ଦେଖିଥିଲା ମନ୍ଦ ଲାଗି ନଥିଲେ ତ । କିନ୍ତୁ ଏମାନଙ୍କର ଏଇ ସୁଧାମାଉସୀ ଯାହା କହିଲେ ତାହା ଯଦି ସତ ହୋଇଥାଏ, କ'ଣ କରିବ ସୁମନା ? ଆଉ କିଛି ସମୟ ପରେ ସେଇ ଭୟଙ୍କର ରାଗୀ ଲୋକଟି ସହିତ ମୁହାମୁହିଁ ହେବାର

ସମ୍ଭାବନା କଥା ମନେ ପକାଇ ହାତଗୋଡ଼ ତା'ର ପାଣି ହୋଇ ଆସୁଥିଲା ।

"ମାଉସୀ କଥା ଶୁଣି ଡରିଗଲୁ କି ମା' ?" ସୁମନାର ଶାଶୂ ତାଙ୍କ ଭଉଣୀଙ୍କୁ ବାଟେଇ ଦେଇ ଫେରି ଆସିଥିଲେ । ସୁମନାର ଶୁଖିଲା ମୁହଁକୁ ଚାହିଁ ସ୍ନେହକୋମଳ କଣ୍ଠରେ ପଚାରିଲେ ସେ । ସୁମନା ତଳକୁ ମୁହଁ ପୋତିଲା କିଛି ନ କହି । ତା' ଶାଶୂ ଅଳ୍ପ ହସି କହିଲେ, "ଦୀପୁ ମୋର ଏମିତି କିଛି ରାଗୀ ନୁହେଁ ମ । ଏଇ ସୁଧାଅପା ସବୁ କଥାକୁ ଏମିତି ବଢ଼େଇ କରି କହେ । ତୁ ଟିକେ ନରମ ହୋଇ ସହିଗଲେ ତ ଗଲା ।"

ଏଇତକ ଶୁଣୁ ଶୁଣୁ ସୁମନା ଭରସା ପାଇବା ପରିବର୍ତ୍ତେ ଆହୁରି ସନ୍ତ୍ରସ୍ତ ହୋଇ ଉଠିଲା । ମଧୁଚନ୍ଦ୍ରିକା ନେଇ ତା' ମନର ସମସ୍ତ ମଧୁର ପରିକଳ୍ପନା ପାଣିଚିଆ ହୋଇ ଯାଇଥିଲା ।

କିନ୍ତୁ ନାଁ –।

ପ୍ରଥମ ଦେଖାରେ ଆଦୌ ରାଗି ନଥିଲେ ସେ । ଶାନ୍ତ କଣ୍ଠରେ ପଚାରିଥିଲେ, "ମାଟ୍ରିକ୍‌ରେ କୋଉ ଡିଭିଜନ୍ ହୋଇଥିଲା ?"

– "ଫାଷ୍ଟ ଡିଭିଜନ ।" ତଳକୁ ମୁହଁ ପୋତି ଡରିଡରିକା କହିଥିଲା ସୁମନା ।

– "ଆଇ.ଏ.ରେ ?" ତାଙ୍କର ଗମ୍ଭୀର କଣ୍ଠ ।

–ଫାଷ୍ଟ ଡିଭିଜନ୍ ।" ସୁମନା ଧୀର କଣ୍ଠରେ ଉତ୍ତର ଦେଲା ।

"ଆଉ ପଢ଼ିଲନି କାହିଁକି ?" ତାଙ୍କର ଏ ପ୍ରଶ୍ନ ଶୁଣି ସୁମନାକୁ ଭାରି ଡର ଲାଗିଲା । କ'ଣ କହିବ ସେ ? ଆଉ ଅଧିକ ନ ପଢ଼ିବାର ଅନେକ ଗୁଡ଼ାଏ କାରଣ ଭିତରୁ କେଉଁ କାରଣଟା ଅଧିକ ଯୁକ୍ତିଯୁକ୍ତ ? ତା'ର ପାଠପଢ଼ାରେ କୌଣସି ଦିନ ଆଗ୍ରହ ନ ଥିଲା । ପାଠବହି ଅପେକ୍ଷା ଗଳ୍ପ, କବିତା ବହି ତଥା ପତ୍ରପତ୍ରିକା ପଢ଼ିବାକୁ ତାକୁ ଭଲ ଲାଗୁଥିଲା । କିନ୍ତୁ ତା'ର ସମସ୍ତ ଅବହେଳା ସତ୍ତ୍ୱେ ତା'ର ପ୍ରଖର ସ୍ମରଣଶକ୍ତି ଯୋଗୁଁ ସାମାନ୍ୟ ପରିଶ୍ରମରେ ପ୍ରଥମ ଶ୍ରେଣୀରେ ପାଶ୍ କରି ଯାଉଥିଲା ସେ । ନିଜକୁ ନିଜେ ସେ ଆଶ୍ଚର୍ଯ୍ୟ ହୋଇ ଯାଉଥିଲା ପରୀକ୍ଷାଫଳ ଦେଖି । ଖୁବ୍ ଭଲ ଛାତ୍ରୀଟିଏ ହୋଇ ପ୍ରତିଯୋଗିତା ମୂଳକ ପରୀକ୍ଷା ଦେଇ ନିଜକୁ ପ୍ରତିଷ୍ଠିତ କରିବାର ସ୍ୱପ୍ନ ସେ କେବେ ଦେଖି ନଥିଲା । ତା'ର ଚାହିଦାଗୁଡ଼ିକ ଖୁବ୍ ସୀମିତ ଥିଲା । ଭବିଷ୍ୟତରେ ଗୋଟିଏ ଛୋଟ ସୁଖୀ ପରିବାରର ଗୃହିଣୀ ରୂପରେ ନିଜକୁ କଳ୍ପନା କରି ସୁଖୀ ହେଉଥିଲା ସେ । କଲେଜ ତାଙ୍କ ଘରଠାରୁ ଅନେକ ଦୂର ଥିଲା । ଚାଲି ଚାଲି ଏତେବାଟ ଯିବାକୁ ଭଲ ଲାଗୁ ନଥିଲା ତାକୁ । ଚେହେରା ବେଶ୍ ଆକର୍ଷଣୀୟ ବୋଲି କଲେଜରେ ତଥା ଯିବା ଆସିବା ରାସ୍ତାରେ ଅନେକ ଅଶାଳୀନ ମନ୍ତବ୍ୟ ତାକୁ ଶୁଣିବାକୁ ପଡୁଥିଲା । ସେଥିପାଇଁ ଆସ୍ତେ ଆସ୍ତେ କଲେଜ ଯିବାକୁ ତା' ମନ ବିମୁଖ ହୋଇ ଉଠୁଥିଲା ।  ଯୋଉ ବାନ୍ଧବୀଟି ସହିତ ସେ କଲେଜ ଯାଉଥିଲା, ସେ

ହଠାତ୍ ଦିନେ ଜଣେ ସହପାଠୀ ସହିତ ଅନ୍ତର୍ଦ୍ଧାନ ହୋଇଯିବା ଫଳରେ ତା'ର ପାଠପଢ଼ା ବନ୍ଦ ହେଲା କି ସେତିକି ବେଳକୁ ଟାଇଫଏଡ୍‌ରେ ପଡ଼ି ପରୀକ୍ଷା ନ ଦେବାରୁ ସେ ପାଠପଢ଼ା ଛାଡ଼ି ଦେଲା ସେ ନିଜେ ବି ଜାଣେ ନାହିଁ। ଜଣେ ଗୃହିଣୀ ପାଇଁ ନିହାତି ଗ୍ରାଜୁଏଟ୍‌ଟିଏ ହେବାର ଯଥାର୍ଥତା ସେ ଅନୁଭବ କରି ନଥିଲା। ସେଇଥିପାଇଁ ତା ସ୍ୱାମୀଙ୍କ ପ୍ରଶ୍ନର ଉତ୍ତର ଦେବାକୁ ସେ ଅକ୍ଷମ ମନେକଲା ନିଜକୁ। ତା'ର ନୀରବତା କିନ୍ତୁ ବିରକ୍ତ କଲା ତାଙ୍କୁ। ଚିଡ଼ିଲା ପରି ପଚାରିଲେ, "କ'ଣ ପଚାରୁଛି ପରା ?"

ସୁମନା ଆଖିରୁ ଟପ୍ ଟପ୍ ହୋଇ ଲୁହ ଦି'ବୁନ୍ଦା ଝରି କୋଳ ଉପରେ ଛନ୍ଦି ରଖିଥିବା ତା'ର ହାତ ପାପୁଲିରେ ପଡ଼ିଲା। ତା' କାନ୍ଦ ଦେଖି ଧମକାଇ ଉଠିଲେ ସେ। "କାନ୍ଦ କାହିଁକି ? ମୋତେ ଏଇ କାନ୍ଦଫାନ୍ଦ ମୋଟେ ଭଲ ଲାଗେ ନାହିଁ। ଲୁହ ପୋଛ ଶୀଘ୍ର। ହଁ ଶୁଣ, କାଲିଠାରୁ ପୁଣି ପଢ଼ାପଢ଼ି ଆରମ୍ଭ କରିଦିଅ। ଏଇବର୍ଷ ତୁମେ ବି.ଏ.ପରୀକ୍ଷା ଦେବ।" ଆଦେଶଭରା ସ୍ୱର। "କ'ଣ କହୁଛ, ମୋତେ ଚାହିଁ କୁହ ?"

ଡରି ଡରି ଆଖି ଉଠେଇ ଚାହିଁଲା ସୁମନା। ପ୍ରଥମଥର ପାଇଁ ସେ ସିଧାସଳଖ ଦେଖିଲା ତାଙ୍କୁ। ବେଶ୍ ସୁଦର୍ଶନ ଭଦ୍ରବ୍ୟକ୍ତି। କିନ୍ତୁ ଖୁବ୍ ଗମ୍ଭୀର ବ୍ୟକ୍ତିତ୍ୱ। ତାଙ୍କ ଆଖିକୁ ସୁମନା ଚାହିଁବା ମାତ୍ରେ ସେ ହସି ଦେଲେ। କହିଲେ, "ପଢ଼ିବ ତ ?" ସୁମନା ଦେହରେ ତଡ଼ିତ୍ ପ୍ରବାହଟିଏ ଖେଳିଗଲା ସତେ ଅବା। ମୁଣ୍ଡ ଟୁଙ୍ଗାରିଲା ସେ।

ଏଇ ଥିଲା ସୁମନାର ଯୁଗ୍ମଜୀବନର ପ୍ରଥମ ଆଳାପ ତା'ର ସ୍ୱାମୀଙ୍କ ସହ। ତା'ର ମହାଜ୍ଞାନୀ ଅଧ୍ୟାପକ ସ୍ୱାମୀ ସୁମନାକୁ ତାଙ୍କର ଉପଯୁକ୍ତ କରି ଗଢ଼ି ତୋଳିବା ପାଇଁ ଦୃଢ଼ପ୍ରତିଜ୍ଞ ଥିଲେ। ଜୀବନରେ ଯେ ଆଉ କେବେ ପାଠବହି ଧରି ବସିବାକୁ ପଡ଼ିବ, ଏ ଧାରଣା ନ ଥିଲା ସୁମନାର। ପ୍ରଥମେ ପ୍ରଥମେ ଖୁବ୍ ବିରକ୍ତିକର ମନେ ହୋଇଥିଲା। ତା'ଛଡ଼ା ଘର ସଂସାରର ସବୁ କାମ ଛାଡ଼ି, ଶାଶୂ ଶ୍ୱଶୁରଙ୍କ ଖବର ନ ବୁଝି ପାଠବହି ଧରି ବସିବା ଯେ କେତେଦୂର ସମୀଚୀନ, ଏ ବିଷୟରେ ସେ ସନ୍ଦିହାନ ଥିଲା। ଶାଶୂ କହିଲେ, "ଘରକାମ ପାଇଁ କିଛି ଚିନ୍ତା କରନା। କି'ବା କାମ ଯେ। ସିଏ ଯାହା କହୁଚି ସେଇଆ କର।"

ଏମିତିକା କଡ଼ା ମାଷ୍ଟରଙ୍କ ହାବୁଡ଼ରେ ତା'ର ଛାତ୍ରୀ ଜୀବନରେ କେବେ ପଡ଼ି ନଥିଲା ସୁମନା। ସବୁଦିନ କଲେଜକୁ ଯିବା ଆଗରୁ ପଢ଼ା ଦେଇଯିବେ। କଲେଜରୁ ଫେରି ଯେତେ ରାତି ହେଉ ପଛେ ପଢ଼ା ଆଦାୟ ନକରି ଛାଡ଼ିବେ ନାହିଁ। ଠକିବାର ଉପାୟ ନଥାଏ। ଦି'ପହରେ ଆରାମ କରି ବିଛଣାରେ ଗଡ଼ପଡ଼ ହେଉ ହେଉ ପତ୍ରିକା ପଢ଼ିବାର ସୁଯୋଗ ବି ନାହିଁ। ଏତେ ଗୁଡ଼ାଏ ପଢ଼ା ସେ ଦେଇ ଯାଇଥିବେ ଯେ ସେସବୁ କରିବାକୁ ଯାଇ ଅଣନିଃଶ୍ୱାସୀ ହୋଇ ଉଠେ ସୁମନା। ଜୀବନଟା ତାକୁ ଶୁଷ୍କ, ନୀରସ,

ଗଦ୍ୟମୟ ମନେହୁଏ । ନା – ତା' ଉପରେ କେବେ ବି ରାଗନ୍ତିନି ସିଏ । କିନ୍ତୁ କାଳେ ରାଗିଯିବେ, ଏଇ ଆଶଙ୍କାରେ ସୁମନା ସବୁବେଳେ ସନ୍ତ୍ରସ୍ତ ହୋଇ ରହିଥାଏ ।

କିଛିଦିନ ହେବ ଦେହଟା ଭଲ ଲାଗୁ ନଥିଲା ସୁମନାର । କିଛି ବି ଖାଇବାକୁ ଇଚ୍ଛା ହେଉ ନଥାଏ । ଯାହା ଟିକିଏ ଅନେକ କଷ୍ଟରେ ଢୋକିଥାଏ ବାଥ୍‌ରୁମ୍‌କୁ ଯାଇ ଓକାଳି ଦେଇ ଆସେ । କାହାକୁ କହିବ ସେ ତା'ର ଦେହ ଖରାପ କଥା ? ବୋଉ କଥା ମନେ ପକାଇ ଭାରି ବିକଳ ହେଉଥାଏ ସେ । ମୁଣ୍ଡଟା ଏମିତି ଘୂରାଉଥାଏ ଯେ ବହିର ଅକ୍ଷର ସବୁ ଠିକ୍ ଭାବରେ ଦିଶୁ ନଥାଏ । ହଠାତ୍ ସେଦିନ କ'ଣ ହେଲା କେଜାଣି, ପଢ଼ିବାକୁ ବସି ଚେୟାରରୁ ଧୁପ୍‌କିନା ଖସି ପଡ଼ିଲା ତଳକୁ । ତା' ଶାଶୂ କୋଉଠି ଥିଲେ ଧାଇଁ ଆସି ତାକୁ ଉଠାଇ ଧରିଲେ ତଳୁ । ତା' ମୁହଁରେ ପାଣି ଛାଟି ତାକୁ ସୁସ୍ଥ କରେଇଲେ । ତାଙ୍କରି ଜେରା ଆଗରେ ସୁମନା ବାଧ୍ୟ ହେଲା ନିଜର ଅସୁସ୍ଥତାର ବିବରଣୀ ଦେବାକୁ । ସବୁ ଶୁଣି ତାଙ୍କ ମୁହଁ ଆନନ୍ଦରେ ଉଜ୍ଜ୍ୱଳି ଉଠିଲା । ତାକୁ ଆଦର କରି ଧରି ଧରି ନେଇ ନିଜ ବିଛଣାରେ ଶୁଆଇ ଦେଲେ । ଶାଶୂଙ୍କର ସ୍ନେହଭରା ସାନ୍ନିଧ୍ୟରେ ସୁମନା କିଛିଟା ଆଶ୍ୱାସନା ପାଇଲା ।

କଲେଜରୁ ଫେରି ସୁମନାକୁ ରୁମ୍‌ରେ ନ ଦେଖି ଖୋଜି ଖୋଜି ତାଙ୍କ ବୋଉଙ୍କ ରୁମ୍‌ରେ ପହଞ୍ଚିଲେ ସେ । ତାଙ୍କୁ ଦେଖି ଧଡ଼ପଡ଼ ହୋଇ ଛାନିଆଁରେ ଉଠି ପଡ଼ିଲା ସୁମନା । ସେଦିନ ଧାଡ଼ିଏ ହେଲେ ପଢ଼ି ନଥିଲା ସେ । ପଢ଼ିବାକୁ ଯାଉ ଯାଉ ତା ମୁଣ୍ଡ ବୁଲାଇବାରୁ ତଳେ ପଡ଼ିଗଲା ସେ ବେହୋସ୍ ହୋଇ । ତାକୁ ଉଠିପଡ଼ିବା ଦେଖି ଶାଶୂ ଜବରଦସ୍ତ ଶୁଆଇ ଦେଇ କହିଲେ, "ଉଠ୍‌ନା, ସେମିତି ଶୋଇରହ । ଟିକିଏ ଭଲ ଲାଗିଲେ ଉଠିବୁ ।"

– "କ'ଣ ହେଇଚି ?" ଗମ୍ଭୀର କଣ୍ଠରେ ପଚାରିଲେ ସେ ।

– "ହେଇନି – ହେବ ।" ତାଙ୍କ ବୋଉ ମୁରୁକି ହସି କହିଲେ ।

– "ହେବ ? କ'ଣ ହେବ ?" ବୋକାଙ୍କ ଭଳି ସେ ପଚାରିଲେ ।

– "ଆମ ଘରକୁ ଗୋଟେ କୁନ୍‌ମୁନି ଆସିବ । ବୁଝିଲୁ ?" ବୋଉଙ୍କ କଥା ଶୁଣି ସେ ଧଡ଼୍‌କିନା ବୁଲିପଡ଼ି ଚାଲିଗଲେ । ସୁମନା ଛାତି ଭିତରଟା ଥରି ଉଠିଲା । ରାଗିଲେ କି ?

ଟିକିଏ ପରେ ବିଛଣାରୁ ଉଠି ରୋଷେଇ ଘରକୁ ଗଲା ସୁମନା । ତା' ଶାଶୂ ଜଳଖିଆ ସଜାଡ଼ି ଦେଇଥିଲେ ତାଙ୍କ ପୁଅ ପାଇଁ । ସୁମନାକୁ ଦେଖି କହିଲେ, "ନେ, ତାକୁ ଜଳଖିଆ ଦେଇଦେ । ମୁଁ ଚା' ନେଇ ଆସୁଛି ।"

- "ଆପଣ ଯାଆନ୍ତୁ। ମୁଁ ଚା' କରି ଦେଉଛି।" ସୁମନାକୁ ଭାରି ଡର ଲାଗୁଥିଲା ତାଙ୍କ ଆଗକୁ ଯିବାକୁ। ତା' ଶାଶୂ ହସି ପକେଇଲେ ତା ମୁହଁକୁ ଚାହିଁ। "ଏତେ ଡରୁଛୁ କାହିଁକି ତା'କୁ ? ଚାଲିଲୁ ମୁଁ କହିବି। କେମିତି ସେ ତୋତେ ପାଟିକଲାବାଲା ହେଉଚି ଏବେ ? ଆଜିଠାରୁ ସେ ପାଠ ପଢ଼ାପଢ଼ି ସବୁ ବନ୍ଦ। ପୂରା ରେଷ୍ଟ ନେବୁ। ଖାଇବୁ, ପିଇବୁ, ମନ ଖୁସିରେ ରହିବୁ। ତୋ ମନର ବର୍ତ୍ତମାନ ଅବସ୍ଥା ପିଲା ଉପରେ ପ୍ରଭାବ ପକେଇବ ଯେ।"

ସେ ଜଳଖିଆ ପ୍ଲେଟ୍ ଧରି ଚାଲିଗଲେ। ସୁମନା ତାଙ୍କ ପଛେ ପଛେ ଯାଇ କବାଟ ପାଖରେ ଠିଆ ହେଲା। ଭିତରକୁ ଚାହିଁଲା। ତା' ପଢ଼ା ଟେବୁଲ୍ ପାଖରେ ବସି ତା'ର ଖାତାପତ୍ର ଲେଉଟାଇ ଦେଖୁଛନ୍ତି ଭଦ୍ରଲୋକ। ବୋଉଙ୍କୁ ଜଳଖିଆ ଆଣିବା ଦେଖି କଣ୍ଠରେ ବ୍ୟଙ୍ଗ ଭରି ପଚାରିଲେ, "ମହାରାଣୀ କୁଆଡ଼େ ଗଲେ କି ? ଆଜି ତ ବହି ଛୁଆଁ ହୋଇନି ଦେଖୁଛି।"

- "କାହିଁକି ? ସେ ଆଉ ପଢ଼ିବନି । ଡାକ୍ତର କହିଛନ୍ତି ତାକୁ ପୂରା ରେଷ୍ଟ ନେବାକୁ।" ତାଙ୍କ ବୋହୂ ପାଇଁ ଓକିଲାତି କରି ବସିଲେ ସେ ପୁଅ ପାଖରେ।

- "ହୁଁ।"

ସୁମନା ପାଦ ଚିପି ଚିପି ରୋଷେଇ ଘରକୁ ପୁଣି ପଳେଇ ଆସିଲା।

ସେଦିନ ଅନେକ ରାତିଯାଏ ସୁମନା ଏପଟେ ଏପଟେ ରହିଲା। ଶାଶୂ ଯେତେ ମନାକଲେ ମଧ୍ୟ ତାଙ୍କ ହାତରୁ ଛଡ଼େଇ ସବୁକାମ କଲା। ଅନେକ ଡେରିରେ ଶୋଇବା ଘରକୁ ଗଲା। ବେଡ୍‌ଲାଇଟ୍ ଜଳୁଥିଲା। ଭାବିଥିଲା ସିଏ ଶୋଇ ଯାଇଥିବେ। କିନ୍ତୁ ଘର ଭିତରକୁ ପଶିବା ମାତ୍ରେ ତାଙ୍କର ଗମ୍ଭୀର କଣ୍ଠ ଶୁଭିଲା, "ପାଠ ନ ପଢ଼ିବାର ଭଲ ଉପାୟଟିଏ ଆବିଷ୍କାର କରିଛ ଯାହାହେଉ।"

ଲଜ୍ଜାରେ ସୁମନା ମାଟିରେ ମିଶିଯିବ କି ଆଉ। ଘର ଭିତରକୁ ଦୁଇ ପାହୁଣ୍ଡ ମାତ୍ର ଆସିଥିଲା - ସେଇଠି ପଥର ହୋଇ ଠିଆ ହୋଇଗଲା କିଛି ସମୟ। ତା'ପରେ ସାହସ ସଞ୍ଚୟ କରି ପଢ଼ା ଟେବୁଲ୍ ପାଖକୁ ଗଲା। ଚଉକିରେ ବସି ଟେବୁଲ୍ ଲ୍ୟାମ୍ପ ଜଳାଇବା ମାତ୍ରେ ଧମକାଇ ଉଠିଲେ ସେ, "ଥାଉ ଏତେ କଷ୍ଟ କରିବା ଦରକାର ନାହିଁ। ରୋଷେଇ ଘରେ ତ ଖୁବ୍ ବିଶ୍ରାମ ନେଇ ଆସିଛ। ଏଥର ବିଛଣାରେ ଆସି ରେଷ୍ଟ ନିଅ।"

ସବୁବେଳେ ଏମିତି କଥାବାର୍ତ୍ତା ତାଙ୍କର - ବିଦ୍ରୂପ କଲାଭଳି, ଖେଳିଲା ଭଳି, ଦେହରେ ଗଳିଯିବା ଭଳି କଥା। ଖୁବ୍ କମ୍ କଥା କହିବେ। କିନ୍ତୁ ଗୋଟିଏ ଗୋଟିଏ ଶବ୍ଦ ଯେମିତି ଗୋଟିଏ ଗୋଟିଏ ବାଣ। ଚୁପ୍ ଚାପ୍ ଆସି ବିଛଣାରେ ଶୋଇଗଲା

ସୁମନା । ଛାତି ଭିତରୁ ଠେଲି ଆସୁଥିଲା ଅଜସ୍ର କୋହର ଢେଉ । ଓଠକୁ କାମୁଡ଼ି, ଆଖିକୁ ଜବରଦସ୍ତ ବୁଜି ଧରି ସେଇ କାନ୍ଦଣାକୁ ଚାପିଦେଲା ସେ ନିଜ ଭିତରେ । କାନ୍ଦ ତାଙ୍କୁ ଭଲ ଲାଗେନି ଯେ ! ସୁମନା ଆଡ଼କୁ ପିଠି କରି ଶୋଇ ଯାଇଥିଲେ ସେ । ସୁମନାକୁ ନେଇ ହତାଶାର ସୀମା ନାହିଁ ତାଙ୍କର । ବାପା ବୋଉଙ୍କ ଉପରେ ବଧୂ ନିର୍ବାଚନର ଦାୟିତ୍ୱ ଛାଡ଼ିଦେଇ ଖୁବ୍ ପସ୍ତାଉଛନ୍ତି ହୁଏତ । ସୁମନା ପରି ଅଧା ପାଠୋଇ ସ୍ତ୍ରୀକୁ ନେଇ କେମିତି ସୁଖୀ ହେବେ ସେ ? କେତେ କଥା ସେ କହିଥିଲେ ତାକୁ । ସେ ବି.ଏ. ପାଶ୍ କରିବ । ତା'ପରେ ଏମ୍.ଏ. ପଢ଼ିବ । ସୁମନା ଖୁବ୍ ଭଲ ଛାତ୍ରୀ । ଗବେଷଣା କରି ଡକ୍ଟରେଟ୍ ପାଇଯିବା ତା ପାଇଁ କିଛି ବଡ଼କଥା ନୁହେଁ । ତା ଭିତରେ ଅନେକ ପ୍ରତିଭା ରହିଛି । ଏଯାଏ ନିଜକୁ ଚିହ୍ନି ପାରିନାହିଁ ବୋଲି ସୁମନା କିଛି କରି ପାରିନାହିଁ । ତା'ଭିତରର ସମସ୍ତ ଉଜ୍ଜ୍ୱଳ ସମ୍ଭାବନାକୁ ସେ ସାର୍ଥକ କରାଇବେ । ଏମିତି ଅନେକ ଅନେକ ସ୍ୱପ୍ନ ତାଙ୍କର ସୁମନାକୁ ନେଇ । ଅଥଚ ସ୍ୱପ୍ନ ଦେଖାର ଆରମ୍ଭରୁ କଞ୍ଚାନିଦ ତାଙ୍କର ଭାଙ୍ଗିଦେଲା ସୁମନା । କାହିଁକି ସେ ତା' ଉପରେ ବିରକ୍ତ ନ ହେବେ ?

ପ୍ରବଳ ଏକ କୁଣ୍ଠାରେ ସଙ୍କୁଚିତ ହୋଇ ରହେ ସୁମନା । ଯେତେଦୂର ସମ୍ଭବ ତାଙ୍କଠାରୁ ଦୂରେଇ ରହେ ସେ । ତା' ବୋଲି ତାଙ୍କ ପ୍ରତି ତା'ର ଯାହା କର୍ତ୍ତବ୍ୟ ସେଥିରେ ସେ ହେଳା କରେ ନାହିଁ । ଚୁପ୍‌ଚାପ୍ ନିଜକାମ କରିଯାଏ । ଲକ୍ଷ୍ୟକରେ ତାଙ୍କର ଗମ୍ଭୀର ମୁହଁ ଆହୁରି ଗମ୍ଭୀର ହୋଇ ଯାଉଛି । ଭାରି ଅସହାୟ ଲାଗେ ତାକୁ । ରାତିରେ ନିଦ ହୁଏ ନାହିଁ । ଖାଇବାକୁ ଟିକେ ହେଲେ ଇଛା ନଥାଏ କେତେବେଳେ । ତା ସ୍ୱାସ୍ଥ୍ୟ ଖୁବ୍ ଖରାପ ହୋଇ ପଡ଼ିଲା । ଶାଶୂ ତାକୁ ସ୍ପେଶାଲିଷ୍ଟଙ୍କ ପାଖକୁ ନେଇଗଲେ ଚେକ୍‌ଅପ୍ କରାଇବାକୁ । ଗଦାଏ ଔଷଧ ଲେଖିଦେଲେ ସେ । ସେଗୁଡ଼ା ସବୁ କିଣା ହୋଇ ଆସିଲା । ଶ୍ୱଶୁର, ଶାଶୂ ସମୟ ଜଗି ସେସବୁ ତାକୁ ଗିଳାଇଲେ । ତଥାପି କିଛି ଉନ୍ନତି ନ ହେବାରୁ ସୁମନାର ବାପାଙ୍କୁ ଖବର ଦିଆଗଲା । ଖବର ପାଇ ସେ ଧାଇଁ ଆସିଲେ । ସୁମନାକୁ ଦେଖି ଖୁବ୍ ବ୍ୟାକୁଳ ହୋଇ ପଡ଼ିଲେ ସେ । କିଛିଦିନ ପାଇଁ ତାକୁ ତାଙ୍କ ଘରକୁ ନେଇଯିବାକୁ ଚାହିଁଲେ । ସୁମନାର ଶାଶୂ ଶ୍ୱଶୁର ଅରାଜି ହେଲେ ନାହିଁ । କହିଲେ, "ହଉ, ନେଇ ଯାଆନ୍ତୁ । ଏଠି ତା'ର ମନ ଭଲ ରହୁନାହିଁ । ବୋଉ ପାଖରେ ଯାଇ ମନ ଖୁସି କରି ଆସୁ ।"

ସୁମନାର ସ୍ୱାମୀଙ୍କୁ ଖାଲି ଜଣାଇ ଦିଆଗଲା ସେ ଯାଉଛି ବୋଲି । ସେ କିଛି କହିଲେ ନାହିଁ । ସୁମନା ତା ବାପାଙ୍କ ସହିତ ଯିବାବେଳକୁ ସେ ଘରେ ନଥିଲେ ।

ବାପଘରକୁ ଆସି ଶାନ୍ତିରେ ନିଃଶ୍ୱାସ ମାରିଲା ସୁମନା । ଯଦିଓ ତା ଶାଶୂଘର ଅଧିକାଂଶ ଝିଅଙ୍କର ଶାଶୂଘର ପରି ନୁହେଁ, ଯୌତୁକ ପାଇଁ ତାକୁ ଗଞ୍ଜଣା ସହିବାକୁ

ପଡ଼େନାହିଁ, କାମ ନ କଲେ କେହି ଉଘେଇ କରି କହନ୍ତି ନାହିଁ, ଖୁବ୍ ଉଦାର ହୃଦୟ, ସ୍ନେହମୟ ମଣିଷ ଦି'ଜଣ ତା'ର ଶାଶୂ, ଶ୍ୱଶୁର; ତେବେ ମଧ୍ୟ ସବୁବେଳେ କେମିତି ଏକ ଅସ୍ୱସ୍ତି ତାକୁ ବେଢ଼ି ରହିଥାଏ। ସେଇ ଅସ୍ୱସ୍ତିର କାରଣ ଜଣିଏ ମାତ୍ର - ତା'ର ସ୍ୱାମୀ। କ'ଣ ଯେ କେତେବେଳେ କହି ଦେବେ ଏଇ ଆଶଙ୍କାରେ ସବୁବେଳେ ଜଡ଼ ସଡ଼ ହୋଇ ରହିଥାଏ ସୁମନା। ବାପଘରେ କିନ୍ତୁ ତା'ର ଅବାଧ ସ୍ୱାଧୀନତା। ଅନେକ ଦିନ ପରେ ବୋଉ ପେଟକୁ ଲାଗି ନିଶ୍ଚିନ୍ତରେ ଶୋଇଗଲା ସେ। ତା' ମୁଣ୍ଡରେ ଦେହରେ ହାତ ବୁଲେଇ ଦେଇ ତା'ର ସବୁ କଷ୍ଟ ଯେମିତି ପୋଛି ନେଇଗଲେ ତା'ର ବୋଉ। ଭୋକ ବି ହେଲା ପ୍ରବଳ। ବୋଉଙ୍କ ହାତରନ୍ଧା ଅମୃତ ଭଳି ଲାଗୁଥିଲା। ଦଶ ପନ୍ଦର ଦିନ ଭିତରେ ତା' ଚେହେରା ବଦଳି ଗଲା।

ପନ୍ଦର ଦିନ ଭିତରେ ପାଞ୍ଚଖଣ୍ଡ ଚିଠି ଆସିଥିଲା ତା' ଶାଶୂ ଶ୍ୱଶୁରଙ୍କ ପାଖରୁ। ସୁମନା ପାଇଁ ଖୁବ୍ ଉଦ୍‌ବିଗ୍ନ ସେମାନେ। ତା' ବାପା ବୋଉଙ୍କ ପାଖକୁ ମଧ୍ୟ ଲେଖନ୍ତି ଚିଠିରେ। ସୁମନାର ଅନୁପସ୍ଥିତିରେ ତାଙ୍କ ଘର ଶ୍ରୀହୀନ ଦେଖାଯାଉଛି। ତା' ଦେହ ଟିକେ ସୁସ୍ଥ ହେଲେ ତାକୁ ସେଠାକୁ ପଠାଇ ଦେବାକୁ ଅନୁରୋଧ କରନ୍ତି। ସୁମନା ଭାବେ, ଆଉ କେବେ ବି ସେଠାକୁ ଯିବାକୁ ନ ପଡ଼ନ୍ତା କି!

କିଛିଦିନ ଗଲା ପରେ ବୋଉ ତାକୁ ପାଖରେ ବସାଇ ଗମ୍ଭୀର କଣ୍ଠରେ ପଚାରିଲେ, "ଜ୍ୱାଇଁ ତୋ ପାଖକୁ ଚିଠି ଦେଉନାହାନ୍ତି କାହିଁକି?"

- "ମୁଁ କେମିତି କହିବି?"

- "ମୋ ମାଆଟା ପରା - ମୋ ମୁହଁକୁ ଅନାଇ କହ? ଜ୍ୱାଇଁ ତୋତେ ଭଲ ପାଆନ୍ତି ତ?"

- "କେଜାଣି ! ତାଙ୍କ ବାପା ବୋଉ କିନ୍ତୁ ବହୁତ ଭଲ ପାଆନ୍ତି।" ସୁମନା କହିଲା।

- "ଏଠିକୁ ଆସି ତୁ ଜ୍ୱାଇଁଙ୍କୁ ଚିଠି ଦେଲୁଣି?" ବୋଉ ପଚାରିଲେ।

- "ଛି, କ'ଣ ସବୁ ପଚାରୁଛୁ ଯେ? ମୋ'ର କ'ଣ ଦରକାର ଚିଠି ଲେଖିବା?" ସୁମନା ଚିଡ଼ିଯାଇ କହିଲା।

- "ମୁଁ ନ ପଚାରିଲେ ଆଉ କିଏ ପଚାରିବ ତୋତେ? ସାଙ୍ଗସାଥୀ ବୋଲି କେହି ତ ନାହାନ୍ତି ତୋର।" ସ୍ୱରକୁ କୋମଳ କରି ସେ ପୁଣି ପଚାରିଲେ, "ତାଙ୍କ ଉପରେ ତୁ ରାଗିଚୁ କି ମା'?"

- "ଧେତ୍ - ମୁଁ କାହିଁକି ରାଗିବି ଯେ? ସବୁତକ ରାଗ ତ ସେ ପଟା କରି ନେଇଛନ୍ତି। ତାଙ୍କ ମୁହଁଟା ସବୁବେଳେ ରାଗିଲା ପରି, ନା ବୋଉ?" ସୁମନା କହିଲା।

– "ଯାଃ – କ'ଣ ଯେ ତୁ କହୁ? ପାଗଳୀଟାଏ କି? ମୋ ଜୋଇଁଙ୍କ ପରି ସୁନ୍ଦର ଜୋଇଁ ଭଲା ଆଉ କାହାର ଅଛି ଏ ସାହିରେ ଦେଖିବୁ ଗଲୁ?"

"ସେଇ ଗର୍ବ ନେଇ ଥା' ତୁ।" କହି ସେଠାରୁ ଉଠି ଚାଲି ଆସିଥିଲା ସୁମନା। ତା'ର ଢ଼ଙ୍ଗରଙ୍ଗ, କଥାବାର୍ତ୍ତା ଦେଖିଶୁଣି ତା' ବୋଉଙ୍କ ମୁହଁରେ ଚିନ୍ତାର ରେଖା ଫୁଟି ଉଠିଥିଲା। ସୁମନା କ'ଣ ସୁଖୀ ହୋଇ ନାହିଁ ଏ ବିବାହରେ? ନବବିବାହିତା ସୁମନା ମନରେ ସ୍ୱାମୀଙ୍କୁ ଛାଡ଼ି ଅଲଗା ରହିବାର ଦୁଃଖ ଟିକିଏ ମଧ୍ୟ ନାହିଁ। ଆଶ୍ଚର୍ଯ୍ୟ!

ସେଇଦିନ ଉପରଓଳା ଡାକବାଲା ଦେଇଗଲା ସୁମନାବୋଉଙ୍କର ବହୁ ଆକାଂକ୍ଷିତ ପତ୍ର। ସୁମନା ନାଆଁରେ ରେଜିଷ୍ଟ୍ରି ଚିଠି। ପ୍ରେରକ ସ୍ଥାନରେ ଜ୍ୱାଇଁଙ୍କର ନାଁ ଦେଖି ବୋଉଙ୍କ ମୁହଁ ଖୁସିରେ ଝଲସି ଉଠିଲା। ଲଫାପାଟିକୁ ଖୋଲିଦେଇ ସୁମନା ଦେଖେ ତ ତା' ଭିତରେ ଖଣ୍ଡେ ବହି 'ଚାଇଲ୍ଡ କେୟାର୍' । ବହି ଭିତରେ ଦି'ଧାଡ଼ିର ଲେଖା, "ବିଶ୍ରାମରେ ବାଧା ସୃଷ୍ଟି ନ ହୁଏ ଯଦି ସମୟ କରି ବହିଟା ପଢ଼ିବ।" ତା ସ୍ୱାମୀଙ୍କର ପ୍ରଥମ ପତ୍ର ତା ପାଖକୁ, ସମ୍ବୋଧନହୀନ, ଉଚ୍ଛ୍ୱାସହୀନ, ନାମହୀନ ପତ୍ର। ବହି ପଢ଼ିବାକୁ ଭାରି ଭଲପାଏ ସୁମନା। ଗଳ୍ପ, ଉପନ୍ୟାସ ବହି ପାଇଁ ପାଗଳ ସେ। ଖିଆପିଆ ଭୁଲି ରାତି ଅନିଦ୍ରା ହୋଇ ବହି ପଢ଼େ ବୋଲି ବୋଉ ପାଖରୁ କେତେ ଗାଳି ଖାଉଥିଲା। ଭାବୁଥିଲା ବାହା ହୋଇଗଲା ପରେ ମନଇଚ୍ଛା ବହି ପଢ଼ିବ ସେ। କେହି ଆଉ ମନା କରିବାକୁ ନଥିବେ କି ପାଠପଢ଼ା ଓ ପରୀକ୍ଷାର ବୋଝ ନଥିବ ମୁଣ୍ଡରେ। ନୂଆ ବହିର ବାସ୍ନା ତାକୁ ଏତେ ଭଲ ଲାଗେ ଯେ ଘରକୁ ଖବରକାଗଜ ଆସିବାମାତ୍ରେ ମନ ଭରି ଶୁଙ୍ଘିନିଏ ଆଉ କେହି ଚଉତା ଖୋଲି ପଢ଼ିବା ଆଗରୁ। ତା'ର ହାତଖର୍ଚ୍ଚ ପଇସା ଯାହା ମିଳେ ସେଥିରେ କେବଳ ମ୍ୟାଗାଜିନ୍ ବା ଗଳ୍ପ, ଉପନ୍ୟାସ କି କବିତା ବହି କିଣେ। କିନ୍ତୁ ତା'ର ପତିଦେବଙ୍କ ପ୍ରେରିତ ଏଇ ବହିଟିକୁ ଆଘ୍ରାଣ କରିବାକୁ ବି ଭୟହେଲା ତା'ର। ବହିଟିକୁ ଛୁଇଁବା ମାତ୍ରେ ତାଙ୍କର ଗମ୍ଭୀର ଉପସ୍ଥିତି ମନ ଭିତରେ ଅନୁଭବ କରି ସନ୍ତ୍ରସ୍ତ ହୋଇ ପଡ଼ିଲା ସେ। ତେଣୁ ସନ୍ତର୍ପଣରେ ତାକୁ ନେଇ ଟେବୁଲ ଉପରେ ରଖିଦେଲା।

ଯା, ପରେ କିନ୍ତୁ ପ୍ରତି ଦୁଇ ଚାରିଦିନ ଅନ୍ତରରେ, ତା' ପାଖକୁ ରେଜିଷ୍ଟ୍ରି ଡାକରେ ବହିମାନ ଆସିବାରେ ଲାଗିଲା। 'ଶିଶୁର ଯତ୍ନ,' 'ଶିଶୁ ପାଳନ,' ' ଶିଶୁର ମନସ୍ତତ୍ତ୍ୱ' ସମ୍ପର୍କୀୟ ବହି ସବୁ ଟେବୁଲ ଉପରେ ଭିଡ଼ କରିବାରେ ଲାଗିଗଲେ। ବହିସଂଖ୍ୟା ଯେତିକି ବଢ଼ିଲା, ସୁମନାର ଅସ୍ୱସ୍ତି ମଧ୍ୟ ସେହି ପରିମାଣରେ ବଢ଼ିବାରେ ଲାଗିଲା। ତା'ର ମନେ ହେଲା ସେ ଯେମିତି 'ମାଆ' ହେବାକୁ ଯାଉନାହିଁ। କୌଣସି ଏକ ଜଟିଳ ବିଷୟରେ ପରୀକ୍ଷା ଦେବାକୁ ଯାଉଛି। ସବୁ ବହି ସହିତ ଛୋଟ ଛୋଟ ନିର୍ଦ୍ଦେଶ ରହିଥାଏ ଦି'ତିନି ଧାଡ଼ିର। "ସମ୍ଭବ ହେଲେ କ୍ଲାସିକ୍ ବହି କିଛି ପଢ଼ିବାକୁ ଚେଷ୍ଟା କରିବ।

ମହାପୁରୁଷମାନଙ୍କର ଜୀବନୀ ମଧ୍ୟ ପଢ଼ିବ ସମୟ କରି।" ତା' ପାଖକୁ ପଠାଉଥିବା ପ୍ରତିଟି ବହି ଯେ ସେ ନିଜେ ପଢ଼ିସାରି ପଠାନ୍ତି - ସେ କଥା ବୁଝିପାରେ ସୁମନା। ସବୁ ବହିର କେତେକ ସ୍ଥାନରେ ଗାର ଦେଇ ତା'ର ଗୁରୁତ୍ୱ ଦର୍ଶାଇ ଥାଆନ୍ତି। ପଢ଼ିବ ପଢ଼ିବ ହୋଇ ସେ ସବୁ ଆଉ ପଢ଼ି ପାରେନି ସୁମନା। କୌଣସି କାର୍ଯ୍ୟ ଯେତେବେଳେ ବୋଝ ଭଳି ମନେହୁଏ - ତାହା କରିବାରେ ଆଉ ଆନନ୍ଦ ନ ଥାଏ।

ଅବଶେଷରେ ସୁମନାର ଶାଶୂଘରକୁ ଫେରିବାର ଦିନଟି ଉପସ୍ଥିତ ହେଲା। ତା' ଶ୍ୱଶୁର ନିଜେ ଆସି ପହଞ୍ଚିଲେ ତାକୁ ନେବାପାଇଁ। ସୁମନାର ଦେହ ବେଶ୍ ସୁସ୍ଥ ହୋଇ ଯାଇଥିଲା। ତେଣୁ ତାକୁ ଅଟକାଇ ରଖିବା ପାଇଁ ତା'ର ବାପା ବୋଉଙ୍କ ପାଖରେ କୌଣସି ଯୁକ୍ତି ନଥିଲା । ଝିଅକୁ ବାହା କରିଦେଲା ପରେ ବାପା ମାଆଙ୍କର ଆଉ କ'ଣ ବା ଅଧିକାର ଥାଏ ତା' ଉପରେ ? ସୁମନା ମନରେ କିନ୍ତୁ ଆନନ୍ଦ ନ ଥିଲା। ଛେଳିକୁ ହାଣ ମୁହଁକୁ ନେଲା ପରି ତା' ମୁହଁ ଦିଶୁଥିଲା। ତା' ବୋଉ ଅନୁମାନ କରୁଥିଲେ କୋଉଠି ଗୋଟାଏ କେଁ ନିଶ୍ଚୟ ରହିଛି। ନ ହେଲେ ଏତେଦିନ ସ୍ୱାମୀଙ୍କ ଠାରୁ ଅଲଗା ରହିବା ପରେ ତାଙ୍କ ପାଖକୁ ଫେରିଯିବାର ବ୍ୟାକୁଳତା କାହିଁକି ଟିକିଏ ହେଲେ ଫୁଟୁନାହିଁ ସୁମନାର ହାବଭାବରେ ? ସେ କ'ଣ ସୁଖୀ ହୋଇନି ତା'ର ଦାମ୍ପତ୍ୟ ଜୀବନରେ ? ଯିବା ପୂର୍ବରୁ ଝିଅକୁ ନିରୋଳାରେ ଡାକି ପଚାରିଲେ, "ଜ୍ୱାଇଁଙ୍କର କିଛି ବଦଖୋଇ ଅଛି କି ? ମଦଫଦ କି ଆଉ କିଛି ନିଶା ?ଅନ୍ୟ କୋଉ ସ୍ତ୍ରୀଲୋକ ସହିତ ସମ୍ପର୍କ ଅଛି କି ?" ଏଭଳି ଅନେକ ପ୍ରଶ୍ନ। ସେସବୁ ବିଷୟରେ କେବେ ଭାବିନାହିଁ ସୁମନା। ଯିଏ ଆସି ପାଖରେ ଠିଆ ହୋଇଗଲେ ତା' ଭିତରଟା ଭୟରେ ଅସାଡ଼ ହୋଇଯାଏ, ତାଙ୍କ ବିଷୟରେ ଖରାପ କଥା କିଛି ଭାବିବାର ଅବସର କାହିଁ ତା'ର ? ଏକଥା କହିବାରୁ ବୋଉ ତା'ର ହସିଉଠି କହିଥିଲେ, "ପୁରୁଷ ପିଲା ଟିକେ ରାଗୀ ନ ହେଲେ କ'ଣ ମାନେ ? ତୋତେ ସବୁ ବରଦାସ୍ତ କରି ଚଳେଇ ନେବାକୁ ହେବ। ନହେଲେ କେମିତି ସଂସାର କରିବୁ ଲୋ ?" ସୁମନା ଆଖିରୁ ଝରି ପଡୁଥିବା ଲୁହଧାରକୁ ପୋଛି ଦେଇ ତାକୁ ଆଦର କରି ବିଦା କରିଥିଲେ ତା' ବୋଉ।

ସୁମନାକୁ ଦେଖି କୋଟିନିଧି ପାଇଲା ଭଳି ଖୁସି ହୋଇଗଲେ ତା' ଶାଶୂ। ତାଙ୍କ ଆଦର ଯତ୍ନରେ ନିଜ ବୋଉକୁ ଛାଡ଼ି ଆସିଥିବାର ଦୁଃଖ ଅଳ୍ପ କେତୋଟି ମୁହୂର୍ତ୍ତରେ ଭୁଲିଗଲା ସେ। ଶାଶୂ ମନଦୁଃଖ କରି କହିଲେ, "ଥିଲା, ଥିଲା, ଏଇ ଟିକକ ଆଗରୁ ବାହାରିଗଲା ସେ। ଫେରିବାକୁ ଡେରି ହେବ ବୋଲି କହୁଥିଲା। କଲେଜରେ ଆଜି ତାଙ୍କର ଫିଷ୍ଟ୍ ଅଛି। ତୁ ଆଉ କାହିଁକି ଅପେକ୍ଷା କରି ବସିବୁ ତାକୁ ? ଧୁଆଧୋଇ ହୋଇ ଲୁଗାପଟା ବଦଳି ପକା। ଏତେ ବାଟ ଆସିଚୁ ଗାଡ଼ି ମଟରରେ। ଅସଜ ମଣିଷ ତୁ।

କ'ଣ ଦି'ଟା ଖାଇଦେଇ ଶୋଇଯା'। ସିଏ ତା'ର ଯେତେବେଳେ ଆସୁଚି ଆସୁ।"

ଶାଶୂଙ୍କ କଥା ମାନି ସୁମନା ସବୁକାମ ସାରିଦେଲା। ଅନେକ ସମୟଯାଏ ଖାଇବା ପାଖରେ ବସି ଗପିଲେ ଶାଶୂବୋହୂ ଦୁହେଁ। ତା'ପରେ ସୁମନାକୁ ତା'ର ଶୋଇବା ଘରକୁ ପଠାଇ ଦେଇ ଶାଶୂ ମଧ୍ୟ ଚାଲିଗଲେ ଶୋଇବାକୁ।

ସିଏ ନାହାନ୍ତି ବୋଲି ଜାଣି ମଧ୍ୟ ଶୋଇବାଘର ଭିତରକୁ ପଶିବାକୁ ଡରଡର ଲାଗୁଥିଲା ସୁମନାକୁ। କ'ଣ ସେ କହିବେ କେଜାଣି ? ସେ ପଠାଇଥିବା ବହିଗୁଡ଼ିକ ମଧ୍ୟରୁ ଖଣ୍ଡିଏ ବି ପଢ଼ିନାହିଁ ସୁମନା। ଯଦି ପଚାରିବେ କ'ଣ କହିବ ? ଆସିଲା ବେଳେ ଜାଣି ଜାଣି ସେଇ ବହିଗୁଡ଼ା ସେ ଛାଡ଼ିଦେଇ ଆସିଛି ବାପଘରେ। ସେଥିପାଇଁ ତାକୁ ସେ କ'ଣ କ୍ଷମା ଦେବେ ? ଯାହା ହେବ ସେତେବେଳେ ଦେଖାଯିବ। ଯେତିକି ସମୟ ସେ ଘରେ ନାହାନ୍ତି ସୁମନା ସେଯାଏଁ ନିଶ୍ଚିନ୍ତ। ଆରାମରେ ଟିକେ ଶୋଇଯାଉ ସେ ଆଗ। ସୁନ୍ଦର ଭାବରେ ବିଛଣା ପ୍ରସ୍ତୁତ ହୋଇ ରହିଛି। ଫିକା ନୀଳ ରଙ୍ଗର ପ୍ରିଣ୍ଟେଡ୍ ବିଛଣା ଚଦରଟିଏ ପରା ହୋଇଛି ବିଛଣାରେ। ସୁମନାକୁ ଭାରି କ୍ଳାନ୍ତ ଲାଗୁଥିଲା। ବିଛଣାରେ ଗଡ଼ିପଡ଼ି ଆଖି ବନ୍ଦ କଲା ସେ।

ତକିଆରେ ମୁଣ୍ଡଦେବା ମାତ୍ରେ ଏକ ମଧୁର ବାସ୍ନାରେ ଆମୋଦିତ ହୋଇ ଉଠିଲା ତା'ର ଘ୍ରାଣେନ୍ଦ୍ରିୟ। ମଲ୍ଲୀଫୁଲର ବାସ୍ନା କୋଉଠୁ ଆସୁଛି ? ସବୁଠାରୁ ପ୍ରିୟଫୁଲ ତା'ର ମଲ୍ଲୀ। ଗୋଲାପ, ଚମ୍ପା, ରଜନୀଗନ୍ଧାଠାରୁ ମଧ୍ୟ ମଲ୍ଲୀଫୁଲ ତାକୁ ଭଲ ଲାଗେ। ଆଖି ଖୋଲି ଚାହିଁଲା ସେ। ଆରେ – ଘର ଭିତରକୁ ପଶିଲାବେଳେ ସେ ଲକ୍ଷ୍ୟ କରି ନଥିଲା। ତା' ପଢ଼ା ଟେବୁଲ ସ୍ଥାନରେ କାଚ ଆଲମିରାଟିଏ ରଖା ହୋଇଛି। ଆଲମିରାର ଉପର ଥାକରେ କେତେଗୁଡ଼ାଏ ସୁନ୍ଦର ସୁନ୍ଦର କଣ୍ଢେଇ। ଆଉ ଅନ୍ୟ ଥାକ ଗୁଡ଼ିକରେ ବହି ଭର୍ତ୍ତି। ଓଃ– ପୁଣି ସେଇ ବହି। ବିରକ୍ତିରେ ମୁହଁ ଫେରାଇ ନେବା ପୂର୍ବରୁ କେତୋଟି ବହିର ନାଆଁ ଆଖିରେ ପଡ଼ିଗଲା। ସୁମନା ମନରେ ଆନନ୍ଦର ଚମକ ଖେଳିଗଲା। ଏ ସବୁ ବହି – ପୁଣି ଏ ଘରେ। ସବୁଗୁଡ଼ିକ ନୂଆ ବହି – କେବଳ ଗଳ୍ପ, ଉପନ୍ୟାସ ଓ କବିତା ବହି – ସୁମନାର ମନପସନ୍ଦର ବହି। ଆଲମିରାର କବାଟ ଖୋଲି ବହିଗୁଡ଼ିକୁ ଛୁଇଁ ଦେଇ ଶିହରି ଉଠିଲା। ତା'ର ଜଣେ ପ୍ରିୟ ଲେଖକଙ୍କର ବହିଟିଏ ଥାକରୁ ଟାଣି ଆଣି ଦେଖିଲା ପ୍ରଥମ ପୃଷ୍ଠାରେ ତା'ରି ନାଆଁ ଲେଖା ହୋଇଛି। ତା'ପରେ ଆଉ ଖଣ୍ଡେ, ଆଉ ଖଣ୍ଡେ – ସବୁଥିରେ ସୁମନାର ନାଁ – ତା'ମାନେ ଏ ସବୁଗୁଡ଼ିକ ବହି ସୁମନାର। କେମିତି ବିଶ୍ୱାସ କରିବ ଏଭଳି ଅବିଶ୍ୱାସ୍ୟ କଥାକୁ ? କିନ୍ତୁ ବହି ଭିତରର ହସ୍ତାକ୍ଷର ସହିତ ସେ ଯେ ଖୁବ୍ ପରିଚିତା। ବହିଟିଏ ଧରି ବିଛଣାକୁ ଲେଉଟି ଆସିଲା ସୁମନା। ପଲଙ୍କ ବାଡାରେ ତକିଆ ଢ଼େରା ଦେଇ ବହିଟି ପଢ଼ିବ ସେ। ତକିଆଟିକୁ ଉଠାଇ ଦେବା

ମାତ୍ରେ ମଲ୍ଲୀଫୁଲ ବାସ୍ନା କୋଉଠୁ ଆସୁଥିଲା ବୁଝି ପାରିଲା। ତକିଆ ତଳେ ଗଦାଏ ମଲ୍ଲୀକଢ଼ - ଫୁଟି ଆସୁଥିବା ମଲ୍ଲୀକଢ଼- ମହକି ଉଠୁଥିବା ମଲ୍ଲୀକଢ଼। ତା' ଭିତରେ ପୁଣି ତା'ରି କବିତା ଲେଖା ଡାଏରୀ, ଯୋଉଟାକୁ କି ହଜିଯାଇଛି ବୋଲି ଧରି ନେଇଥିଲା ସେ। ତା' ମନର ଅଜସ୍ର ବ୍ୟଥା ବେଦନାର ପରିଭାଷା ନେଇ ଯୋଉ କବିତାଗୁଡ଼ିକ ସେ ଲେଖିଥିଲା, ସବୁ ଏଇ ଡାଏରୀରେ ଅଛି। ତରବରରେ ଡାଏରୀଟିକୁ ସାଉଁଟି ଆଣି ପୃଷ୍ଠାଗୁଡ଼ିକ ଲେଉଟାଇ ପକାଇଲା। କବିତାଗୁଡ଼ିକ ଅଛି ତ? କାଗଜ ଖଣ୍ଡିଏ ଖସି ପଡିଲା ଡାଏରୀ ଭିତରୁ। ଚିରକୁଟ୍ କାଗଜ ଖଣ୍ଡିଏ - ଯେମିତି କାଗଜରେ ନିର୍ଦ୍ଦେଶନାମା ଲେଖି ପଠାଉଥିଲେ ସେ ବହି ଭିତରେ। ତା' ଉପରେ ଆଖି ବୁଲାଇ ପ୍ରବଳ ଏକ ଆବେଗରେ କମ୍ପି ଉଠିଲା ସୁମନାର ସାରା ଦେହ - ବାଷ୍ପାୟିତ ହୋଇ ଉଠିଲା ତା'ର ସୁନ୍ଦର ଆଖି ଦୁଇଟି। ଲେଖାଥିଲା "ତୁମ ପାଖରୁ ଚିଠି ଖଣ୍ଡିଏ ପାଇବାକୁ ହେଲେ କେତେଜନ୍ମ ତପସ୍ୟା କରିବାକୁ ସୁମନା?" ବିହ୍ୱଳ ହୋଇ ଚାହିଁ ରହିଲା ସେ ସେଇ କେତୋଟି ଶବ୍ଦକୁ। ଏକାବେଳକେ ଏତେଗୁଡାଏ ପ୍ରାପ୍ତିକୁ କୋଉଠି ରଖିବ ସୁମନା? ଏତେ ସବୁ ଆନନ୍ଦକୁ ମନ ଭିତରକୁ ସାଉଁଟି ନେବାକୁ ଯାଇ ଭିତରେ ପ୍ରଥମ ଥର ପାଇଁ ଅନୁଭବ କଲା ଦୁଇଟି ଭାବଗମ୍ଭୀର ଆଖିର ଉଜ୍ଜ୍ୱଳ ଦୃଷ୍ଟି। ମୂର୍ଖ ସୁମନା କେବେ ବୁଝିବାକୁ ଚେଷ୍ଟା କରିନାହିଁ ସେଇ ଅପୂରନ୍ତ ପ୍ରେମଭରା ଦୃଷ୍ଟିର ପରିଭାଷା। ନିଜକଥା କେବଳ ଭାବିଛି ସେ। ମନରେ ପ୍ରଚଣ୍ଡ କ୍ଷୋଭ ଆସିଛି, କାହିଁକି ତା'ର ଇଚ୍ଛା ବିରୁଦ୍ଧରେ ତାକୁ କିଛି କରିବାକୁ ବାଧ୍ୟ କରାଯିବ? ସ୍ତ୍ରୀ ହେଲା ବୋଲି କ'ଣ ନିଜର ଇଚ୍ଛା, ଖୁସି କିଛି ରହିବନି? ସେ କ'ଣ ସ୍ୱାମୀର କ୍ରୀତଦାସୀ? କାହିଁକି ନିଜକୁ ଅନ୍ୟର ଇଚ୍ଛାର ଛାଞ୍ଚରେ ପକାଇ ପୁଣିଥରେ ଗଢ଼ିବ ସେ?

କିନ୍ତୁ ଏଇ ମୁହୂର୍ତ୍ତରେ ସୁମନାର ମନେହେଲା ତାଙ୍କ ଖୁସି ପାଇଁ ଅନେକ କିଛି ସେ କରି ପାରିବ। ତା' ହୃଦୟରେ ପ୍ରଥମ ପ୍ରେମର ଉନ୍ମେଷ ହୋଇଥିଲା। ତା' ମନର ବନ୍ଦ ପାଖୁଡ଼ା ସବୁ ଖୋଲି ଯାଉଥିଲା ଉଲ୍ଲସିତ ହୋଇ। ପ୍ରଥମଥର ପାଇଁ ତା' ଅନ୍ତର ବ୍ୟାକୁଳ ହୋଇ ଉଠୁଥିଲା ପ୍ରିୟତମଙ୍କ ସାନ୍ନିଧ୍ୟ ଲାଗି। ପାଦେ ପାଦେ କରି ଆଗେଇ ଯାଇ ଝରକା ପାଖରେ ଠିଆ ହେଲା ସୁମନା। ପର୍ଦ୍ଦା ଟେକି ଦେଖିଲା। ଏ ଯାଏଁ କାହିଁକି ଆସିଲେନି ସେ? କି ଭୋଜି ଏମିତି ହେଉଛି କି ଏତେ ରାତିଯାଏ? ସୁମନା ଉପରେ ଅଭିମାନ କରି ଜାଣି ଜାଣି ଡେରି କରୁଛନ୍ତି କି ସେ? ଝରକା ପାଖରୁ ଫେରି ଆସି ପୁଣି ବିଛଣାରେ ଗଡ଼ିପଡ଼ିଲା। ତକିଆ ତଳୁ ସାଉଁଟି ଆଣିଲା ମୁଠାଏ ମଲ୍ଲୀକଢ଼। ସେଇ ମୁଠାଭର୍ତ୍ତି କଢ଼ ବିଞ୍ଚିଦେଲା ମୁହଁ ଉପରେ। ଆଖି ବୁଜି ତକିଆରେ ମୁଣ୍ଡ ଦେଇ ଉତ୍କର୍ଣ୍ଣ ହୋଇ ପଡ଼ିରହିଲା ସୁମନା ଗେଟ୍ ଖୋଲିବାର ଶବ୍ଦକୁ ଅପେକ୍ଷା କରି।

# ନୀରବ ନିକ୍ୱଣ

"ଅକାରଣରେ ଏତେ କଥା ନ କହିଲେ କ'ଣ ଚଳନ୍ତାନି ?" ସ୍ୱାମୀ କହିଲେ।

– "ସବୁଦିନ ଦଶ ହଜାରରୁ ଅଧିକ ଅଦରକାରୀ ଶବ୍ଦ ମା କହୁଥିବ।" ବଡ଼ପୁଅ କହିଲା। "ଏମ୍ପିଟି ଭେସେଲ୍ ସାଉଣ୍ଡସ୍ ମଚ୍ " ସାନପୁଅ କଥାଟିକୁ ସମ୍ପୂର୍ଣ୍ଣ କରିଦେଲା।

ସୁଦୀପାର ତଣ୍ଟି ପାଖରେ କ୍ଷୀରରେ ବୁଡ଼ି ନରମ ହୋଇଯାଇଥିବା ରୁଟି ଖଣ୍ଡିକ ଅଟକି ଯାଉଥିଲା ଯେମିତି। ଗିଳିବାକୁ କଷ୍ଟ ହେଉଥିଲା ତାକୁ। ଭିତରୁ ଉଠି ଆସୁଥିଲା ଅଶ୍ରୁର ଉଚ୍ଛ୍ୱାସ। କିନ୍ତୁ ନା, ସେ କାନ୍ଦିବନି। କାନ୍ଦି ପକେଇ ଏମାନଙ୍କ ଆଗରେ ନିଜକୁ ଆହୁରି ଛୋଟ କରିଦେବନି ସେ। କ'ଣ ଭାବନ୍ତି ଏମାନେ ତାକୁ ? ସୁଦୀପା ଯେମିତି ଅକିଞ୍ଚନ ପ୍ରାଣୀଟିଏ। ସକାଳଠାରୁ ରାତି ପର୍ଯ୍ୟନ୍ତ ଏଇମାନଙ୍କୁ ଖୁସି କରିବ ବୋଲି ପ୍ରାଣପାତ କରି ଖଟୁଥିବ ସେ। ଅଥଚ କେହି କେବେ ମୁହଁ ଫିଟେଇ ନିଜର ସନ୍ତୋଷ ପ୍ରକାଶ କରିବେ ? ନିର୍ବିକାର ମହାପୁରୁଷ ଯେମିତି ଗୋଟିଏ ଗୋଟିଏ। ଯାହା ଦିଅ ଖାଇଦେବେ, ଯାହା ଦିଅ ପିନ୍ଧିବେ। ଭଲ କହିବେନି କି ମନ୍ଦ କହିବେନି। ଅବଶ୍ୟ ସେମାନଙ୍କୁ ମନ୍ଦ କିଛି ଦେବାର ମନୋବୃତ୍ତି ସୁଦୀପାର କେବେ କି ହୋଇନି କି ହେବନାହିଁ। ତା'ର ସାଧ ମୁତାବକ ସବୁଠାରୁ ଭଲ ଯାହା ସେ ଦେଇପାରିବ, କରିପାରିବ, ସେଇଆ ହିଁ କରିଆସିଛି। କିନ୍ତୁ ଆଜିକାଲି କ୍ଲାନ୍ତ ଲାଗେ ତାକୁ। ଏକା ଏକା କେତେ ସେ ଭାବୁଥିବ ସେମାନଙ୍କୁ କ'ଣ ଭଲ ଲାଗିବ, ସେଇକଥା। ବାବୁମାନେ କ'ଣ କେବେ କିଛି ବରାଦ କରିବେ ଏଇଆ ଖାଇବୁ, ଏଇଆ ପିନ୍ଧିବୁ। ପଚାରିଲେ କହିବେ, "ଓହୋ, ଯାହା ତ ଗୋଟେ କରିଦେବୁ, ଯେମିତି ଗୋଟାଏ ବିରାଟ ସମସ୍ୟା। ଭାବିବାକୁ କ'ଣ ପୃଥିବୀରେ ଆଉ ଭଲ କଥା କିଛି ନାହିଁ ?"

ଆଜିକାଲିକା ପିଲାମାନେ ପୋଷାକପତ୍ରରେ କେତେ ଫେସନ କରୁଛନ୍ତି। ଅଥଚ ସୁଦୀପାର କଲେଜ ପଢୁଆ ପିଲାମାନେ ନିଜପାଇଁ କଷ୍ଟକରି ଡ୍ରେସ୍‌କନା ଖଣ୍ଡେ ବାଛିବେନି। କହିବେ, "ଯାହା ହେଲେ ନେଇ ଆସିବୁ। ଆମେ କ'ଣ ପିନ୍ଧିବାକୁ ମନା କରୁଛୁ ?"

ସେମାନେ 'ଯାହା ହେଲେ' କହିଦେବେ ବୋଲି ସୁଦୀପା ତ ଯାହା ତାହା ନେଇ ଆସିପାରିବନି। ସେମାନଙ୍କ ଚେହେରାକୁ ମାନୁଥିବ, ସାଙ୍ଗସାଥୀଙ୍କ ପସନ୍ଦ ହେବାଭଳି ଆଧୁନିକ ଡିଜାଇନ୍‌ର ହୋଇଥିବ, ଏମିତି ବାଛିବାକୁ ଯାଇ ନୟାନ୍ତ ହୋଇଯାଏ ସେ। ଅଥଚ ଅନେକ କଷ୍ଟକରି, ଯତ୍ନକରି ଖୋଜି ଖୋଜି ଆଣିଥିବା ପୋଷାକ ପିନ୍ଧି ଥରଟିଏ କେହି କହନ୍ତି ନାହିଁ, 'ଭଲ ହୋଇଛି।' ଭଲ ନ କହିଲେ 'ଖରାପ' ବୋଲି ତ କହି ପାରନ୍ତେ। ରଙ୍ଗ ଭଲ ହୋଇନି, ଡିଜାଇନ୍ ପସନ୍ଦ ହେଲାନି, ତା ହେଲେ ସୁଦୀପା ସେମାନଙ୍କୁ ସାଙ୍ଗରେ ନେଇ ତାଙ୍କ ପସନ୍ଦ ମୁତାବକ କିଣାଇ ଦିଅନ୍ତା। ତା'ର ଏତେ ମୁଣ୍ଡ ବିନ୍ଧେଇବା ଦରକାର ପଡ଼ନ୍ତା ନାହିଁ। ନା - ସେ ସୁଯୋଗ ସେମାନେ ଦେବେନି ତାକୁ। ବାହାଘର ଅଠର ବର୍ଷ ହେଲାଣି। ସୁଶାନ୍ତ କେବେ ବି ନିଜ ପାଇଁ ଶାର୍ଟ କି ପ୍ୟାଣ୍ଟ କନା ଖଣ୍ଡେ ପସନ୍ଦ କରିନାହାଁନ୍ତି। ସବୁବେଳେ ସୁଦୀପାର ପସନ୍ଦକୁ ହିଁ ଗ୍ରହଣ କରି ଆସିଛନ୍ତି। ସୁଦୀପା କେବେ କେବେ ଚିଡ଼ିଯାଇ କହେ, 'ଏଇନା କିଛି କହିବନି, ପରେ ହୁଏତ କହିବ ମୋ ପସନ୍ଦକୁ ତୁମ ଉପରେ ଜବରଦସ୍ତ ଲଦି ଦେଇଛି ବର୍ଷ ବର୍ଷ ଧରି।' ସୁଶାନ୍ତ ହସିଦେଇ କହନ୍ତି, 'ମୋ ପସନ୍ଦ ବିଷୟରେ ତୁମଠାରୁ ଅଧିକ କିଏ ଜାଣିପାରିବ?' ସୁଦୀପା ଭାବି ଗର୍ବିତା ହୋଇଯାଏ। ତା' ଉପରେ ଯେ ସୁଶାନ୍ତ କେତେ ନିର୍ଭରଶୀଳ ସେକଥା ଭାବି ନିଜକୁ ଗୁରୁତ୍ୱପୂର୍ଣ୍ଣ ମନେକରେ। ତଥାପି ଉପର ମନରେ ଗଜ୍‌ଗଜ୍ ହୋଇ ବିରକ୍ତ ହେଲାଭଳି ଦେଖେଇ ହୁଏ।

କାହିଁକି ଏତେ କଥା କହେ ସୁଦୀପା? ସୁଶାନ୍ତ ସ୍ୱଳ୍ପବାକ୍। ଆବଶ୍ୟକ ନ ପଡ଼ିଲେ ପାଟି ଖୋଲନ୍ତି ନାହିଁ ସେ। କିନ୍ତୁ ତାଙ୍କରି ହେପାଜତରେ ହେଉ ବା ପ୍ରୋତ୍ସାହନରେ ହେଉ ସୁଦୀପାର ଏଇ ଗପୁଡ଼ିଗୁଣ ସୁରକ୍ଷିତ ହୋଇଆସିଛି। ସୁଶାନ୍ତ ତାଙ୍କର ଖବରକାଗଜ କି ମାଗାଜିନ୍ ଧରି ବସିଥିବେ। ସୁଦୀପା ବକ୍‌ବକ୍ କରି ଚାଲିଥିବ। ସୁଶାନ୍ତ ତା କଥା ଶୁଣୁ ନାହାନ୍ତି ଭାବି ସୁଦୀପା ଚୁପ୍ ହୋଇଗଲେ ସେ କହିବେ, 'ହଁ', ନ ହେଲେ 'ସେଇଠୁ ବା 'ତା' ପରେ?' ତା'ପରେ ସୁଦୀପା ପୁଣି ଥରେ ସୁରୁ ହୋଇଯିବ। ତାର ଏଇ ଗପୁଡ଼ି ସ୍ୱଭାବ ଯୋଗୁଁ ସେ କେବେ ବିରକ୍ତ ହୋଇନାହାନ୍ତି, ବରଂ ଏପର୍ଯ୍ୟନ୍ତ ସୁଦୀପା ମନେ କରି ଆସୁଥିଲା ସେ ବେଶ୍ ଉପଭୋଗ କରନ୍ତି, ଆମୋଦିତ ହୁଅନ୍ତି। ଅସୀମ ଧୈର୍ଯ୍ୟଶୀଳ ଶ୍ରୋତାଟିଏ ବୋଲି ତାଙ୍କୁ ଭାବି ନେଇଥିଲା। ମନେ ମନେ ଅସନ୍ତୁଷ୍ଟ ହେଲେ ବି କେବେ ପ୍ରକାଶ କରିନାହାନ୍ତି ସେ ଅସନ୍ତୋଷ। ଅନେକ ବର୍ଷ ଧରି ନୀରବରେ ବରଦାସ୍ତ କରିଆସିଛନ୍ତି ସୁଦୀପାର ଅକାରଣ କଥା ବା ପ୍ରଳାପକୁ। ଆଜି କିନ୍ତୁ ଅକସ୍ମାତ୍ ବାହାରି ଆସିଲା ସେଇ ଅସନ୍ତୋଷ ବାଟଟିଏ ପାଇ।

ଘଟଣାଟି - ଏମିତି - ସୁଦୀପାର ପୁଅଦୁହେଁ ମଧ ସୁଶାନ୍ତଙ୍କ ପରି ସ୍ୱଳ୍ପବାକ୍।

ଏତେ ଅଳ୍ପ ବୟସରୁ ଏମିତି ଆଚରଣ କରନ୍ତି ଯେମିତି କୋଉ ବିଜ୍ଞ, ପ୍ରାଜ୍ଞ, ଗୁରୁଗମ୍ଭୀର ବୟସ୍କ ବ୍ୟକ୍ତିମାନ। ସୁଦୀପା ଆଖିରେ ତ ସେମାନେ ଏବେ ବି ପିଲା। ସେମାନଙ୍କର ଗମ୍ଭୀର ଆଚରଣ ତାକୁ ଭଲଲାଗେ ନାହିଁ। ପିଲାମାନେ ଟିକେ ପାଟିତୁଣ୍ଡ ହୋ ହଲ୍ଲା କରିବେନି, ମଜାଗପ କରିବେନି, ମନଖୋଲି ହସିବେନି, ଅଳି ଅଝଟ କରିବେନି - ଏ ସବୁ ଦେଖି ତାକୁ ଭାରି ଅଡୁଆ ଲାଗେ। ବେଶ୍ ବଡ଼ ପରିବାରର ଝିଅ ସେ। ନଅଜଣ ଭାଇ ଭଉଣୀ ସେମାନେ। ଘରେ ଆର୍ଥିକ ଅଭାବ ଥିଲେ ବି ଆନନ୍ଦର ଅଭାବ ନଥିଲା। ଶାଗ, ପଖାଳ, ଲୁଣ ଭାତ ଖାଇ ବି ସେମାନେ ଖୁବ୍ ମଜାରେ ସମୟ କଟାଇଛନ୍ତି। ବର୍ତ୍ତମାନ ଭଳି ବାହାରର ଚାକଚକ୍ୟ ପ୍ରତି ପ୍ରଲୁବ୍ଧ ହେବା, ଅନାବଶ୍ୟକ ଅଭାବବୋଧରେ ଘାରିହେବା ତଥା ଅନ୍ୟମାନଙ୍କ ସହିତ ନିଜକୁ ସବୁବେଳେ ତୁଳନା କରି ହା ହୁତାଶ କରିବାର ସୁଯୋଗ (?) ସେମାନଙ୍କର ନଥିଲା। ନିଜର ପାରିପାର୍ଶ୍ୱିକ ଅବସ୍ଥାକୁ ନେଇ ନିଜ ଭିତରେ ଏକ ଆନନ୍ଦମୟ ରାଜ୍ୟ ସେମାନେ ତିଆରି କରିନେଇ ପାରୁଥିଲେ। କାଗଜ ଡଙ୍ଗାଟିଏ ପାଇଁ ବା ରବର କଣ୍ଢେଇଟିଏ ପାଇଁ କଳିକଜିଆ, ବାଡ଼ିଆପିଟା, ଚୁଟି ଝିଙ୍କାଝିଙ୍କି ହୋଇଛନ୍ତି। ପୁଣି ଏକାଠି ଖାଇଛନ୍ତି, ବୁଲିଛନ୍ତି, ନାଚିଛନ୍ତି। ଏଇ ବୟସରେ ମଧ୍ୟ ସୁଦୀପା ବାପଘରକୁ ଗଲେ ବାପା, ବୋଉ, ଭାଇ, ଭାଉଜ, ଝିଆରୀ, ପୁତୁରାଙ୍କୁ ନେଇ ବେଶ୍ ଆସର ଜମେଇ ଦିଏ। କୌଣସି ଗୋଟାଏ ଉପଲକ୍ଷ୍ୟ ନେଇ ବାପଘରକୁ ଯିବାକୁ ସବୁବେଳେ ଟାକି ରହିଥାଏ ସେ।

କିନ୍ତୁ ସୁଦୀପାର ନିଜ ପରିବାରଟି ତାକୁ ନିଃସଙ୍ଗ ଲାଗେ। ନୀରବତା ତାକୁ ଅଡୁଆ। ସେ ଭାବେ, କଥା ନ କହିଲେ ସମସ୍ତଙ୍କ ମଧ୍ୟରେ ଯୋଗସୂତ୍ର ରହିବ କେମିତି ? ତେଣୁ କେହି କିଛି ନ କହୁଥିଲେ ବି ସେ ଉପରେ ପଡ଼ି ନିକୁଟେଇ ହୋଇ ପଚାରେ, କଥା କହେ। ତା' ପରିବାରର ସୁଖ, ଶାନ୍ତି, ସ୍ନେହ, ସୌହାର୍ଦ୍ଦ୍ୟ ବଜାୟ ରଖିବାର ଦାୟିତ୍ୱ ତ ସୁଦୀପାର। ସମସ୍ତେ ଯଦି ବିଚ୍ଛିନ୍ନ ଦ୍ୱୀପଟିଏ ଭଳି ନିଜ ନିଜ ଭିତରେ ଆବଦ୍ଧ ରହିବେ, ତା ପରିବାର ଚଳିବ କେମିତି ?

ସେଇଥିପାଇଁ ସେ ପଚାରେ ପୁଅମାନଙ୍କୁ, "କୁଆଡ଼େ ଯାଇଥିଲୁ କି ବାପା ? ଏତେ ବେଳ ହେଲାଣି, ନଖାଇ ନପିଇ ବୁଲୁଛୁ। ଦେହ ଖରାପ ହେବ ନାହିଁ ?"

- "ସାଙ୍ଗ ଘରକୁ ଯାଇଥିଲୁ ? ତାଙ୍କ ଘରଲୋକ କେମିତିକା ? ତୋ ସାଙ୍ଗର ଆଉ କେତୋଟି ଭାଇଭଉଣୀ ? ତାଙ୍କ ମା କେମିତି ?"

ଖଟ ଉପରେ କୋଉ ପୁଅ ଯଦି ଚୁପ୍ ହୋଇ ଶୋଇଥିବ, ସୁଦୀପା ଯାଇ ପଚାରିବ, ଦେହ ଭଲ ଲାଗୁନି କି ବାପା ? ଦେଖେ ? ନା ଜ୍ୱର ନାହିଁ। ମୁଣ୍ଡ ବିନ୍ଧୁଛି ? ଅମୃତାଞ୍ଜନ ଲଗେଇବୁ ? ଗରମ କ୍ଷୀର ଟିକେ ପିଇଦେ।" ପୁଅ ଚିଡ଼ିଯାଇ ମୁହଁ ବୁଲେଇ

ଦିଏ। ସୁଦୀପାକୁ ବ୍ୟସ୍ତ ଲାଗିଲେ ବି କିଛି କରି ପାରେ ନାହିଁ। ତଥାପି ତା'ର ଗୁଣ ସେମିତି। ନୂଆ ଡ୍ରେସ୍‌ଟିଏ ପିନ୍ଧିଲେ ପୁଅକୁ ପଚାରେ, "ତୁ ତ ଆଣିବାକୁ ଗଲୁନି। କେତେ ଭାବିଚିନ୍ତି ଏଇଟା ପସନ୍ଦ କରି ଆଣିଚି। ତୋ ମନକୁ ଯାଉଚି କି ନାଇଁ ? ଏଇଟା କୁଆଡ଼େ ଏବେ ନୂଆ ଫେସନ ହୋଇଛି। ତୋ ସାଙ୍ଗମାନେ କେହି ଏମିତି ପିନ୍ଧୁଛନ୍ତି ? ଏଇ ରଙ୍ଗଟା ତୋତେ ଭଲଲାଗେ ତ ?"

- "ଠିକ୍ ଅଛି।" ପଦକରେ କଥା ସାରିଦିଏ ପୁଅ। ସୁଦୀପାର ଉତ୍ସାହ ମଉଳିଯାଏ।

ସେଦିନ ସେମିତି ଖାଇବାବେଳେ ସୁଦୀପା ଆଗ୍ରହରେ ପଚାରୁଥିଲା, "ତରକାରୀ ଭଲ ଲାଗୁଛି ନା ନାହିଁ ? ମୋର ଗୋଟେ ସାଙ୍ଗ ପାଖରୁ ଏଇ ରନ୍ଧାଟା ଶିଖିଛି। ଭାରି ବଢ଼ିଆ ରାନ୍ଧେ ସେ। ସବୁଦିନ ଅଫିସ୍‌କୁ ବଢ଼ିଆ ବଢ଼ିଆ ଟିଫିନ୍ ଆଣେ। ମୋତେ ଚାଇନିଜ୍ ରନ୍ଧା ଶିଖେଇଦେବ ବୋଲି କହିଛି।" ଆହୁରି କ'ଣ କ'ଣ କହି ଆସୁଥିଲା ସେ। ହଠାତ୍ ସୁଶାନ୍ତ ଗମ୍ଭୀର ହୋଇ କହିଲେ, "ଅକାରଣରେ ଏତେ କଥା ନ କହିଲେ କ'ଣ ଚଳନ୍ତାନି ?" ତା'ପରେ ବଡ଼ପୁଅ ଶାଶ୍ୱତର କଥା, "ଦିନକୁ ଦଶହଜାରରୁ ଅଧିକ ଅଦରକାରୀ ଶବ୍ଦ ମା' କହୁଥିବ।" ସବା ଶେଷରେ ସାନପୁଅ ସୌରଭର ଟୀପ୍ପଣୀ, "ଏମ୍‌ଟି ଭେସେଲ୍ ସାଉଣ୍ଡସ୍ ମଚ୍।"

ସୁଦୀପାର କଥା ଅଦରକାରୀ, ଅକାରଣରେ ବକ୍‌ବକ୍ ହୁଏ ସେ। ସୁଦୀପାର କଥା ଫମ୍ପା ମାଠିଆର ଶବ୍ଦ ପରି ମୂଲ୍ୟହୀନ ! ଆହତ ହୋଇଗଲା ସେ। କ୍ଷତାକ୍ତ ହୋଇଗଲା ଅନ୍ତର ଭିତରେ। ଅପମାନରେ ଅଭିମାନରେ ଏତେ ଟିକେ ହୋଇଗଲା। ଆଖିପତା ତଳକୁ ନିଗିଡ଼ି ଆସୁଥିବା ଲୁହସବୁ ଭିତରକୁ ନେଇଗଲା ସେ ଅନେକ କଷ୍ଟକରି। ରୁଟି ଚୋବେଇବା ବାହାନାରେ ତଳକୁ ମୁହଁପୋତି ବସିଲା। ମନ ହେଉଥିଲା ଉଠି ପଳେଇବାକୁ ସେଇଠୁ; ନା - ସେମିତି କଲେ ଅନ୍ୟମାନେ ମଧ୍ୟ ଖାଇପାରିବେ ନାହିଁ। ସେ ମାଆ, ସେ ସ୍ତ୍ରୀ। ସ୍ୱାମୀ, ସନ୍ତାନଙ୍କୁ ଅଭୁକ୍ତ ରଖିବା ତା' ପକ୍ଷରେ ଉଚିତ ହେବନାହିଁ। ଆଉ ପଦିଏ ବି କଥା ନକହି ଚୁପ୍‌ଚାପ୍ ଖାଇନେଲା। ଆଉ କେହି କିଛି କହିବାର ଚେଷ୍ଟା କଲେ ନାହିଁ। ବାତାବରଣ ଓଜନିଆ ମନେ ହେଉଥିଲା।

ଖାଇସାରିବା ପରେ ସୁଦୀପା ବାସନ ଉଠାଇ ରଖିଦେଲା। ସକାଳେ ଧୁଆହେବ। ରୋଷେଇଘର କାମସାରି ଧୁଆଧୋଇ ହୋଇ ଶୋଇ ପଡ଼ିଲା ନୀରବରେ। ବାପ ପୁଅ ତିନିହେଁ ବସି ଟି.ଭି. ଦେଖୁଥିଲେ।

ଏତେ ସମୟଯାଏ ଅପେକ୍ଷା କରି ରହିଥିବା ଲୁହସବୁ ଝରଝର ହୋଇ ତକିଆ ଉପରେ ଝରିପଡ଼ିଲା। ମୁଣ୍ଡ ଉପରେ ହାତରଖି ଶୋଇଥିଲା ସେ। ତେଣୁ ତା'ର ନିଃଶବ୍ଦ

କାନ୍ଦଣା କାହା ଆଖିରେ ପଡ଼ିବା ସମ୍ଭବ ନୁହେଁ। କିଛି ଲୁହ ଝରିଯିବା ପରେ ମନ ଟିକେ ଶାନ୍ତ ପଡ଼ିଲା। ସୁଦୀପା ଏଥରକୁ ନିଜ ଭିତରକୁ ଚାହିଁ ଦେଖିଲା, ଯାହାକୁ କହନ୍ତି ଆତ୍ମସମୀକ୍ଷା। କାହିଁକି ଏତେ କଥା କହେ ସେ ? ପିଲାଟି ଦିନରୁ ଏମିତି ଗପୁଡ଼ି ଅଭ୍ୟାସ ତା'ର। ଅବଶ୍ୟ ଦୁଇ ବର୍ଷ ଯାଏ କୌଣସି କାରଣରୁ ତା'ର ପାଟି ଫିଟୁ ନଥିଲା। ବାପା ବୋଉ କେତେ ଡାକ୍ତରଙ୍କ ପାଖକୁ ଧାଇଁ, କେତେ ଠାକୁର ଦେବତାଙ୍କୁ ମାନସିକ କରି, ଝଡ଼ାଫୁଙ୍କା, ଡେଉଁରିଆ, ତାବିଜ କରି ବ୍ୟସ୍ତ ହୋଇପଡ଼ିଥିବା ସମୟରେ ହଠାତ୍ ଦିନେ କଥା କହିବାକୁ ଆରମ୍ଭ କଲା ସୁଦୀପା। ଅନର୍ଗଳ କଥା ସେ କହୁଥିଲା। ହୁଏତ ସାମାନ୍ୟ ବିଳମ୍ବରେ କଥା କହିବା ଆରମ୍ଭ କରିଥିବାରୁ କ୍ଷତିପୂରଣ ବାବଦକୁ ବହୁତ ବେଶି କଥା ସେ କହୁଥିଲା। ଶୋଇପଡ଼ିବା ସମୟ ବ୍ୟତୀତ ବଳକା ସମୟତକ ସେ ଖାଲି କଥା ହିଁ କହୁଥିଲା। ତା'ର ବାକ୍‌ଶକ୍ତି ନେଇ ବ୍ୟତିବ୍ୟସ୍ତ ହୋଇପଡ଼ିଥିବା ବାପା ବୋଉ ତା'ର ଏଇ ବାକ୍‌ପଟୁତା ଦେଖି ଗଦ୍‌ଗଦ ହୋଇଯାଉଥିଲେ। ଉତ୍ସାହିତ ହୋଇ ଆହୁରି ଗପିବାକୁ ପ୍ରେରିତ କରୁଥିଲେ। ଘରକୁ ଯେ କେହି ଆସିଲେ ସୁଦୀପା ଯେମିତି ପ୍ରଦର୍ଶନୀର ସାମଗ୍ରୀଟିଏ ଥିଲା। ଏତେ କମ୍ ବୟସରୁ କଥା କହିବାର କଳା କାରିଗରୀକୁ ଆୟତ୍ତ କରି ନେଇଥିଲା ସେ। ତା'ର ଗୁଲୁଗୁଲିଆ କଣ୍ଠରେ କେତେ ସୁନ୍ଦର ଗୀତ ସେ ଗାଉଥିଲା। ପୁଣି ଆଈ, ଜେଜେମା'ଙ୍କ ଠାରୁ ଶୁଣି ମନେ ରଖିଥିବା ଟୁଆଁ ଟୁଇଁ କଥା, ରାଜାପୁଅ ରାଜାଝିଅ କଥା, ବୁଢ଼ୀ ଅସୁରୁଣୀ କଥା, ନାକୁଆ କଣ୍ଢରା, ଚାରି ସଙ୍ଗାତ ଏମିତି କେତେ ଗପ ସେ କହି ସମସ୍ତଙ୍କୁ ଚମକୃତ କରି ଦେଉଥିଲା। ଯୋଉଠି ମନେ ନ ପଡ଼ିବ ଗପ, ଗୀତ ଯାହା ହେଉ, ମନକୁ ମନ ଫାନ୍ଦି ସେ କହି ଦେଉଥିଲା। ତା'ର ଏଇ ଅଦ୍ଭୁତ କ୍ଷମତାରୁ ବେଶ୍ ଫାଇଦା ଉଠାଉଥିଲେ ବଡ଼ମାନେ। ଘରେ ସାନ ସାନ ପିଲାଙ୍କୁ ତା'ର ହେପାଜତ୍‌ରେ ରଖି ମାଆ ଖୁଡ଼ୀମାନେ ଘରକାମ କରୁଥିଲେ। ସେ ଗପ କହି ଏମିତି ଭୋଳ କରି ଦେଉଥିଲା ଯେ ପିଲାମାନେ ଦୁଷ୍ଟାମି କରିବାକୁ ଭୁଲିଯାଉଥିଲେ। ସ୍କୁଲ୍‌ରେ ମଧ୍ୟ ତା'ର ଦିଦି, ସାର୍‌ମାନେ ତା' ଦାୟିତ୍ୱରେ କ୍ଲାସ୍ ଛାଡ଼ି ନିଶ୍ଚିନ୍ତରେ ଖାତା ଦେଖୁଥିଲେ। ମନରୁ ଫାନ୍ଦି ଅସରନ୍ତି ଗପ ସେ କହି ପାରୁଥିଲା। ତା'ର କହିବାର ଶୈଳୀ ମଧ୍ୟ ଏତେ ସୁନ୍ଦର ଥିଲା ଯେ ତା' ଗଳ୍ପର ଘଟଣାସବୁ ଶ୍ରୋତାମାନଙ୍କ ସମ୍ମୁଖରେ ଜୀବନ୍ତ ହୋଇ ଉଠୁଥିଲା। ସ୍କୁଲ କଲେଜରେ ପଢ଼ିଲା ବେଳେ ଡିବେଟ୍, ପଦ୍ୟାବୃତ୍ତି, ଅଭିନୟରେ ଅନେକ ସଫଳତା ମିଳିଥିଲା ତାକୁ। କେହି କେବେ ତା' କଥା ଶୁଣିବାରେ ଅନାଗ୍ରହ ପ୍ରକାଶ କରିନାହାନ୍ତି ବା ତାକୁ ବିରକ୍ତ ହୋଇନାହାନ୍ତି। କେବଳ ତା ବାହାଘର ବେଳେ ଖୁଡ଼ୀ ତାକୁ ଚୁପ୍‌କିନା ଡାକି କହିଥିଲେ, "ମୋ ମାଆଟି ପରା, ଶାଶୂଘରେ ଆଉ ଡ଼ବଡ଼ବ ହୋଇ କଥା କହିବ ନାହିଁଟି ! ଗୁରୁଜନଙ୍କ ସାଙ୍ଗରେ କଥା କହିଲେ ଗାଁରେ ବାରିଦେବେ। 'ହଁ', ନାହିଁରେ

ଯେତିକି ହେବ ସେତିକି, ମୁଣ୍ଡ ଟୁଙ୍ଗାରି କାମ ଚଳେଇଲେ ତ ଆହୁରି ଭଲ।" ସେଇ ଭାବପ୍ରବଣ ମୁହୂର୍ତ୍ତରେ ଖୁଡ଼ୀଙ୍କ କଥାରେ ରାଜି ନ ହେବାର କାରଣ ନଥିଲା। କିନ୍ତୁ ସେଇ ପ୍ରତିଶ୍ରୁତି କେତେ ଦୂର ରକ୍ଷା କରିପାରିବ ସେ କଥାରେ ସୁଦୀପାର ନିଜ ଉପରେ ବିଶ୍ୱାସ ନଥିଲା।

ଶାଶୂଘରକୁ ଯାଇ ଅଜଣା ଅଚିହ୍ନା ପରିବେଶରେ ପ୍ରଥମେ ହଡ଼ବଡେଇ ଯାଇ ଚୁପ୍ ହୋଇ ଯାଇଥିଲା ସେ। କିନ୍ତୁ ସେଇ ସ୍ନେହପ୍ରବଣ ଲୋକମାନଙ୍କ ପାଖରେ ସହଜ ହୋଇପାରିବା ପାଇଁ ଓଳିଟିଏ ବି ଲାଗି ନଥିଲା ତାକୁ। ସବୁ ନିୟମ ଶୃଙ୍ଖଳାର ଉର୍ଦ୍ଧ୍ୱରେ ଥିଲା ସୁଦୀପା। ତା'ର ସରଳ ଅଭିବ୍ୟକ୍ତିରେ ସମସ୍ତେ ମୁଗ୍ଧ ହୋଇଗଲେ। ତା' କଥା ଶୁଣିବା ପାଇଁ ସମବୟସୀ ଝିଅ ବୋହୂଙ୍କ ସହିତ ବୁଢ଼ୀମାନେ ମଧ ଗହଳି କଲେ ତା' ପାଖରେ। ସୁଦୀପାର ଜେଜେଶାଶୂ ଆଦର କରି କହିଥିଲେ, "ନାତୁଣୀବୋହୂ ତ ମୋର କଥା କୁହା ମଇନାଟିଏ।" ହଁ, ଅସହିଣୀ ହୋଇ କେହି କେହି ତାକୁ 'କଥା ଚାନ୍ଦେଇ' ବୋଲି ଯେ କହି ନାହାନ୍ତି ତା' ନୁହେଁ। କିନ୍ତୁ ସୁଦୀପା ସେସବୁ କଥାକୁ କାନ ଦିଏ ନାହିଁ।

ବାହାଘରର ପ୍ରଥମ ସଙ୍କୋଚ କଟିଯିବା ପରେ ସୁଦୀପା ଅନୁଭବ କରିଥିଲା ସ୍ୱାମୀ ତା'ର ଖୁବ କମ୍ କଥା କହନ୍ତି। ହୁଏତ ତା'ର ଗପୁଡ଼ି ଗୁଣ ତାଙ୍କର ପସନ୍ଦ ହୋଇ ନପାରେ। କିନ୍ତୁ ଅଳ୍ପ ଦିନ ମଧ୍ୟରେ ବୁଝି ପାରିଲା ନିଜେ ଗପି ନ ପାରିଲେ ମଧ ସୁଦୀପାର କଥା ତାଙ୍କୁ ଭଲ ଲାଗେ। ତାଙ୍କର ପଦେ ଅଧେ କଥାରେ ଉତ୍ସାହିତ ହୋଇ ସୁଦୀପା ଅନର୍ଗଳ ଗପି ଚାଲିଲେ ବି ସେ କ୍ଳାନ୍ତ ହୁଅନ୍ତି ନାହିଁ ଶୁଣିବାରେ। କେତେ ରାତି ସକାଳ ହୋଇ ଯାଇଥିବ ଏମିତି ଗପିବାରେ ଆଉ ଶୁଣିବାରେ।

ଶାଶୂଘରୁ ସୁଶାନ୍ତଙ୍କର ଚାକିରି ଜାଗାକୁ ଗଲା ସୁଦୀପା। ସୁଶାନ୍ତ ଅଫିସ୍ ଚାଲିଗଲେ ଭାରି ଏକୁଟିଆ ଲାଗେ ତାକୁ। ଯାହା ହେଲେ ବି ଅଳ୍ପ ବୟସର ବୋହୂଟିଏ ସେ। ମନକୁ ମନ ଦାଣ୍ଡକୁ ବାହାରି କିମ୍ବା କାହା ଘରକୁ ଯାଇ ଗପିବାକୁ ସଙ୍କୋଚ ହୁଏ ତା'ର। ଘରକାମ କରୁ କରୁ ଏକାଏକା କଥା କହେ ନିଜ ସହିତ। ନହେଲେ ବିଲେଇ, କୁକୁର, କାଉ, ବଣିଙ୍କ ସହିତ କଥା ହୁଏ। ଯିଏ ଶୁଣିବ ଭାବିବ ପାଗଳ। କିନ୍ତୁ ସିଏ ତ ପାଗଳ ନୁହେଁ। କଥା କହିବା ତା'ର ଗୋଟାଏ ଅଭ୍ୟାସ। ବଦଭ୍ୟାସ ବୋଲି କେହି କହିପାରନ୍ତି।

ସୁଦୀପାର ଏକୁଟିଆପଣକୁ ସାଙ୍ଗ ଦେବାପାଇଁ ତା'ର କୋଳ ପୂର୍ଣ୍ଣ କରି ଦୁଇବର୍ଷ ବ୍ୟବଧାନରେ ଦୁଇଟି ସନ୍ତାନ ଆସିଲେ। ସେଇମାନଙ୍କ ସହିତ ଏକତରଫା କଥା କହି ଖୁସି ହୁଏ ସେ। ତେଲ ମାଲିସ୍ କରିବାବେଳେ, ଗାଧୋଇ ଦେବାବେଳେ, ଖୁଆଇଦେବା ବେଳେ, କି ଶୋଇଦେବା ବେଳେ ସେମାନେ ବୁଝନ୍ତୁ କି ନ ବୁଝନ୍ତୁ ସୁଦୀପା କେତେ ଗପ, କେତେ ଗୀତ କହିଯାଏ, ଗାଇଯାଏ। ଆସ୍ତେ ଆସ୍ତେ ପିଲାଏ ବଡ଼ହେଲେ,

ସ୍କୁଲଗଲେ। ସୁଦୀପା ପୁଣି ଏକୁଟିଆ ହୋଇଗଲା। କାହା ସାଙ୍ଗରେ ଗପିବ ? ଘରକାମ କରିବାକୁ ଆସୁଥିବା ଚାକରାଣୀ ସହିତ ଗପେ। ତା'ପରିବାର, ପୁଅ ବୋହୂ, ଝିଅ ଜ୍ୱାଇଁ, ନାତି ନାତୁଣୀଙ୍କ ଖବର ପଚାରେ। ବୋହୂର ବର୍ଷକୁ ବର୍ଷ ପିଲା ହେଉଛି, ତା' ଦେହ ଭାଙ୍ଗି ଗଲାଣି ବୋଲି ତାଗିଦା କରେ ଏଇଥର ଫାମିଲି ପ୍ଲାନିଂ ଅପରେସନ୍ କରେଇଦେବାକୁ। ପନ୍ଦର ବର୍ଷର ଝିଅକୁ ବାହା କରିଦେଇଛି ବୋଲି ତାକୁ ଗାଳି ଦିଏ। କାମରେ ଗଲତି ଦେଖିଲେ ତାଗିଦ କରେ। ଚାକରାଣୀ ଧୈର୍ଯ୍ୟର ସହିତ ତା କଥା ଶୁଣେ। ସେ ଜାଣିଛି, ସୁଦୀପା ଗାଳି ଦେଲେ ବି ଭାତ, ରୁଟି ଜଳଖିଆ ଦେବାରେ ହେଳା କରିବ ନାହିଁ। ତା' ଆଗରେ ନିଜର ଦୁଃଖକୁ ଯେତେ ଫେଣେଇ କରି କହିବ, ପୁରୁଣା ଶାଢ଼ି, ସାୟା, ବ୍ଲାଉଜ୍ ଚପଲ କେତେ କ'ଣ ସେ ଦେଇ ପକେଇବ।

ସାହି ପଡ଼ିଶାରୁ କେବେ କେବେ କେହି ଆସନ୍ତି ବୁଲିବାକୁ। କିନ୍ତୁ ଅଧିକାଂଶଙ୍କର ଖାଲି ପରନିନ୍ଦା ଆଉ ପରଚର୍ଚ୍ଚା। ସେସବୁ ଆଦୌ ଭଲ ଲାଗେନି ସୁଦୀପାକୁ। ସେ ସିଧା ମୁହଁ ଉପରେ କହିଦିଏ, ସେମିତି କାହା ନାଁରେ ଏଣୁତେଣୁ କହିବାକୁ କି ଶୁଣିବାକୁ ଭଲ ଲାଗେନି ତାକୁ। ଗପିବାକୁ କ'ଣ ଭଲକଥା କିଛି ନାହିଁ ସଂସାରରେ ? କିନ୍ତୁ ପରଚର୍ଚ୍ଚାଠାରୁ ମୁଖରୋଚକ ଆଲୋଚନା ଆଉ କିଛି ନଥାଏ ଅଧିକାଂଶଙ୍କ ପାଖରେ। ନିରୁତ୍ସାହୀ ହୋଇ ସେମାନେ ଫେରିଯାଆନ୍ତି ସୁଦୀପା ପାଖରୁ।

ଭିକାରୀ ବୁଢ଼ାଟିକୁ ଖାଇବାକୁ ଦେଇ ତା' ସହିତ କଥାହୁଏ ସେ। ରିକ୍‌ସାରେ ବସି ଗଲାବେଳେ ରିକ୍‌ସାବାଲାକୁ ବି ପଚାରେ ତା'ର ରୋଜଗାର, ପରିବାରର ଭଲମନ୍ଦ ବିଷୟରେ। ଶୁଖୁଆବାଲୀ ଦକ୍ଷିଣୀ ବୁଢ଼ୀଟି ତ ସୁଦୀପାକୁ ଝିଅ କରିଛି ତା' କଥା ଶୁଣି ଶୁଣି। ସେ ଶୁଖୁଆ ରଖୁ କି ନରଖୁ, ତା' ପରି ଛାର ମଣିଷଟିର ଖବର କିଏ ଏତେ ଆନ୍ତରିକତାର ସହ ପଚାରେ ସୁଦୀପା ଛଡ଼ା ? ଆଜିକାଲି ଦ୍ୱିପ୍ରହର ସମୟରେ ସେଲ୍‌ସ ଗାର୍ଲମାନେ ଆସନ୍ତି ସାବୁନ୍, ସେଣ୍ଟ, ପାଉଡର, ଟୁଥ୍‌ପେଷ୍ଟ, ପାମ୍ପଡ଼, ସିମେଇ ଇତ୍ୟାଦି କେତେ କ'ଣ ନେଇ। ଯିଏ ବି ଆସନ୍ତି, ସୁଦୀପା କିଛି ନା କିଛି ରଖେ ସେମାନଙ୍କଠାରୁ। ଆହା ! ଝିଅପିଲାଗୁଡ଼ା, ଖରାତରାରେ ଘର ଘର ବୁଲୁଛନ୍ତି ପେଟ ପୋଷିବା ପାଇଁ। ଜିନିଷ କିଣାବିକା ସମୟରେ ସେମାନଙ୍କ ରହଣି, ନିତିଦିନିଆ ଜୀବନଚର୍ଯ୍ୟାଠାରୁ ଆରମ୍ଭକରି ସେମାନଙ୍କର ପରିବାର ସମ୍ବନ୍ଧରେ ଅନେକ ଖବର ଜାଣିନିଏ ସୁଦୀପା। ସରସ୍ୱତୀ ପୂଜା, ଗଣେଶ ପୂଜାରେ ଘରକୁ ଚାନ୍ଦା ମାଗିବାକୁ ଆସୁଥିବା ପିଲାମାନଙ୍କୁ ପଚାରେ, "ତୁମେ ସବୁ କୋଉଠି ପଢ଼ ? ପଢ଼ା ଛାଡ଼ି ଦେଇଛ ? କି ଲାଭ ତା'ହେଲେ ବର୍ଷ ବର୍ଷ ଧରି ସରସ୍ୱତୀ ପୂଜା, ଗଣେଶ ପୂଜା କରି ? ତୁମର ଏଇ ମେଢ଼, ଲାଇଟ୍ ସଜା, ମାଇକ୍ ବଜା ପୂଜା ମୋତେ ଜମା ଭଲ ଲାଗେ ନାହିଁ। ତୁମମାନଙ୍କର କେତେ ସମୟ ଅକାରଣରେ

ନଷ୍ଟ ହେଉଛି। କ'ଣ ଲାଭ ହେଉଛି କହିଲ ସମାଜର, ଏସବୁ ପୂଜା ଆଡ଼ମ୍ବର କରି? ବରଂ ସମାଜର ମଙ୍ଗଳ ହେବା ଭଳି କିଛି କାମ କର। ମୁଁ ନିଶ୍ଚୟ ସହଯୋଗ କରିବି।" ତା'ର ଭାଷଣ ଶୁଣି ନିରାଶରେ ଫେରିଯାଆନ୍ତି ଚାନ୍ଦା ମାଗିବାକୁ ଆସିଥିବା ପିଲାମାନେ। ସୁଦୀପାର ପୁଅମାନେ ହସନ୍ତି। କହନ୍ତି, "ମା' କଥାରେ ଅନୁପ୍ରାଣିତ ହୋଇ ସେମାନେ ଏଇଥରଠାରୁ ପୂଜା କରିବା ଛାଡ଼ିଦେବେ।"

କେହି ଶୁଣନ୍ତୁ କି ନ ଶୁଣନ୍ତୁ, ତା' କଥାକୁ ଗୁରୁତ୍ୱ ଦିଅନ୍ତୁ କି ନ ଦିଅନ୍ତୁ, ତା'ର ଯାହା କହିବାକୁ ଇଚ୍ଛାହୁଏ କହିଦିଏ। କାହାର କ'ଣ କ୍ଷତି ହୋଇ ଯାଉଛି ସେଥିରେ? ସୁଦୀପା ଜାଣି ଜାଣି କାହାର କ୍ଷତି କରିବା ଭଳି ଲୋକ ଆଦୌ ନୁହେଁ। ତଥାପି ତା'ର ଗପୁଡ଼ି ପ୍ରକୃତି, ସରଳ ହୃଦୟ ଓ ଖୋଲା ସ୍ୱଭାବ ଯୋଗୁଁ ନ କହିବା କଥାତକ କହି ହୋଇଯାଏ। ସମସ୍ତଙ୍କ ପାଖରେ ସବୁ କଥା କହିବା କ'ଣ ନିହାତି ଦରକାର? ନିଜର ବୋଲି କିଛି ଗୋପନୀୟତା ରହିବ ନାହିଁ, ରହସ୍ୟ ରହିବ ନାହିଁ, ଲୋକମାନେ ତୁମକୁ ଗୁରୁତ୍ୱ ଦେବେ କାହିଁକି? କେବେ କେବେ ସୁଶାନ୍ତ ଚେତାଇ ଦିଅନ୍ତି ସମସ୍ତଙ୍କ ପାଖରେ ସବୁକଥା ନ ଗପିବାକୁ। ସୁଦୀପା ହସିଦେଇ କହେ, "ମୋର ବାବା ଲୁଚା ଚୋରା କଥା କିଛି ନାହିଁ। - ବାହାରେ ଗୋଟାଏ କଥା, ଆଉ ମୁହଁରେ ଆଉ ଗୋଟାଏ, ସେକଥା ନାହିଁ। ଯାହା ଭିତରେ ମଇଳା ଥିବ, ସେ ସିନା କଥା ଲୁଚେଇବ। ମୋର ମନ ସଫା - ମୋର କଥା ବି ସଫା।" କିନ୍ତୁ ତା'ର ସେଇ ସିଧାସଳଖ ସଫା କଥା ଯୋଗୁଁ କେବେ କେବେ ଅସୁବିଧାରେ ପଡ଼ନ୍ତି ସେମାନେ। ପୃଥିବୀରେ ବଙ୍କା ରାସ୍ତାରେ ଯିବା ଲୋକଙ୍କର ସଂଖ୍ୟା ଅଧିକ ଯେ! କାହା କାହା ସହିତ ମନାନ୍ତର ମଧ୍ୟ ହୋଇଯାଏ ସୁଦୀପାର ଏଇ ଗପୁଡ଼ି ଗୁଣର ଅସାବଧାନତା ଯୋଗୁ। ସେ ମନାନ୍ତର କିନ୍ତୁ ସ୍ଥାୟୀ ହୋଇପାରେ ନାହିଁ। ସୁଦୀପାର କଥାର ବନ୍ୟାରେ ମନାନ୍ତରର ବାଡ଼ କୁଆଡ଼େ ଭାସି ଚାଲିଯାଏ।

ପିଲାଦିନରୁ ଏ ପର୍ଯ୍ୟନ୍ତ କେତେ ନାଁ ସେ ପାଇଛି ତା'ର ଏଇ ଗପୁଡ଼ି ସ୍ୱଭାବ ଯୋଗୁଁ। କଥାକୁହା କଣ୍ଢେଇ, ଟକିଂ ଡଲ୍, କଥା ଚାଙ୍ଗୁଡ଼ି, ଗପୁଡ଼ି ବୁଢ଼ୀର କାହାଣୀ ପେଡ଼ି, ଟେପ୍ ରେକର୍ଡର, ଅଲ୍ଇଣ୍ଡିଆ ରେଡ଼ିଓ ଏମିତି କେତେ ନାଁ କେତେ ଲୋକ ତାକୁ ଦେଇଛନ୍ତି। ସେଇସବୁ ନାଁ ନେଇ ସେ କେବେ ଲଜ୍ଜିତ ହୋଇନାହିଁ। ବରଂ ଗୌରବବୋଧ କରିଛି। କିନ୍ତୁ ଆଜି ନିଜର ଜନ୍ମିତ ସନ୍ତାନର ଆକ୍ଷେପ ତାକୁ ଯେମିତି କାଚପାତ୍ରଟିଏ ପରି ଖଣ୍ ଖଣ କରି ଭାଙ୍ଗିଦେଇଛି। ଫମ୍ପା ମାଠିଆ ସେ। ଏ ପର୍ଯ୍ୟନ୍ତ କେବଳ ବିରକ୍ତିକର ଧ୍ୱନି ସୃଷ୍ଟିକରି ଅନ୍ୟମାନଙ୍କୁ ବିରକ୍ତ କରିଆସିଛି। ଭଦ୍ରାମିରେ, ସୌଜନ୍ୟବୋଧରେ କେହି ପ୍ରତିବାଦ କରିନାହାନ୍ତି। ଏଇ ଛୁଆମାନଙ୍କୁ ତା'ର କାନ୍ଧରେ ପକାଇ ରାତି ରାତି ବୁଲିଛି। ଶୋଇଯିବା ପାଇଁ କେତେ ଗପ କହିଛି, ଗୀତ ଗାଇଛି।

ଅଝଟିଆ ପଣ କରି ନ ଖାଇଲେ କେତେ ଅଦ୍ଭୁତ ଅଜବ କଥା କହି ତାଙ୍କ ମନରେ ଚମକ୍ ସୃଷ୍ଟି କରି ଗୁଣ୍ଡାଟିଏମାନ ଗିଳାଇଛି। ସେମାନଙ୍କ ମନରେ ଶ୍ରଦ୍ଧା, ବିଶ୍ୱାସ, ପ୍ରେମ, ସାହସ, ନିର୍ଭୀକତା, ସତ୍ୟନିଷ୍ଠା ଆଦି ସଦ୍‌ଗୁଣର ବିକାଶ କରିବାକୁ କେତେ ଆଦର୍ଶ କାହାଣୀ କହିଛି। ସ୍କୁଲ୍ ପାଠକୁ ସହଜ କରି ବୁଝାଇଦେବା ପାଇଁ, ଆଗ୍ରହ ସୃଷ୍ଟି କରିବା ପାଇଁ ପ୍ରସଙ୍ଗ ଅନୁଯାୟୀ କେତେ ମଜାକଥା ସେ କହିଛି। ସବୁ କ'ଣ ନିରର୍ଥକ, ମୂଲ୍ୟହୀନ ? ସେ କ'ଣ ସତରେ ଫମ୍ପା ମାଠିଆଟିଏ ?

ସୁଦୀପା ଆଖିର ଲୁହ ଝରିଲା ପୁଣି। ମନେ ମନେ ପ୍ରତିଜ୍ଞା କଲା, ଢ଼େର୍ ହୋଇଗଲା। କାଲିଠାରୁ ଆବଶ୍ୟକ ନ ପଡ଼ିଲେ ଆଦୌ ପାଟି ଖୋଲିବନି ସେ।

ତା'ପରଦିନ ସକାଳଠାରୁ ସତକୁ ସତ ଚୁପ୍ ହୋଇଗଲା ସେ। ଗାଧୁଆଘରେ ଗାଧୋଇବାବେଳେ କି ଠାକୁର ପୂଜା କଲାବେଳେ ତା' କଣ୍ଠରୁ ଗୁଣୁଗୁଣୁ ଗୀତ ଶୁଭିଲାନି। କ୍ଷୀରବାଲାଠାରୁ କ୍ଷୀର ରଖିଲାବେଳେ ତାକୁ ଥଟ୍ଟା କଲା ନାହିଁ କ୍ଷୀରରେ ପାଣି ନ ମିଶାଇ ପାଣିରେ କ୍ଷୀର ମିଶାଇ ଦେଉଛି ବୋଲି। ଖବରକାଗଜବାଲାକୁ ତାଗିଦ୍ କଲାନାହିଁ ଏତେ ଡେରିରେ କାଗଜ ଦେଉଥିବାରୁ। କାମବାଲୀକୁ ପାଟିକଲା ନାହିଁ ବାସନରେ ଅଇଁଠା ଲାଗିଥିବା ଦେଖି। ଜଳଖିଆ କରି ଟେବୁଲ୍‌ରେ ବାଢ଼ିଦେଲା। ଗମ୍ଭୀର କଣ୍ଠରେ କହିଲା, "ଜଳଖିଆ ଖାଇଦିଅ।" ତା'ର ଏଇ ଅସ୍ୱାଭାବିକ ଆଚରଣ ଦେଖି ବାପ ପୁଅ ତିନିହେଁ ପରସ୍ପରକୁ ଚାହିଁ ହସାହସି ହେଲେ। ତା'ପରେ ଚୁପ୍‌ଚାପ୍ ଆସି ଖାଇଦେଲେ। ଖାଇବା ବେଳେ ସୁଦୀପା କିଛି ବି ପଚାରିଲା ନାହିଁ, ଭଲ ମନ୍ଦ, କମ୍ ବେଶି କିଛି ହେଲେ। ସୌରଭ କହିଲା, "ସାଇଲେନ୍ସ ଇଜ୍ ଗୋଲଡ୍।" ନୂଆ ନୂଆ କଲେଜ ଯାଉଛି ସେ। ପୁଣି ସ୍ପୋକନ୍ ଇଂଲିସ୍ କ୍ଲାସ୍ ବି କରୁଛି। ଶିଖିଥିବା ପାଠର ପ୍ରୟୋଗ ତ କୋଉଠି ହେଲେ କରିବ।

ନୀରବରେ ଘରକାମ କରୁଥାଏ ସୁଦୀପା। ସୁଶାନ୍ତ ଖବରକାଗଜ ଧରି କହିଲେ, "ହେଇ, ତମ ଖବର ବାହାରିଛି।" ସୁଦୀପା ଝଟ୍‌କିନା ଉଠିପଡୁଥିଲା। ପାଟିରୁ ବାହାରି ପଡୁଥିଲା, "କାଇଁ, ଦେଖେ ଦେଖେ।" ଜିଭକୁ କାମୁଡ଼ି ଧରି ସ୍ଥିର ହୋଇ ବସିଲା। ସୁଶାନ୍ତ ପାଟି କରି ପଢ଼ିଲେ କୌଣସି ମହିଳାଙ୍କର ଏକାବେଳେକେ ଛଅଟି ସନ୍ତାନ ଜନ୍ମ କରିବାର ଖବର। ଖବରକାଗଜର ପ୍ରଥମ ପୃଷ୍ଠାରେ ବାହାରିଥିବା ରାଜନୈତିକ ଖବର ସୁଦୀପା ପଢ଼େ ନାହିଁ। ଭଲ ଲାଗେ ନାହିଁ ସେଗୁଡ଼ା ତାକୁ। ତେଣୁ ସେ ଖବରକାଗଜରୁ ବାଛି ବାଛି ମଜା ମଜା ଖବର ବାହାର କରି ପଢ଼େ ଓ ଅନ୍ୟମାନଙ୍କ ଆଗରେ ବାରମ୍ବାର ସେଇକଥାକୁ କହି ହେଉଥାଏ। ଯେମିତି କୋଉଠି ତିନି ମୁଣ୍ଡିଆ ପିଲା ଜନ୍ମ ହୋଇଛି ତ କୋଉଠି ମହିଳାଙ୍କର ପୁରୁଷ ହୋଇଯିବା ଖବର। ପୁଣି କୋଉଠି ଅଶି ବର୍ଷର ବୁଢ଼ାଙ୍କର ପୁଣି ଥରେ

ଦାନ୍ତ ଉଠିବାର ଖବର। ଆଜି କିନ୍ତୁ ସେ ବିଶେଷ ଆଗ୍ରହ ପ୍ରକାଶ କଲାନାହିଁ। ତା'ର କୋଉଥିରେ କ'ଣ ଯାଏ ଆସେ ? ସେ ତ ଖାଲି ରୋଷେଇ କରିବ, ଖାଇବାକୁ ଦେବ, ଘରକାମ କରିବ। କାମ କରିବାର ଅବୈତନିକ କର୍ମଚାରୀଟିଏ ସେ ଏମାନଙ୍କର।

ସୁଶାନ୍ତ ବଜାର ଗଲେ ପରିବା, ମାଛ ଆଦି ଆଣିବା ପାଇଁ। ସୁଦୀପା ତାଙ୍କୁ କିଛି ହେଲେ ବରାଦ କଲାନାହିଁ କି ସେ ବଜାରରୁ ଫେରିବା ପରେ ଜିନିଷ ଦେଖି କୌଣସି ଟୀକା ଟୀପ୍ପଣୀ ଦେଲାନାହିଁ ପୋକରା ବାଇଗଣ, ବୁଢ଼ା ଭେଣ୍ଡି, ଶୁଖିଲା ପୋଟଳ, ପଚା ଆଳୁ ଦେଖି। ମାଛ ବାସନା ପାଇ ବିଲେଇ ଆସି ଗୋଡ଼ ପାଖରେ ଘଷି ହେଲା। ଅନ୍ୟ ଦିନମାନଙ୍କରେ ସେ କାମ କରୁ କରୁ ବିଲେଇ ସହିତ କଥା କହିବ। ତା'ର ଓଲେଇ ଗୁଣ ପାଇଁ ଗାଳି ଦେବ। ମାଛ ଚେନାଏ ବି ଦେବ ତା' ସହିତ। ଆଜି କିନ୍ତୁ ସେ କିଛି କହିଲାନି। ମାଛକୁ ଧୂଆଧୋଇ କରି ଲୁଣ ହଳଦୀ ଗୋଳେଇ ଭାଜି ବସିଲା । ମାଛ ଭାଜୁ ଭାଜୁ ଅନ୍ୟମନସ୍କ ହୋଇପଡ଼ିଥିଲା ସେ। ଛେଉକା ବିଲେଇ ମାଛଭଜାଟିଏ ନେଇ ଚାଲିଗଲା। ସୁଦୀପା ଚମକି ପଡ଼ିଲା କିନ୍ତୁ କିଛି କହିଲା ନାହିଁ। ମାଛ ଭଜା ଉପରେ ଓଜନିଆ ଢ଼ାଙ୍କୁଣିଟିଏ ଘୋଡ଼ାଇ ଦେଲା। ପଞ୍ଜୁରୀ ଭିତରେ ଶୁଆ ଡାକିଲା, "ଚା, ଚା।" ଶୁଆଟି ତାଙ୍କର ଭାରି ଚା' ଖୋର, ସୁଦୀପା ପରି। ସେ ହିଁ ଏମିତି ଅଭ୍ୟାସ କରେଇଛି ତାକୁ। ଚା' ପିଆ ବେଳ ହେଲେ ସେ ଡେଣା ଫଡ଼୍‌ଫଡ଼୍ କରି ଚା' ଚା' ବୋଲି ପାଟି କରୁଥିବ। ସୁଦୀପା ତାକୁ ମିଛି ମିଛିକା ଝିଙ୍ଗାସିବ। ତା'ପରେ ଚା' ଟିକିଏ ଢ଼ାଳିଦେବ ତା' ଗିନାରେ। ଶୁଆଟି ଆନନ୍ଦରେ ଥଣ୍ଟ ବୁଡ଼ାଇ ମୁଣ୍ଡକୁ ଉପରକୁ ଟେକି ଚା' ପିଇବ। ଆଜି ବି ସେ ଚା' ଢ଼ାଳିଦେଲା। କିନ୍ତୁ କିଛି ନ କହିବା ଦେଖି ଶୁଆ ଆଶ୍ଚର୍ଯ୍ୟ ହେଲା ସତେକି ! କହିଲା, "ଆଁ ? ଆଁ ?" ମୁଣ୍ଡକୁ ଏପାଖ ସେପାଖ କରି ଚାହିଁଲା ସୁଦୀପାକୁ।

ରୋଷେଇ ସରିବା ପରେ ସୁଦୀପା ଭାତ ବାଢ଼ିଦେଲା। ସେଦିନ ରବିବାର। ସମସ୍ତଙ୍କର ଛୁଟି। କେବଳ ରବିବାର ଦିନ ହିଁ ସମସ୍ତେ ଏକାଠି ବସି ମଧ୍ୟାହ୍ନ ଭୋଜନ କରିଥାଆନ୍ତି। ସୁଦୀପା ଡାକିବା ଆଗରୁ ସୁଶାନ୍ତ, ଶାଶ୍ୱତ ଓ ସୌରଭ ଡାଇନିଂ ଟେବୁଲ୍ ପାଖରେ ବସିଗଲେ। ଚୁପ୍‌ଚାପ୍ ବସି ଖାଇଲେ। କିଛି କଥା ନାହିଁ। କଥା କିଏ କହିବ ? ମୁଖ୍ୟବକ୍ତା ତ ନୀରବ। କିଛି ସମୟ ନୀରବରେ ଖାଇବା ପରେ ସେଇ ଅସ୍ୱସ୍ତିକର ନୀରବତାକୁ ଦୂରେଇ ଦେବାପାଇଁ ସୁଶାନ୍ତ କହିଲେ, "ତରକାରୀ ଆଜି ଭାରି ବଢ଼ିଆ ହୋଇଛି, ନାଇଁ ?" ତାଙ୍କ ସ୍ୱଭାବ ବିରୁଦ୍ଧ କଥା ଇଏ। ସୁଦୀପା ନୂଆ ଜିନିଷ କିଛି ରାନ୍ଧିଲେ ଆଶାକରି ବସିଥାଏ, ଭଲ ହୋଇଛି ବୋଲି କେହି କହନ୍ତୁ। ମାତ୍ର ସବୁବେଳେ ତାକୁ ନିରାଶ ହେବାକୁ ପଡ଼ିଥାଏ। ଆଜି କିନ୍ତୁ ସୁଦୀପା ନୀରବ ରହିଛି ବୋଲି ଏମାନଙ୍କୁ ଅଡୁଆ ଲାଗୁଛି ନିଶ୍ଚେ। ଲାଗୁଥାଉ। ସେ ଜମା କିଛି ବି କହିବ ନାହିଁ। "ଇଏ ନୀରବତାର

ଫଳ। ନୀରବ ହେଲେ ଏକାଗ୍ରତା ବଢ଼ିବ। ଏକାଗ୍ରତା ବଢ଼ିଲେ ସବୁକାମ ନିଶ୍ଚୟ ଭଲହେବ।" ସୌରଭ କହିଲା।

ସୁଦୀପା ଗମ୍ଭୀର ହୋଇ ଖାଉଥିଲା। ସୁଶାନ୍ତ ପୁଣି କହିଲେ, "ତୁମ ମା'ର ପର୍ଣ୍ଣନାଲିଟି ବଢ଼ିଗଲା ପରି ଦେଖାଯାଉଛି। ନାଇଁରେ ପିଲେ ?"

- "ହଁ, ଆଜି ଭାରି ଭଲ ଦିଶୁଛି ମା'।" ଶାଶ୍ୱତ କହିଲା।

ଏତେ କଥା ଏମାନେ କହିପାରନ୍ତି ? ଏମିତି ହାଲୁକା କଥା ! ସୁଦୀପା ହସି ପକାଉଥିଲା। ପାଣି ଗ୍ଲାସ୍‌ଟା ପାଟି ପାଖକୁ ଉଠାଇ ନେଇ ହସ ଲୁଚାଇଲା।

ଖାଇ ସାରିବା ପରେ ବାସନପତ୍ର ରଖାରଖି କରି ରୋଷେଇ ଘର ସଫାକଲା। ଠିକା ଚାକରାଣୀ ଆସିଲେ ବାସନ ମାଜିବ, ଲୁଗା ସଫା କରିବ। ସର୍ଫରେ ଲୁଗା ବତୁରାଇ ଶୋଇବାକୁ ଗଲା ସେ। ଏମିତିରେ ଖରାବେଳେ ଶୋଇବାକୁ ତାକୁ ଭଲ ଲାଗେନାହିଁ। ଟି.ଭିରେ ଯାହା ବି ପ୍ରୋଗ୍ରାମ ଥାଏ ଦେଖେ। ନହେଲେ ଦାଣ୍ଡ ପିଣ୍ଡାରେ ବସି ପଡ଼ିଶାଘରର ରମାନାନୀଙ୍କ ସାଙ୍ଗରେ ଗପେ। ଆଜି କିନ୍ତୁ ଭାରି ନିସ୍ତେଜ ଲାଗୁଥିଲା ତାକୁ। କଥା କହିବା ବନ୍ଦ କରିବା ସହିତ ତା'ର ଜୀବନୀଶକ୍ତି ବି କମି ଯାଇଥିଲା ଯେମିତି। ସତସତିକା ସେ ଶୋଇପଡ଼ିଲା ଦ୍ୱିପ୍ରହରେ।

ସନ୍ଧ୍ୟାବେଳେ ପିଲା ଦୁହେଁ ବୁଲି ଚାଲିଗଲେ ସାଙ୍ଗମାନଙ୍କ ଘରକୁ କି ଖେଳିବାକୁ। ସୁଶାନ୍ତ ପଚାରିଲେ ସୁଦୀପା କୁଆଡ଼େ ଯିବ କି ନାହିଁ। ସୁଦୀପା ମନା କରିବାରୁ ସେ ଚାଲିଗଲେ ଏକା। କୋଉ ଗୋଟାଏ ଅସିଆ କାଳର ସିନେମା ଦେଉଥିଲା ଟି.ଭିରେ। ବିରକ୍ତ ଲାଗିଲା ସୁଦୀପାକୁ। ଟି.ଭି. ବନ୍ଦ କରି ଚୁପ୍ ହୋଇ ବସି ରହିଲା। କ'ଣ କରିବ ସେ ? ପଢ଼ାପଢ଼ି ସେ କରିପାରେନି। ବହିଟିଏ ପଢ଼ିବା ପାଇଁ ଯେତିକି ଧୈର୍ଯ୍ୟ ଦରକାର, ଏକାଗ୍ରତା ଦରକାର, ସେତକ ତା' ପାଖରେ ନାହିଁ। ଘରେ କିନ୍ତୁ ତାଙ୍କର ଗଦା ଗଦା ବହି ଓ ପତ୍ରପତ୍ରିକା। ସୁଶାନ୍ତ, ଶାଶ୍ୱତ, ସୌରଭ ସମସ୍ତେ ପଠନପ୍ରିୟ। ପତ୍ରିକାଟିଏ ଉଠାଇ ଆଣିଲା ସେ। ଚେଷ୍ଟା କଲା ପଢ଼ିବା ପାଇଁ। ଗୋଟାଏ ଧାଡ଼ି ପଢ଼ିଲା ବେଳକୁ ପୂର୍ବ ଧାଡ଼ିଟି କଥା ତା'ର ମନେ ରହୁନି। ତଥାପି ଆଖି ମାଡ଼ି ବସିଲା। ନିଜକୁ ସଞ୍ଜତ କରିବା ପାଇଁ, ସାବାଡ଼୍ କରିବା ପାଇଁ ଚେଷ୍ଟା କରୁଥିଲା। ତା' ପରିବାରର ମନ ମୁତାବକ ହେବାକୁ ହିଁ ହେବ ତାକୁ। ଆଖି ଝାପ୍‌ସା ହୋଇଯାଉଛି, ଆଖିରୁ ଧାର ଧାର ଲୁହ ଝରି ପତ୍ରିକା ଉପରେ ପଡୁଛି।

ମୁଣ୍ଡ ଉପରେ କାହାର ସ୍ନେହମୟ ହାତ। ସୁଶାନ୍ତ ? ବାହାରକୁ ଯାଇ ସାଙ୍ଗେ ସାଙ୍ଗେ ଫେରିଆସିଛନ୍ତି ସେ। ସୁଦୀପାର ଉଦାସ ମୂର୍ତ୍ତି ତାଙ୍କୁ ଫେରାଇ ଆଣିଛି। ତା' ଆଖିରୁ ଲୁହ ପୋଛିଦେଇ ଆଦର କରି କହିଲେ, "ଛି, ଛି, ଏଗୁଡ଼ା କି ପିଲାଳିଆ କଥା।

ଛୁଆମାନେ କ'ଣ ଟିକେ କହିଦେଲେ ବୋଲି ସେଇକଥାକୁ ଗଣ୍ଠିକରି ବସିଛ ? କ'ଣ ଭାବୁଥିବେ ସେମାନେ ?" ସୁଦୀପା କିଛି କହିଲାନି। ଅଭିମାନରେ ଆହୁରି ଫୁଲିଉଠିଲା ସେ। ଖାଲି କ'ଣ ପିଲାମାନେ ? ସୁଶାନ୍ତ କ'ଣ ଆଗ କହି ନାହାନ୍ତି ତା' କଥା ଅକାରଣ, ଅଯଥା, ଅଦରକାରୀ ବୋଲି ?

"ଉଠିଲ, ବାହାରେ ଟିକେ ବୁଲି ଆସିଲେ ଭଲ ଲାଗିବ। ବାହାରେ ବଢ଼ିଆ ଜହ୍ନ ପଡ଼ିଛି।" ତା'ର ହାତଧରି ଉଠାଇଲେ ସୁଶାନ୍ତ।

"ଥାଉ।" ହାତ ଛଡ଼ାଇ ଗମ୍ଭୀର ହୋଇ କହିଲା ସୁଦୀପା। ଉଠିଗଲା ରୋଷେଇ ଘରକୁ। ଅଟା ଡବାରୁ ଅଟା ବାହାର କରି ଚକଟିଲା ରାତିପାଇଁ ରୁଟି କରିବାକୁ। ସୁଶାନ୍ତଙ୍କର ଉତ୍ସାହ ଥଣ୍ଡା ପଡ଼ିଗଲା। ଦୀର୍ଘଶ୍ୱାସ ପକେଇ ଚାଲିଗଲେ ସେ। ତାଙ୍କର ଯିବା ବାଟକୁ ଚାହିଁ ସୁଦୀପାର ମନ ବି ଖରାପ ହୋଇଗଲା। ଅଭିମାନଟା ବେଶି ହୋଇଯାଉଛି। କଥାଟାକୁ ଆଉ ବଢ଼େଇବା ଉଚିତ୍ ହେବ ନାହିଁ। କିନ୍ତୁ କ'ଣ କରିବ ? ତା'ର ଯେ କଥା କହିବାକୁ ଆଦୌ ଇଚ୍ଛା ହେଉନାହିଁ। ଅପମାନିତ ଲାଗୁଛି ପାଟି ଖୋଲିବାକୁ।

ରୁଟି, ତରକାରୀ କରି ରଖିଦେଲା। ମୁଣ୍ଡଟା ଭାରି ବିନ୍ଧୁଛି। ମନେ ପଡ଼ିଲା ସନ୍ଧ୍ୟାବେଳେ ଚା' ପିଆ ହୋଇନି। ଭୁଲିଯାଇଛି ସେ। ସୁଶାନ୍ତଙ୍କୁ ବି ଦେଇନି। ପିଲାମାନେ କିଛି ଖାଇନାହାନ୍ତି ଉପରବେଳା। କୁଆଡ଼େ ଗଲେ କେଜାଣି। ଉଃ– ମୁଣ୍ଡଟା ଆଉ ସିଧା କରି ହେଉନି। ଚା' ପିଇଦେଲେ ଭଲ ଲାଗନ୍ତା। କିନ୍ତୁ ଏକା ଏକା ଚା' କରି ପିଇବାକୁ ଭଲ ଲାଗେ ନାହିଁ। ଅନ୍ୟଦିନ ହୋଇଥିଲେ ପଡ଼ିଶା ଘରକୁ ଯାଇ ରମାନାନୀଙ୍କୁ ବରାଦ କରି ଚା' ପିଇ ସାରନ୍ତାଣି। ନହେଲେ ତାଙ୍କୁ ଡାକି ଆଣନ୍ତାଣି ଏକାଠି ବସି ଚା' ପିଇବାକୁ। ହେଲେ ଆଜି ସେଭଳି ଇଚ୍ଛା ହେଉନି। କ'ଣ ପାଇଁ ସେ ଦାଣ୍ଡପଟକୁ ଯାଇଥିଲା ଥରଟିଏ ଯେ ରମାନାନୀ ତା'ର ଗମ୍ଭୀର ମୁହଁ ଦେଖି ପଚାରୁଥିଲେ ତା'ର ଦେହ ଭଲ ନାହିଁକି ବୋଲି। ସୁଦୀପାର ମୁହଁ ଯେମିତି ତା' ମନର ଦର୍ପଣଟିଏ। କୌଣସି ଭାବ ତା'ର ଲୁଚାଇ ହୁଏନି ସେଇ ଦର୍ପଣଠାରୁ । ମନ ଭିତରେ ଦୁଃଖର ବୋଝ ଧରି ଉପରେ ହସଖୁସିର ଛଳନା ସେ କରିପାରେନି।

ଅଗଣାରେ ଫିତା ଖଟିଆଟି ପକାଇ ଗଡ଼ିପଡ଼ିଲା ସେ। ମୁଣ୍ଡ ତଳେ ହାତଛନ୍ଦି ଚିତ୍‌ହୋଇ ଶୋଇ ଆକାଶକୁ ଚାହିଁଲା ସୁଦୀପା। ଜ୍ୟୋତ୍ସ୍ନାପ୍ଲାବିତ ପୂର୍ଣ୍ଣିମାରାତି। କୋଉ ପୂର୍ଣ୍ଣିମା ଏଇଟା, ବୈଶାଖ ପୂର୍ଣ୍ଣିମା ବୋଧହୁଏ। ବୁଦ୍ଧଜୟନ୍ତୀ ନା କ'ଣ ଆଜି। ଏମିତି ଏକ ଦିନରେ (ନା ରାତିରେ ? ) ଏସିଆର ଆଲୋକ ଜନ୍ମ ହୋଇଥିଲେ। ପୃଥିବୀର ଦୁଃଖ, ଶୋକ, ମୃତ୍ୟୁର କଷ୍ଟ ଦୂର କରିବା ପାଇଁ ରାଜସୁଖ ତ୍ୟାଗକରି ଚାଲିଯାଇଥିଲେ ତପସ୍ୟା କରିବାକୁ। ସିଦ୍ଧିଲାଭ କରି ସେ ହୋଇଥିଲେ ବୁଦ୍ଧଦେବ। କିନ୍ତୁ ସତରେ କ'ଣ

ସେ ଏଇ ପୃଥିବୀରୁ ଦୁଃଖ ସବୁ ଦୂର କରିପାରିଥିଲେ ? ଦୁଃଖର ତ ଅସରନ୍ତି ଭଣ୍ଡାର ଏଇ ପୃଥିବୀ। ସବୁଦିନ ନୂଆ ନୂଆ ଦୁଃଖର ଉଦ୍ଭବ ହୁଏ ଏଇଠି।

ଆକାଶକୁ ଚାହିଁଲେ କିନ୍ତୁ ଦୁଃଖର ଚିହ୍ନବର୍ଣ୍ଣ କୋଉଠି ଥିଲାଭଳି ମନେ ହେଉନାହିଁ। ରୂପାଥାଳୀ ପରି ଜହ୍ନ ତା' ଭିତରର ଦୁଃଖର କଳା କଳା ଦାଗକୁ ଅତିକ୍ରମ କରି ତା'ର ଆନନ୍ଦମୟ ରୂପକୁ ଟହଟାଇ ଦେଇଛି ଆକାଶରେ। ତାରାମାନେ ବି ମିଟ୍‌ମିଟ୍ ହୋଇ ହସୁଛନ୍ତି ନୀରବରେ, ଆକାଶର ପରିବ୍ୟାପ୍ତ ଇଲାକାରେ କେତେ ନିଶ୍ଚିନ୍ତ ପ୍ରଶାନ୍ତିରେ। ମନ ଭିତରେ ଦିଶିଗଲା ସୁଶାନ୍ତଙ୍କର ମୁହଁ। ସିଏ ତ ଠିକ୍ ଏଇ ଆକାଶ ପରି ଉଦାର, ପ୍ରଶାନ୍ତ, ନୀରବ ଆଉ ଗମ୍ଭୀର। କିନ୍ତୁ କୁଆଡ଼େ ଗଲେ ସେ ? ପିଲାମାନେ ବି ଏତେ ବେଳ ଯାଏ ବାହାରୁ ଫେରିଲେ ନାହିଁ। ଉଠିପଡ଼ି ଘଣ୍ଟା ଦେଖିଲା ସୁଦୀପା। ଦଶଟା ବାଜିଲାଣି। ବ୍ୟସ୍ତ ହୋଇ ଗେଟ୍ ପାଖକୁ ଗଲା। କେହି କୁଆଡ଼େ ଦିଶୁ ନାହାନ୍ତି। ଯିଏ ଯାହା ଘରେ ବସିଥିବେ, ଶୋଇଥିବେ, ଖାଉଥିବେ ନହେଲେ ଟି.ଭି. ଦେଖୁଥିବେ। ଏତେ ରାତିଯାଏ କିଏ ବୁଲୁଛି ବାହାରେ ? ରମାନାନୀଙ୍କ ଘର ତ ଦଶଟା ବାଜିଲେ ଲାଇଟ୍ ବନ୍ଦ। କ'ଣ କରିବ ସେ ? ଅବଶ୍ୟ ଦଶଟା ରାତି ଏମିତି କିଛି ଗୁଡ଼ାଏ ଡେରି ହୋଇନି ଯେ ସେ ଡକାହକା କରି ଖୋଜିବାକୁ ଯିବ। ଖାଲି ଘରୁ ଗେଟ୍ ପାଖ, ପୁଣି ଗେଟ୍ ପାଖରୁ ଘର ପଦଚାରଣା କରିବା ସାର ହେଲା। ଶେଷକୁ ଦାଣ୍ଡ ବାରଣ୍ଡାରେ ବସି ଏକ ଲୟରେ ଗେଟ୍ ଆଡ଼କୁ ଚାହିଁ ରହିଲା। ସାଇକେଲ୍, ରିକ୍ସା, ସ୍କୁଟର, ମୋଟର ସାଇକେଲ, କାର୍, ରାସ୍ତାରେ ଯାହାଗଲେ ବି ଆଶାୟିତ ହୋଇ ଠିଆ ହୋଇପଡ଼େ ସେ। ତା'ପରେ ନିରାଶ ହୋଇ ବସିଯାଏ।

ଦଶଟା ପନ୍ଦର ହେଲା। ଏଥର ନିଜ ଉପରୁ ବିଶ୍ୱାସ ତୁଟିଗଲା ସୁଦୀପାର। କାନ୍ଦ ମାଡ଼ି ଆସୁଛି। ମୁଁ ଅଲକ୍ଷଣୀ କାହିଁକି ତୁଚ୍ଛା କଥାଟାକୁ ଧରି ବସି ମନ ଦୁଃଖ କଲି। ସେମାନଙ୍କୁ ବି କଷ୍ଟ ଦେଲି। ହେ ଭଗବାନ୍, ସେମାନେ ଯୋଉଠି ବି ଥାଆନ୍ତୁ ଭଲରେ ଥାଆନ୍ତୁ। ଭଲରେ ଭଲରେ ଫେରି ଆସନ୍ତୁ ଘରକୁ। ମନେ ମନେ ଦୁର୍ଗାସ୍ତୋତ୍ର, ସଙ୍କଟାସ୍ତବ ବୋଲିଲା। ଥରକୁ ଥର ଭୁଲ୍ ହୋଇ ଯାଉଥାଏ, ପୁଣି ମୂଳରୁ ଆରମ୍ଭ କରେ।

ସାଢ଼େ ଦଶଟା ବେଳକୁ ତା'ଦେହରେ ଆଉ ଜୀବନ ଥିଲା ଭଳି ଲାଗୁ ନଥିଲା। ସେତିକି ବେଳେ ସ୍କୁଟର ଲାଇଟ୍ ପଡିବାରୁ ଠିଆ ହୋଇଗଲା। ଗେଟ୍ ଖୋଲି ବାପ ପୁଅ ତିନିହେଁ ପଶିଲେ ଭିତରକୁ। ତିନିଙ୍କ ଓଠରେ ଦୁଷ୍ଟାମି ଭରା ହସ। ସୁଦୀପା ବ୍ୟାକୁଳ ହୋଇ ଧାଇଁଗଲା ସେମାନଙ୍କ ପାଖକୁ। ରୁଦ୍ଧ କଣ୍ଠରେ ପଚାରିଲା, 'କୁଆଡେ ଯାଇଥିଲ ଏତେ ବେଳ ଯାଏ ?'

'ତୁମେ ତ ମନାକଲ ଯିବାକୁ। ଆମେ ଜହ୍ନ ରାତିରେ ଧଉଳି ଦେଖିବାକୁ ଯାଇଥିଲୁ।

ସତରେ ଚମତ୍କାର ଅନୁଭୂତି ।' ସୁଶାନ୍ତ କହିଲେ ।

'ତୁମର ମୁଣ୍ଡ ଖରାପ ହୋଇଗଲାଣି ନା କ'ଣ ? ସବୁଦିନ କ'ଣ ଘଟୁଛି ଏ ସହରରେ ଜାଣୁନ ନା ଖବରକାଗଜରେ ପଢୁନ ? କେଡ଼େ ସାହସ, ପିଲାଙ୍କୁ ନେଇ ରାତି ଅଧଯାଏ ଧଉଳିରେ ବସିଛନ୍ତି ! ମୁଁ ଇଆଡେ ଭାବିଭାବି ଅଧାମରା ହେଲିଣି ।' ସୁଦୀପା ନିଜର ପ୍ରତିଜ୍ଞା ଭୁଲି ପାଟି କରୁଥିଲା ଜୋର୍‌ରେ । 'ଭାବିଲେ କ'ଣ ଯାହା ଘଟିବାକୁ ଥିବା ଅଟକି ଯିବ ?' ଶାଶ୍ୱତର ଦାର୍ଶନିକ ସୁଲଭ ଉକ୍ତିରେ ଧମକାଇ ଉଠିଲା ସୁଦୀପା, 'ଚୁପ୍‌କର, କିଛି ହୋଇଥିଲେ କେହି ପିଠିରେ ପଡି ନଥାନ୍ତେ ମ ।' ଆଖି ପୋଛିଲା ସେ ପଣତରେ ।

ସେମାନେ ପୋଷାକ ବଦଳାଇ ଗୋଡ଼ହାତ ଧୋଇ ଆସିଲା ପରେ ସେ ପଚାରିଲା, 'ଖାଇବାକୁ ବାଢ଼ିବି ନା ଜହ୍ନ ଆଲୁଅ ପିଇ ପେଟ ପୂରିଯାଇଛି ?'

- 'ବାଢ଼ ।' ସଂକ୍ଷିପ୍ତ ଉତ୍ତର ସୁଶାନ୍ତଙ୍କର ।

ଖାଇ ପିଇ ପିଲାମାନେ ଶୋଇବାକୁ ଗଲେ ତାଙ୍କ ରୁମ୍‌କୁ । ଚାରିଆଡ଼ ବନ୍ଦବାନ୍ଧ କରି, ତାଲା ପକାଇ ଶୋଇବାକୁ ଆସିଲା ସୁଦୀପା । ମଶାରୀ ଭିତରେ ଶୋଇ ସୁଶାନ୍ତ କ'ଣ ଗୋଟାଏ ବହି ପଢୁଥିଲେ । ତାଙ୍କ ହାତରୁ ବହିଟା ଟାଣିଆଣି ରଖିଦେଲା ସୁଦୀପା । ଲାଇଟ୍ ବନ୍ଦ କଲା । ସୁଶାନ୍ତଙ୍କର ନିବିଡ଼ ସାନ୍ନିଧରେ ଗତକାଲି ଠାରୁ ତା'ଭିତରେ ସଞ୍ଚିତ ହୋଇ ରହିଥିବା ସମସ୍ତ ଅଭିମାନ, ଅଶାନ୍ତି, ଦୁଃଖ, ବେଦନା କୁଆଡେ ଉଭେଇଗଲା । ପରମ ନିଶ୍ଚିନ୍ତରେ ଶୋଇଗଲା ସେ ।

# ସମ୍ପର୍କ

"ଯେଉଁ ଲୋକମାନେ ସ୍ତ୍ରୀକୁ ବେଶି ଭଲ ପାଆନ୍ତି, ସବୁକଥାରେ ସ୍ତ୍ରୀ ଉପରେ ନିର୍ଭର କରନ୍ତି, ସ୍ତ୍ରୀ ମରିଗଲା ପରେ ସେମାନେ ଦୁଃଖ ସହି ନପାରି ଖୁବ୍ ଶୀଘ୍ର ବାହାହୋଇ ପଡ଼ନ୍ତି। ତୋ ମାଆ ତୋ ବାପାଙ୍କୁ ଯେମିତି ଯତ୍ନରେ ରଖିଥିଲା, ସେମିତି ଯତ୍ନ ନ ପାଇଲେ ସେ ଆଦୌ ଚଳି ପାରିବେ ନାହିଁ।" ଚାରୁ ମାଉସୀଙ୍କର ଏମିତି ଏକ ମନ୍ତବ୍ୟ ରିନୁକୁ ଆହତ କରିଥିଲା। ତଥାପି ସେ କଣ୍ଠରେ ଦୃଢ଼ତା ଭରି କହିଥିଲା, "ବାପାଙ୍କର ଯେମିତି କିଛି ଅସୁବିଧା ନହୁଏ, କଷ୍ଟ ନହୁଏ ସେକଥା ଆମେ ଦେଖିବୁ, ଜିତୁଭାଇ ଆଉ ମୁଁ।"

ତା କଥା ଶୁଣି ଚାରୁମାଉସୀଙ୍କ ଓଠରେ ଅଦ୍ଭୁତ ହସଟିଏ ଫୁଟି ଉଠିଥିଲା। ତା'ପରେ ବିଷଣ୍ଣ କଣ୍ଠରେ ସେ କହିଥିଲେ, "ତୁ ପିଲାଲୋକ, ସେକଥା ତୁ ଏବେ ବୁଝିପାରିବୁନି। ସେ କଷ୍ଟ କେବଳ ସ୍ତ୍ରୀ ହିଁ ବୁଝିପାରିବ। ତୋ ବାପାଙ୍କୁ ତୋ ମାଆ ଭଲଭାବରେ ଜାଣିଥିଲା ବୋଲି ତାଙ୍କ ପାଇଁ ସବୁ ବ୍ୟବସ୍ଥା କରିଯାଇଛି।"

ଶେଷକଥା ପଦିକ ଚାରୁମାଉସୀ କାହାକୁ ଉଦ୍ଦେଶ୍ୟ କରି କହିଲେ ରିନୁ ବେଶ୍ ବୁଝିପାରିଲା। ସେ ଆଦୌ ପିଲାଲୋକ ନୁହେଁ। କିନ୍ତୁ ଅନ୍ୟମାନଙ୍କ ଦୃଷ୍ଟିରେ ନିଜ ବାପାଙ୍କୁ ଅତି ସାଧାରଣ, ଦୁର୍ବଳ ମଣିଷଟିଏ ପାଲଟିଯିବା ସେ ବରଦାସ୍ତ କରି ପାରୁନଥିଲା। ଚାରୁମାଉସୀ ସେମାନଙ୍କର ନିକଟତମ ପଡ଼ୋଶୀ। ମାଆ ପ୍ରତି ଥିଲା ତାଙ୍କର ଅଖଣ୍ଡ ଶ୍ରଦ୍ଧା। ବାପାଙ୍କ ପାଇଁ ମାଆ ଯେ କ'ଣ ଥିଲା, ସେ କଥାର ସେ ପ୍ରତ୍ୟକ୍ଷଦର୍ଶୀ ଥିଲେ। ବାପା ତାଙ୍କର ବନ୍ଧୁମହଲରେ 'ହେନ୍‌ପେକଡ୍ ହଜ୍ ବ୍ୟାଣ୍ଡ' ବୋଲି ପରିହାସର ପାତ୍ର ଥିଲେ। ବାପା ଓ ମାଆଙ୍କର ଯୋଡ଼ିକୁ 'ମେଡ୍ ଫର୍ ଇଚ୍ ଅଦର' ବୋଲି ମଧ୍ୟ ସମସ୍ତେ କହୁଥିଲେ। ଅଥଚ ମାଆ ଯିବାର ବର୍ଷଟିଏ ନ ପୂରୁଣୁ...। ନା, ବାପାଙ୍କ ବିଷୟରେ ଖରାପ କିଛି ଭାବିବାକୁ ଭାରି କଷ୍ଟ ହେଉଥିଲା। ଏ ପର୍ଯ୍ୟନ୍ତ ବାପାଙ୍କୁ ଖୁବ୍ ଶ୍ରଦ୍ଧା କରି ଆସିଥିଲା ସେ। ସଫଳ ମଣିଷଟିଏ କହିଲେ ଯାହା ବୁଝାଯାଏ ସେହିଭଳି ଜଣେ ବ୍ୟକ୍ତି

ଥିଲେ ରିନୁର ବାପା ଜୟନ୍ତ ଚୌଧୁରୀ। ସୁନ୍ଦର ସୁଗଠିତ ଚେହେରା, ଗମ୍ଭୀର ବ୍ୟକ୍ତିତ୍ୱ, ମାର୍ଜିତ ରୁଚିସମ୍ପନ୍ନ ବ୍ୟବହାର ସହିତ ରୂପବତୀ ସର୍ବଗୁଣସମ୍ପନ୍ନା ପତ୍ନୀ, ସୁନ୍ଦର ସ୍ୱାସ୍ଥ୍ୟବାନ୍ ତଥା ତୀକ୍ଷ୍ଣ ଧୀସମ୍ପନ୍ନ ପୁତ୍ରକନ୍ୟା, ସହରର କେନ୍ଦ୍ରସ୍ଥଳରେ ସୁଦୃଶ୍ୟ ପ୍ରାସାଦୋପମ ଗୃହ, ଆର୍ଥିକ ସମ୍ପନ୍ନତା, ସର୍ବୋପରି ସମାଜରେ ସୁପ୍ରତିଷ୍ଠା; ସବୁ ନେଇ ବେଶ୍ ସୁଖୀ ମଣିଷଟିଏ ଥିଲେ। ସମସ୍ତ କାର୍ଯ୍ୟବ୍ୟସ୍ତତା ମଧ୍ୟରେ ସ୍ତ୍ରୀଙ୍କ ପାଇଁ ପ୍ରେମମୟ ସ୍ୱାମୀ ଏବଂ ପିଲାମାନଙ୍କ ପାଇଁ ସ୍ନେହପ୍ରବଣ ପିତାଟିଏ ଥିଲେ ସେ। ଏଭଳି ଏକ ମର୍ଯ୍ୟାଦାବନ୍ତ ବ୍ୟକ୍ତିର ସନ୍ତାନ ହିସାବରେ ନିଜକୁ ଭାଗ୍ୟବାନ୍ ମନେ କରୁଥିଲେ ସେମାନେ। ଅଥଚ ଅଳ୍ପ କେତୋଟି ଦିନର ବ୍ୟବଧାନରେ ପରିସ୍ଥିତି କେମିତି ବଦଳିଗଲା ପୂରାପୂରି। ଚାରୁମାଉସୀଙ୍କ କଥା ଯଦି ସତ ହୋଇଯାଏ କାହା ଆଗରେ ମୁହଁଦେଖାଇ ପାରିବେ ରିନୁ ଓ ତା'ର ଜିତୁଭାଇ ? ବାପାଙ୍କ ପରି ଜଣେ ମଣିଷ ପାଖରୁ ଏଭଳି ଆଚରଣ ଆଦୌ ଆଶା କରାଯାଇ ନପାରେ। କିନ୍ତୁ ଚାରୁମାଉସୀଙ୍କ କଥା ଯେ ଆଦୌ ଭିତ୍ତିହୀନ ନୁହେଁ; ଗତ କେତେଦିନର ଘଟଣାକୁ ଆଖି ଆଗକୁ ଆଣିଲେ ଉପଲବ୍ଧି କରିହେଉଥିଲା।

ଘରକୁ ଫେରିଆସି ଜିତୁଭାଇ ଆଗରେ କ୍ରୋଧ ଆଉ ଅଭିମାନରେ ଭାଂଗି ପଡ଼ିଲା ରିନୁ। "ମୁଁ ଜମା ସହି ପାରିବିନି, ମୋ ମାଆର ଲକ୍ଷ୍ମୀପାଦ ଯୋଉ ଘରେ ଚଳପ୍ରଚଳ ହୋଇଛି, ସେ ଘରେ ଆଉ କାହାର ଅନଧିକାର ପ୍ରବେଶ ମୁଁ ଆଦୌ ବରଦାସ୍ତ କରିପାରିବି ନାହିଁ।"

"ଅନଧିକାର ପ୍ରବେଶ କାହିଁକି ? ବାପା ଯଦି କୋର୍ଟ ମ୍ୟାରେଜ୍ କରୁଥା'ନ୍ତି...." ତିକ୍ତ କଣ୍ଠରେ କହିଲା ଜିତୁ।

"ଭାଇ ପ୍ଲିଜ୍....ଚାଲ୍ ଆମେ କୁଆଡେ ଚାଲିଯିବା। ମୋ ମାଆର ଖଟ, ବିଛଣା, ଜିନିଷପତ୍ର ଆଉ କେହି ବ୍ୟବହାର କରିବା ମୁଁ ଦେଖି ପାରିବିନି। ମୁଁ ପାଗଳ ହୋଇଯିବି।" ରିନୁ କାନ୍ଦି ପକେଇଲା।

"ବି ପ୍ରାକ୍ଟିକାଲ୍, ରିନୁ ତୁ ଟିକେ ବୁଝିବାକୁ ଚେଷ୍ଟାକର। ଯାହାହେଲେ ବି ବାପା ଜଣେ ମଣିଷ। ବଞ୍ଚିବାପାଇଁ ତାଙ୍କର ବି କିଛି ଅବଲମ୍ବନ ଦରକାର। ଏମିତି ଗୁରୁତର ଅପରାଧ ସେ କିଛି କରିପକେଇବେନି - ଅନ୍ୟମାନଙ୍କ କଥା ଯଦି ସତ ହୋଇଥାଏ।" ଜିତୁ ଗମ୍ଭୀର କଣ୍ଠରେ କହିଲା।

ତା'କଥା ଶୁଣି ଖୁବ୍ ଜୋର୍‌ରେ ରାଗିଉଠି ରିନୁ କହିଲା, "ଏ କଥା ତୁ' କହୁଛୁ ଭାଇ ? କାହିଁକି କହିବୁନି ? ତୁ ବି ତ ପୁଅପିଲା। କିଏ କହିବ, ଭବିଷ୍ୟତରେ ତୁ ବି ଏମିତି ପରିସ୍ଥିତିରେ ନ ପଡ଼ିବୁ ବୋଲି ? ତୁମମାନଙ୍କ ପାଇଁ ଦେହର ସମ୍ପର୍କଟା ହିଁ ସବୁକିଛି, ମନ ବୋଲି କିଛି ନାହିଁ। ସ୍ନେହ, ମମତା, ତ୍ୟାଗର କିଛି ବି ମୂଲ୍ୟ ନାହିଁ। ଏ

ବୟସରେ ନିଜକୁ ଲୋକହସା ନ କରେଇ ଆମକୁ ଚାହିଁ କ'ଣ ବାପା ବାକି ଜୀବନ କଟେଇ ପାରିବେନି ?"

"କେତେଦିନ ଆମେ ତାଙ୍କ ପାଖରେ ରହିବା ? ମୋର ଛୁଟି ସରିଲେ ମୁଁ ହଷ୍ଟେଲ ଚାଲିଯିବି । ତୁ ବି କେତେଦିନ ରହିବୁ ତାଙ୍କ ପାଖରେ ? ତୋ ବାହାଘର ପରେ ତୁ ତୋର ଶାଶୂଘରକୁ ଯିବୁ । ଏତେ ବଡ଼ ଘରଟାରେ ବାପା ଏକା ଏକା ଚଳିବେ କେମିତି କହ ତ ? ଚାକରବାକରଙ୍କ ଉପରେ ନିର୍ଭର କରି କେତେଦିନ ବଞ୍ଚିବେ, ଶୁଷ୍କ ନୀରସ ଭାବରେ ଜୀବନ ବିତେଇବେ ? ଆଜିକାଲି ତ ଏକଥା ଚାରିଆଡ଼େ ଘଟୁଛି । ଅତି ସାଧାରଣ କଥା ଇଏ ।" ଜିତୁର ଦୃଷ୍ଟି ପ୍ରଲମ୍ବିତ ହୋଇ ଯାଇଥାଏ ଯେମିତି ସୁଦୂରକୁ ।

"ତୋ ପାଇଁ ସାଧାରଣ ହୋଇପାରେ, କିନ୍ତୁ ମୋ ପାଇଁ ଯା'ଠାରୁ ଦୁଃଖର କଥା କିଛି ନାହିଁ । ତୁ ତ ତୋର ହଷ୍ଟେଲ୍ ପଳେଇବୁ । କିଛି ଦେଖିବୁନି କି ଜାଣିବୁନି । ମୁଁ ହିଁ ମରିବି ଏଇଠି ରହି ।" କୋହ ଓ ଅଭିମାନରେ ଫାଟି ପଡୁଥିଲା ରିନୁ । "ମୋ ସୁନା ଭଉଣୀଟା ପରା, ଏମିତି ପାଗଳୀଙ୍କ ପରି ହେଲେ କ'ଣ ହେବ କହିଲୁ ? ତୁ କ'ଣ ଭାବୁଛୁ ମୋତେ କିଛି ଖରାପ ଲାଗୁନି ବୋଲି ? କିନ୍ତୁ କ'ଣ ଆଉ କରାଯିବ ? ବାପା ତ ଛୋଟ ପିଲା ନୁହଁନ୍ତି କି ଟିନ୍‌ଏଜର୍ ନୁହଁନ୍ତି ଯେ ତାଙ୍କୁ କିଏ ବୁଝାଇବ । ତାଙ୍କ ଜୀବନକୁ ନେଇ ସେ ଯାହା କରିବେ ଆମର ସେଥିରେ କିଛି କରିବାର କି କହିବାର ନାହିଁ । ସେ ଯୋଉଥିରେ ଶାନ୍ତି ପାଇବେ, ଆନନ୍ଦ ପାଇବେ ସେଇଆ କରନ୍ତୁ । ଆମ ବାପା ଭଲରେ ରହନ୍ତୁ, ସୁଖରେ ରହନ୍ତୁ, ସୁସ୍ଥ ରହନ୍ତୁ, ଏ କଥା କ'ଣ ତୁ ଚାହୁଁନୁ ? ମାଆ ଚାଲିଗଲା ବୋଲି ଯେ ସିଏ ସର୍ବହରା ଭଳି ଦୁଃଖରେ ସନ୍ତୁଳି ହେଉଥିବେ, ଲୁହ ଢ଼ାଳୁଥିବେ । ସେଇଟା ଆମକୁ କ'ଣ ଭଲ ଲାଗିବ ?"ଜିତୁ କଣ୍ଠରେ ଗାମ୍ଭୀର୍ଯ୍ୟ ଓ ଆଶ୍ୱାସନା । ସେ ଯେମିତି କ୍ରମେ ବୟସ୍କ ହୋଇ ଉଠୁଛି । ପୁରୁଷଟିଏ ହୋଇ ଉଠୁଛି ।

ରିନୁ ଦୀର୍ଘଶ୍ୱାସ ପକାଇଲା । ଏ ପର୍ଯ୍ୟନ୍ତ ସେ ତା'ର ବାପାଙ୍କୁ ଅସୀମ ଶ୍ରଦ୍ଧା କରି ଆସିଥିଲା । ଅନ୍ୟ ବାପାମାନଙ୍କଠାରୁ ଯେ ତା' ବାପା ଏକ୍‌ଦମ୍ ଅଲଗା, ଅସାଧାରଣ, ଏଇକଥା ସେ ଭାବି ଆସିଥିଲା । ବାପା କିନ୍ତୁ ଅତି ସାଧାରଣ ପାଲଟି ଯାଉଛନ୍ତି ଆସ୍ତେ ଆସ୍ତେ । ବାପା ଦୁଃଖୀ ହୋଇ ରହନ୍ତୁ ସବୁଦିନ ପାଇଁ, ଏକଥା ସେ ଚାହେଁନାହିଁ । ତା' ବୋଲି ମାଆ ମରିବାର ବର୍ଷ ନ ପୁରୁଣୁ ସେ ଯେ ଆଉ ଜଣକୁ ଆଣି ମାଆ ଜାଗାରେ ପ୍ରତିଷ୍ଠା କରିବେ, ଏକଥା ବି ମାନିନେଇ ପାରୁନି ସେ । ମାଆ ତ ଆଉ ଏମିତି ସେମିତି ମଣିଷଟିଏ ନଥିଲା । ରୂପରେ ସେ ଥିଲା ଅନୁପମା । ଭଲ ପାଇବାରେ ପରଆପଣା ଭେଦ ତା'ର ନଥିଲା । ଚଢ଼େଇଟିଏର ବି ପେଟ ଚିହ୍ନି ପାରୁଥିଲା ସିଏ । ଅନ୍ୟକୁ ସାହାଯ୍ୟ କରିବାରେ ସେ ଥିଲା ଲକ୍ଷ୍ମୀ ସ୍ୱରୂପିଣୀ, ବିଦ୍ୟାରେ, କଳାନିପୁଣତାରେ ସେ ଥିଲା ସରସ୍ୱତୀ ।

ପୁଣି ଆବଶ୍ୟକ ପଡ଼ିଲେ କାହାକାହା ପାଇଁ ସେ ମହିଷାମର୍ଦ୍ଦିନୀ ମଧ୍ୟ ପାଲଟି ଯାଉଥିଲା। ସେଇ ମାଆ ଯେତେବେଳେ ତା'ର ଅନ୍ତିମ ଶଯ୍ୟାରେ ଶୋଇ ରହିଥିଲା,କୁଆଡୁ କୁଆଡୁ ଲୋକ ଆସି ପହଞ୍ଚି ଯାଇଥିଲେ। ତାଙ୍କ ଘରପାଖ ଲୋକାରଣ୍ୟ ହୋଇ ଯାଇଥିଲା। ସମସ୍ତେ ତା' ଦ୍ୱାରା ଅନୁଗୃହୀତ, ଉପକୃତ, କୃତଜ୍ଞତାରେ ବନ୍ଧା। ମାଆର ଆକସ୍ମିକ ମୃତ୍ୟୁ ସମସ୍ତଙ୍କୁ ପ୍ରଚଣ୍ଡ ଆଘାତ ଦେଇଥିଲା। ଆକୁଳ ହୋଇ କାନ୍ଦୁଥିଲେ ସମସ୍ତେ। ସାଇପଡ଼ିଶା, ବନ୍ଧୁବାନ୍ଧବ, ସାଙ୍ଗସାଥୀ, ରିନୁ ଜିତୁଙ୍କର ବନ୍ଧୁମାନେ... ସମସ୍ତେ। ରିନୁ ଜିତୁଙ୍କର ବାପା ଜୟନ୍ତ ଚୌଧୁରୀ ସତେ ଅବା ଶୋକରେ ପାଗଳ ହୋଇ ଯାଇଥିଲେ। ଆକୁଳ ହୋଇ ମାଆର ନିଷ୍ପନ୍ଦ ଦେହଟାକୁ ହଲାଇ ହଲାଇ କହୁଥିଲେ – "ମୋତେ ଏକା କରି ଛାଡ଼ି ଯାଅନି ବାଣୀ, ମୁଁ ଜମା ସହି ପାରିବିନି। ତୁମକୁ ଛାଡ଼ି ବଞ୍ଚିପାରିବିନି ମୁଁ।" ମାଆ କିନ୍ତୁ ବିଛଣାରେ ଶୋଇ ମିଠାମିଠା ହସ ହସୁଥିଲା, ଯେଉଁ ହସରେ ସେ ଆପଣାର କରିନେଇଥିଲା ତା' ଆଖପାଖର ପୃଥିବୀକୁ। ରିନୁ ଏସବୁ ଦେଖି କାଠ ପାଲଟି ଯାଇଥିଲା ସତେ ଅବା। ମାଆର ମୃତ୍ୟୁକୁ ମାନିନେବାକୁ ତା' ମନ ଆଦୌ ପ୍ରସ୍ତୁତ ନଥିଲା। ସେ ଆଶା କରୁଥିଲା, ତା'ର ମମତାମୟୀ, ସ୍ନେହପ୍ରବଣା ଜନନୀ ଏତେଲୋକଙ୍କର କରୁଣ କ୍ରନ୍ଦନରେ ବିଚଳିତା ହୋଇ ଉଠିପଡ଼ିବ ଅନନ୍ତ ନିଦ୍ରାରୁ। ତା'ର ମମତାଭରା ପଣତରେ ପୋଛିଦେବ ସମସ୍ତଙ୍କ ଆଖିର ଲୁହ, ହୃଦୟର ବେଦନା।

କିନ୍ତୁ ନା'– ମାଆ ଆଉ ଉଠିଲା ନାହିଁ। ସାହିପଡ଼ିଶାର ସ୍ତ୍ରୀ ଲୋକମାନେ ମାଆକୁ ନୂଆପାଟ ପିନ୍ଧାଇ, ଶଙ୍ଖା, ସିନ୍ଦୂର ଲଗାଇ ମହାରାଣୀ ପରି ସଜାଇ ଦେଇଥିଲେ। ମାଆର ସେଇ ସୁନ୍ଦର ଦେହଟାକୁ ଯେତେବେଳେ ଲହ ଲହ ଅଗ୍ନିଶିଖା କବଳିତ କରିବାକୁ ବସିଲା, ବାପା ସେଇ ଚିତା ଭିତରକୁ ଡେଇଁ ପଡୁଥିଲେ। ତାଙ୍କର ବନ୍ଧୁମାନେ ତାଙ୍କୁ ଜୋର୍‌କରି ସେଠାରୁ ନେଇ ଆସିବା ପରେ ଚେତା ହରେଇ ସେଇ ଶ୍ମଶାନ ଭୂଇଁରେ ଲୋଟି ଯାଇଥିଲେ ସେ। ତାଙ୍କର ସେ ସମୟର ସେଇ ମର୍ମାନ୍ତିକ ଅବସ୍ଥା ଦେଖି ଜିତୁ, ରିନୁ ନିଜର ଦୁଃଖ ଭୁଲି ଯାଇଥିଲେ। ଭଗବାନଙ୍କୁ ପ୍ରାର୍ଥନା କରିଥିଲେ ବାପାଙ୍କ ମାନସିକ ସୁସ୍ଥତା ପାଇଁ। ବରଂ ମାଆ ଉପରେ ସେମାନଙ୍କର ଖୁବ୍ ରାଗ ହୋଇଥିଲା ସେଦିନ, ବାପାଙ୍କୁ ଏଭଳି ଶୋଚନୀୟ ଅବସ୍ଥାରେ ଛାଡ଼ି ଚାଲିଗଲା ବୋଲି।ପ୍ରାୟ ସାତଦିନ ପର୍ଯ୍ୟନ୍ତ ବାପାଙ୍କୁ ନିଦ ଇଂଜେକ୍‌ସନ୍ ଦେଇ ଶୁଆଇ ରଖାଯାଇଥିଲା।

ମାଆଙ୍କର କ୍ରିୟାକର୍ମ ସବୁକିଛି କରିଥିଲା ଜିତୁ। ମା'ଙ୍କର ଆକସ୍ମିକ ମୃତ୍ୟୁ ଭାଇଭଉଣୀ ଦୁହିଁଙ୍କୁ ହତବାକ୍ କରିଦେଇଥିଲା। ସେଥିରେ ପୁଣି ବାପାଙ୍କର ଏଭଳି ଅବସ୍ଥା। ସେଇ କେତେଦିନ ଘରେ କ'ଣ ହୁଏ, କେମିତି ହୁଏ, କିଏ କରେ, ଏସବୁ ଭାବିବା ଭଳି ମାନସିକ ଅବସ୍ଥା ନଥିଲା ସେମାନଙ୍କର। ଯିଏ ଯାହା କହନ୍ତି, ଯନ୍ତ୍ର ପରି ସବୁ

କରାଯାଏ। ସେମାନଙ୍କ ଶୋକରେ ଭାଗୀ ହେବାପାଇଁ କୁଆଡୁ କୁଆଡୁ ଚାଲି ଆସିଥିଲେ କେତେ ଲୋକ। ତାଙ୍କ ମଧ୍ୟରୁ କେତେକଙ୍କୁ ପ୍ରଥମଥର ପାଇଁ ଦେଖୁଥିଲେ ଜିତୁ ଓ ରିନୁ। ଶୁଦ୍ଧିଘରର ଗହଳି ଚହଳି ମଧ୍ୟରେ ସେମାନେ ଲକ୍ଷ୍ୟ କରି ପାରିନଥିଲେ, ଅସୁସ୍ଥ ବାପାଙ୍କର ପରିଚର୍ଯ୍ୟା ସହିତ ଘରର ଅନ୍ୟାନ୍ୟ ସମସ୍ତ ଦାୟିତ୍ୱ କେତେବେଳେ ଅରୁଣାମାଉସୀ ନେଇଯାଇଛନ୍ତି। ଏଥିରେ ଅସ୍ୱାଭାବିକତା ନଥିଲା କିଛି। ଅରୁଣାମାଉସୀ ଏ ପରିବାର ସହିତ ଖୁବ୍ ଘନିଷ୍ଠ। ମାଆଙ୍କର ଦୂର ସମ୍ପର୍କୀୟା ଭଉଣୀ। ପିଲାଟି ଦିନରୁ ଦୁହିଁଙ୍କ ମଧ୍ୟରେ ପ୍ରଗାଢ଼ ବନ୍ଧୁତ୍ୱ ରହିଥିଲା। ପ୍ରାୟ ଏକ ସମୟରେ ଦୁହିଁଙ୍କର ବିବାହ ହୋଇଥିଲା। ଅରୁଣାମାଉସୀଙ୍କ ସ୍ୱାମୀ ଥିଲେ ପାଇଲଟ୍। ବାହାଘରର ମାତ୍ର ଛଅଟି ମାସ ପରେ ବିମାନ ଦୁର୍ଘଟଣାରେ ତାଙ୍କ ମୃତ୍ୟୁ ହୋଇଗଲା। ଅରୁଣାମାଉସୀଙ୍କର ଏଇ ଦୁଃସମୟରେ ମାଆ ହିଁ ତାଙ୍କୁ ଆଶ୍ୱାସନା ଦେଇ ପୁଣିଥରେ ଜୀଇଁବାର ପ୍ରେରଣା ଦେଇଥିଲା। ମାଆର ସାହାଯ୍ୟ, ସହାନୁଭୂତି ଯୋଗୁଁ ସେ ନିଜର ଦୁର୍ଭାଗ୍ୟ ସହିତ ମୁକାବିଲା କରି ପୁଣିଥରେ ମୁଣ୍ଡଟେକି ଠିଆ ହୋଇପାରିଲେ। ଶାଶୂଘର ତାଙ୍କୁ ଅଲକ୍ଷଣୀ କହି ତଡ଼ି ଦେଇଥିଲେ। ବାପଘରେ ଭାଇ ଭାଉଜଙ୍କ ସଂସାରରେ ତାଙ୍କ ପାଇଁ ସ୍ଥାନ ନଥିଲା। ମାଆ ତାଙ୍କୁ ପାଖରେ ରଖି ପାଠ ପଢ଼େଇ ନିଜ ଗୋଡ଼ରେ ଠିଆ କରେଇଲା। ଅଧ୍ୟାପିକା ଚାକିରି ପାଇବାପରେ ଅରୁଣା ମାଉସୀ ମହିଳା କଲେଜ୍ ହଷ୍ଟେଲରେ ରହନ୍ତି। କିନ୍ତୁ ଜିତୁ, ରିନୁଙ୍କ ପରିବାରର ସମସ୍ତ ଭଲମନ୍ଦ ଦିନରେ ସେ ଉପସ୍ଥିତ ହୁଅନ୍ତି। ସେମାନଙ୍କ ଘରର ଏକାନ୍ତ ଆପଣାର ସଦସ୍ୟାଟିଏ ସେ। କେବେକେବେ ତାଙ୍କ ହେପାଜତରେ ଘର ତଥା ପିଲାଦୁହିଁଙ୍କୁ ରଖି ଚୌଧୁରୀ ଦମ୍ପତି ବାହାରକୁ ବୁଲି ଚାଲି ଯାଆନ୍ତି, ନିଷ୍ଟିନ୍ତରେ। ନିଜ ଦରମା ପଇସାର ଅନେକ ଭାଗ ସେ ଜିତୁ, ରିନୁଙ୍କ ପାଇଁ ଏଣୁତେଣୁ ଜିନିଷ କିଣିବାରେ ଖର୍ଚ୍ଚ କରୁଥିଲେ। ଚାକିରି କରିବାପରେ ତାଙ୍କୁ ପୁଣିଥରେ ବିବାହ କରିବାକୁ ମାଆ ଅନେକ ପ୍ରବର୍ତ୍ତାଇଥିଲା। ମାତ୍ର ଅରୁଣାମାଉସୀ ଆଦୌ ରାଜି ହେଉନଥିଲେ। କାହିଁକି ? ବାପାଙ୍କ ପ୍ରତି କ'ଣ ତାଙ୍କର ଦୁର୍ବଳତା ଥିଲା ? ନା ଏଭଳି ଏକ ଦୁର୍ଘଟଣାର ପରିକଳ୍ପନା ତାଙ୍କ ମନରେ ଥିଲା ?

ମାଆର ଦେହ ଖରାପ ଖବର ପାଇଲା ମାତ୍ରେ ସାମାନ୍ୟ ବିଳମ୍ବ ନକରି ଚାଲି ଆସିଥିଲେ ଅରୁଣାମାଉସୀ। ଆସିବା ପାଖରୁ ଛାଇ ଭଳି ଲାଗି ରହୁଥିଲେ ମାଆ ସହିତ। ମାଆର ଯେ କ'ଣ ହୋଇଥିଲା ଡାକ୍ତରମାନେ ଜାଣିପାରୁନଥିଲେ। ନାନା ପ୍ରକାର ପରୀକ୍ଷା ନିରୀକ୍ଷା ପରେ ବି ରୋଗ ନିରୂପଣ କରାଯାଇ ପାରୁନଥିଲା। ଦିନକୁ ଦିନ ମାଆର ଅବସ୍ଥା ଖରାପ ଆଡ଼କୁ ଯାଉଥିଲା। ବାପା ପାଣି ପରି ପଇସା ଖର୍ଚ୍ଚ କରୁଥିଲେ। କୁଆଡୁ କୁଆଡୁ ସବୁ ସ୍ପେଶାଲିଷ୍ଟମାନଙ୍କୁ ଡକାଇଥିଲେ। ଭିନ୍ନ ଭିନ୍ନ ଡାକ୍ତରଙ୍କ ଭିନ୍ନ ଭିନ୍ନ ମତ, କେତେ ପ୍ରେସ୍କ୍ରିପସନ୍ । ତଥାପି କିଛି ଉନ୍ନତି ନହେବାରୁ ଆମେରିକା ନେଇଯିବାକୁ ବାପା

ଯୋଗାଡ଼ଯନ୍ତ କରୁଥିଲେ। ସେତିକିବେଳେ ମାଆ ସମସ୍ତଙ୍କୁ ଠକି ଚାଲିଗଲା। ଗଲାବେଳେ 'କୋମା' ଅବସ୍ଥାରେ ଥିଲା। ତେଣୁ କାହାକୁ କିଛି କହିପାରିଲା ନାହିଁ। ହୁଏତ ତା'ର କାହାକୁ କିଛି କହିବାର ନଥିବ। ଯେତିକି ଦିନ ବଞ୍ଚିଥିଲା, ଖୁବ୍ ସୁନ୍ଦର ଜୀବନଟିଏ ଜୀଇଁଥିଲା ସେ। ସ୍ୱାମୀ ସନ୍ତାନଙ୍କୁ ନେଇ ସୁଖ ସ୍ୱାଚ୍ଛନ୍ଦ୍ୟଭରା ସଂସାର, ପ୍ରିୟ ପରିଜନଙ୍କର ଅଜସ୍ର ସ୍ନେହଶ୍ରଦ୍ଧା, ଯାହା ମନ ପିନ୍ଧିଲା, ଯାହା ମନ ଖାଇଲା, ଦି'ହାତ ଖୋଲି ବାଣ୍ଟିଲା। କିଛି ହୁଏତ ଅବଶୋଷ ନଥିଲା ତା'ର। ପିଲାଦୁହେଁ ତ ବେଶ୍ ବଡ଼ ହୋଇଛନ୍ତି। ଏକୋଇଶି ବର୍ଷର ଜିତୁ ଆଉ ଉଣେଇଶି ବର୍ଷର ରିନୁ। ତାଙ୍କୁ ନେଇ ଭାବିବାର କ'ଣ ଥିଲା ? ବାପା ତ ରହିଲେ। ବାପାଙ୍କର ସ୍ନେହମୟ ଉଦାର ପିତୃତ୍ୱର ଅନେକ ନିଦର୍ଶନ ସେ ଦେଖିଥିଲା। ପିଲାଙ୍କ ପାଇଁ ସେ ଜୀବନ ଦେଇଦେବେ। ତା' ହେଲେ ଆଉ ଚିନ୍ତା କ'ଣ ? ନିଶ୍ଚିନ୍ତ ହୋଇ ଚାଲିଗଲା ସେ।

ସେଇ ବାପା ତାଙ୍କ ପିଲାମାନଙ୍କର ଅଶେଷ ଲଜ୍ଜା ଆଉ ଗ୍ଳାନିର କାରଣ ହେବେ ବୋଲି କିଏ ଜାଣିଥିଲା ? ଆଉ କେହି ମିଳିଲେ ନାହିଁ ? ସେଇ ଅରୁଣାମାଉସୀଙ୍କୁ ସେ ବାହାହେବେ, ଯାହାର ବିଧବା ହେବା ଖବରରେ ମାଆ କୁଆଡ଼େ କାନ୍ଦିକାନ୍ଦି ଚାରି ପାଞ୍ଚଦିନ ବିଛଣାରୁ ଉଠି ନଥିଲା। ଖିଆପିଆ ଛାଡ଼ି ଦେଇଥିଲା। ସତରେ, ଆତ୍ମା ବୋଲି ଯଦି କିଛି ଥାଏ; ମାଆର ଆତ୍ମା କେତେ କଷ୍ଟ ପାଉଥିବ - ବାପା ଓ ଅରୁଣାମାଉସୀଙ୍କର ଏଇ ବିଶ୍ୱାସଘାତକତାରେ।

ଅରୁଣାମାଉସୀଙ୍କୁ ଜିତୁ ଓ ରିନୁ ଭଲ ପାଆନ୍ତି, କେବଳ, 'ଅରୁଣାମାଉସୀ' ଭାବରେ ହିଁ ଭଲ ପାଆନ୍ତି। ମାଆଙ୍କର ଅନ୍ତରଂଗ ବାନ୍ଧବୀ ଭାବରେ ଖୁବ୍ ଶ୍ରଦ୍ଧା କରନ୍ତି, କିନ୍ତୁ ତାଙ୍କୁ ମାଆର ସ୍ଥାନ ଦେଇ ପାରିବେନି ସେମାନେ। ମାଆ ଚାଲିଯିବା ପରେ ଏଇ ପରିବାର ପାଇଁ ସେ ଅନେକ କିଛି କରିଛନ୍ତି। ସିଏ ଦେଖି ନଥିଲେ ବାହାରର ଲୋକେ ତ ଯାହା ଲୁଟ୍ ପାଟ୍ କରି ଖାଇ ଥାଆନ୍ତେ; ଚାକର, ପୂଜାରୀ ମଧ୍ୟ ଯେ ଯାହାର ଫାଇଦା ଉଠେଇ ଥାଆନ୍ତେ। ଅରୁଣାମାଉସୀଙ୍କ ସତର୍କ ଦୃଷ୍ଟି ଯୋଗୁଁ ସବୁ ସୁଚାରୁ ରୂପେ ଚାଲିଛି। ହଷ୍ଟେଲ୍‌ରେ ସେ ନାମକୁ ମାତ୍ର ରହନ୍ତି। ଚୌଧୁରୀ ପରିବାରର ମାସୁଆରି ସଉଦାପତ୍ର କିଣାଠାରୁ ଆରମ୍ଭ କରି କୋଉଦିନ କ'ଣ ରନ୍ଧା ହେବ ସେକଥା ମଧ୍ୟ ବୁଝନ୍ତି ସେ। ନଆସି ପାରିଲେ ଫୋନ୍ କରି ବୁଝନ୍ତି। ଘର ଠିକ୍ ଭାବରେ ସଫା ନ ହୋଇଥିଲେ, ବିଛଣା ଚଦର ବଦଳା ନହୋଇଥିଲେ କି ବଗିଚରେ ପାଣି ଦିଆ ନହୋଇଥିଲେ କାମକରିବା ଲୋକଙ୍କୁ ତାଗିଦା କରନ୍ତି। ବିରକ୍ତ ମଧ୍ୟ ହୁଅନ୍ତି। ଏଥିପାଇଁ ରିନୁ ଅରୁଣାମାଉସୀଙ୍କ ଉପରେ କୃତଜ୍ଞ ବୋଧ କରୁଥିଲା। କିନ୍ତୁ ଅନ୍ୟମାନଙ୍କ ପାଖରୁ ବାପାଙ୍କ ସହିତ ତାଙ୍କର ସମ୍ଭାବ୍ୟ ସମ୍ପର୍କ କଥା ଶୁଣି ତାଙ୍କ ପ୍ରତି ଏତେ ଦିନର ସ୍ନେହ ଶ୍ରଦ୍ଧା ବିତୃଷ୍ଣାରେ ପରିଣତ

ହୋଇ ଯାଇଥିଲା । ଅରୁଣାମାଉସୀଙ୍କର ସମସ୍ତ କାର୍ଯ୍ୟ ପଛରେ ସ୍ୱାର୍ଥର ଗନ୍ଧ ବାରି ସେ ଅଣନିଃଶ୍ୱାସୀ ହୋଇ ପଡୁଥିଲା । ଯେତେଦୂର ସମ୍ଭବ, ତାଙ୍କ ସାନ୍ନିଧ୍ୟ ଏଡାଇବାକୁ ଚେଷ୍ଟା କରୁଥିଲା ରିନୁ ।

ଆଜିକାଲି ରିନୁ ମନରେ ଛୋଟ ସନ୍ଦେହଟିଏ ଉଙ୍କିମାରେ । ବାପାଙ୍କ ସହିତ ଅରୁଣାମାଉସୀର ସମ୍ପର୍କ ନେଇ ମାଆ ମନରେ କିଛି ଦୁଃଖ ରହିଥିଲା କି ? ସେମିତି କିଛି ଜାଣି ଭିତରେ ଭିତରେ ନିଃଶେଷ ହୋଇଗଲା ସେ । ନା- ପିଲାଦିନରୁ ଏପର୍ଯ୍ୟନ୍ତ ଯେତେ ଘଟଣା ମନେ ପକାଇଥିଲେ ବି ରିନୁର କିଛି ହେଲେ ମନେ ପଡେନାହିଁ । ବାପା ତ ସବୁବେଳେ ଶାନ୍ତ, ଗମ୍ଭୀର । ତାଙ୍କ ମନ ଭିତରେ କଥା ସହଜରେ କେହି ଜାଣି ପାରନ୍ତିନି । ଅରୁଣାମାଉସୀ ସହିତ ତାଙ୍କର ସମ୍ପର୍କ ଥଟ୍ଟା ମଜାର ହୋଇଥିଲେ ମଧ୍ୟ ତାଙ୍କ ସହିତ ସେଭଳି କଥାବାର୍ତ୍ତା କରିବା କେହି ଦେଖିନାହାନ୍ତି । ବରଂ ଅରୁଣାମାଉସୀ ତାଙ୍କ ପାଖରେ ନିଃସଙ୍କୋଚରେ ସବୁକଥା କହିଦିଏ । ମାଆ ଥିଲାବେଳେ ଯେମିତି, ଏବେ ବି ସେମିତି । ଘର ଭିତରେ ସେଇ ଜଣେ ଲୋକ, ଯାହା ସହିତ ବାପା ମନଖୋଲି ଦି'ପଦ କଥାବାର୍ତ୍ତା କରନ୍ତି । ମାଆ ଗଲାପରେ କଥା ଆଉ କ'ଣ ? ଘରର ଭଲ ମନ୍ଦ, ହାନିଲାଭ ଏସବୁ କଥା ବାଦ୍ ଅରୁଣା ମାଉସୀ ପିଲାଦିନର କଥାସବୁ ଗପେ । ଗାଆଁରେ ଥିଲାବେଳେ ମାଆ ଓ ସିଏ କେମିତି ମଜା କରୁଥିଲେ, କେବେ ମାଆ ତାଙ୍କୁ କ'ଣ କହିଥିଲା, ଏମିତି ସବୁ କଥା । ସେଇ ଆବୁରୁଜାବୁରୁ କଥାଗୁଡ଼ିକ ବାପା ଏକାଗ୍ରତାର ସହିତ ଶୁଣନ୍ତି । ଅରୁଣାମାଉସୀ ଆଖିରେ ମାଆର ପିଲାଦିନକୁ ଦେଖି ଆମୋଦିତ ହୁଅନ୍ତି । ବାପାଙ୍କ ପାଖରେ ବସି ମାଆ ବିଷୟରେ ଗପୁ ଗପୁ ବାପାଙ୍କ ହୃଦୟରେ ମାଆର ଶୂନ୍ୟସ୍ଥାନଟି ଦଖଲ କରିନେଲେ କି ସିଏ ? କେଜାଣି, ମାଆ ଯେମିତି ତାଙ୍କୁ ଭଲ ପାଉଥିଲା, ତା'ର ଅସୁସ୍ଥତା ବେଳେ କେବେ ତାଙ୍କଠାରୁ ପ୍ରତିଶ୍ରୁତି ଆଦାୟ କରିନେଇଥିବ, ତା'ର ଅବର୍ତ୍ତମାନରେ ତା ସଂସାରର ଦାୟିତ୍ୱ ନେବାପାଇଁ । ଅସମ୍ଭବ କିଛି ନୁହେଁ । କିନ୍ତୁ ବାପା । ସେ କେମିତି ରାଜି ହେବେ ?

ସେଦିନ ସକାଳୁ ଖୁବ୍ ଜୋରରେ ଘର ସଫାସୁତୁରା ଚାଲିଥିଲା । ବିଶେଷ କରି ଡ୍ରଇଂରୁମ୍‌ଟିକୁ ସୁନ୍ଦର ଭାବରେ ସଜଡ଼ା ହେଉଥିଲା । ରିନୁ ଶୁଣିଲା ବାପା ଫୋନ୍‌ରେ କାହାକୁ ଫୁଲ ନେଇ ଆସିବାକୁ ବରାଦ କରୁଥିଲେ । ପ୍ରାୟ ଦଶଟା ସାଢ଼େ ଦଶଟା ବେଳକୁ ଅରୁଣାମାଉସୀ ଓ ବାପା କୁଆଡ଼େ ବାହାରିଗଲେ । ରିନୁ ଅନାଗତ ଆଶଙ୍କାରେ ଛଟପଟ ହେଉଥିବା ବେଳେ ଜିତୁ ଆସି ପହଞ୍ଚିଗଲା । ବାପା ତାକୁ ଫୋନ୍ କରି ଡକାଇଛନ୍ତି । କାହିଁକି ଡକାଇଛନ୍ତି ସେ ଜାଣେନାହିଁ । କହିବ, କହିବ ନାହିଁ ବୋଲି ହୋଇ ରିନୁ ତା' ମନକଥା ଜିତୁ ଆଗରେ ପ୍ରକାଶ କରି କାନ୍ଦି ପକେଇଲା । ସାନଭଉଣୀକୁ ପ୍ରବୋଧନା ଦେବାକୁ ଯାଇ ଜିତୁ ବି କାନ୍ଦି ପକେଇଲା ।

ବାହାରେ ଗାଡ଼ି ରହିବା ଶବ୍ଦଶୁଣି ଭାଇଭଉଣୀ ଦୁହେଁ ଝର୍କା ପାଖକୁ ଯାଇ ଦେଖିଲେ। ଗାଡ଼ିର ଦରଜା ଖୋଲି ବାପା ଆଗ ତଳକୁ ଓହ୍ଲାଇଲେ। ତାଙ୍କ ପରେ ଅରୁଣାମାଉସୀ। ଅରୁଣାମାଉସୀଙ୍କ ହାତରେ ଫୁଲର ଗଜରାମାଳ। ଛାତି ଭିତରଟା ଶୂନ୍ୟ ହୋଇଗଲା ରିନୁର। ଜିତୁର ମୁହଁ ବି ରକ୍ତଶୂନ୍ୟ ଦିଶିଲା ହଠାତ୍। କୋଉଠି ଟିକିଏ ଆଶା ଥିଲା, ବାପା ହୁଏତ ଶେଷ ମୁହୂର୍ତ୍ତରେ ନିଜର ନିଷ୍ପତ୍ତି ବଦଳାଇବେ। କିନ୍ତୁ ନା-। ବାପା ଓ ଅରୁଣାମାଉସୀ ଘର ଭିତରକୁ ଆସିଲେ। ଦୁଇଜଣଙ୍କର ତ ଦ୍ୱିତୀୟ ବିବାହ, ନୂଆ କଥା ଆଉ କ'ଣ ଯେ। ଦୁଆରେ କେହି ଠିଆ ହୋଇନାହିଁ ବନ୍ଦାଣଥାଳି ଧରି। ବାପା ଆଗେ ଆଗେ ଘର ଭିତରକୁ ପଶିଲେ। ତାଙ୍କ ପଛରେ ଫୁଲମାଳ ହାତରେ ଅରୁଣାମାଉସୀ। ଡ୍ରଇଂରୁମ୍ କାନ୍ଥରେ ମାଆର ବିରାଟ ତୈଳଚିତ୍ର। ବାପା ସେଇଠି ଯାଇ ଠିଆହେଲେ। ରିନୁ ଓ ଜିତୁ ଅନ୍ତରାଳରୁ ରୁଦ୍ଧଶ୍ୱାସରେ ତାଙ୍କୁ ଲକ୍ଷ୍ୟ କରୁଥିଲେ। ଫଟୋରେ ହାତ ବୁଲେଇ ଆଣି ବାପା ଅରୁଣାମାଉସୀଙ୍କ ହାତରୁ ଫୁଲମାଳଟିଏ ନେଇ ଫଟୋରେ ଦେଲେ। ଧୂପକାଠି ଜଳେଇଦେଲେ, ମାଆର ପ୍ରିୟ ଧୂପର ବାସ୍ନାରେ ଚାରିଆଡ଼େ ଯେମିତି ତା'ରି ଉପସ୍ଥିତି ସଞ୍ଚରିଗଲା। ବାପା ଧୂପ ଜାଳି ସାରିବାପରେ ଅରୁଣାମାଉସୀ ମାଆର ଫଟୋ ପାଖକୁ ଯାଇ ତାଙ୍କ ହାତର ଫୁଲମାଳଟି ପିନ୍ଧାଇବାକୁ ଯାଉଛନ୍ତି, ରିନୁ ଚିତ୍କାର କରି ଉଠିଲା, 'ନା - ଆମ ମାଆକୁ ଛୁଅଁନା ତୁମେ।'

ଅରୁଣାମାଉସୀ ଚମକି ପଡ଼ି ଚାହିଁଲେ। ରିନୁ ଓ ଜିତୁ ପାଖାପାଖି ଠିଆ ହୋଇଥିଲେ। ଦୁହିଁଙ୍କ ଆଖିରେ ପ୍ରଚଣ୍ଡ ଘୃଣା ଓ ପ୍ରତ୍ୟାଖ୍ୟାନ। ଅରୁଣାମାଉସୀଙ୍କୁ ଦେଖି ସେମାନେ ମଧ୍ୟ ଅବାକ୍ ହେଲେ। ସେଇ ଧଳା ଶାଢ଼ି, ଖାଲି ହାତରେ ପଟେ ପଟେ ସୁନା ଚୁଡ଼ି, ଶୂନ୍ୟ ସୀମାନ୍ତ। ଏଇ କ'ଣ ତେବେ ନବବିବାହିତାର ବେଶ ? ଅରୁଣାମାଉସୀଙ୍କ ଆଖି ଲୁହ ଢଳଢଳ ହେଲା। ଫୁଲମାଳଟି ସେଇଠି ଥୋଇଦେଇ ସେ ବୁଲିପଡ଼ି ବାହାରକୁ ଚାଲିଗଲେ। ପିଲାମାନଙ୍କ ବ୍ୟବହାରରେ ପ୍ରଥମେ ହତଚକିତ ହୋଇ ଯାଇଥିଲେ ବାପା। ଅରୁଣାମାଉସୀଙ୍କୁ ଚାଲିଯିବାର ଦେଖି ସେ ଡାକୁଥିଲେ, "ଅରୁଣା ଶୁଣ, ଚାଲିଯାଅନାହିଁ।" ସିଏ କିନ୍ତୁ ପଛକୁ ନ ଚାହିଁ ଚାଲିଗଲେ ଝଡ଼ପରି। ବାପା ଦୀର୍ଘ ନିଃଶ୍ୱାସଟିଏ ପକେଇ ଆହତ ଦୃଷ୍ଟିରେ ଥରଟିଏ ପିଲାଦୁହିଁଙ୍କୁ ଚାହିଁ କ୍ଲାନ୍ତ ପଦକ୍ଷେପରେ ନିଜ ରୁମ୍ ଭିତରକୁ ପଶି କବାଟ ବନ୍ଦ କରିଦେଲେ।

କେଜାଣି କାହିଁକି ଦୋଷୀ ଦୋଷୀ ଲାଗିଲା ଜିତୁ ଓ ରିନୁକୁ। ଅସହାୟ ଭାବରେ ମାଆର ଫଟୋଟିକୁ ଚାହିଁଲେ। ମାଆର ହସିଲା ମୁହଁଟି କାନ୍ଦୁରା ଦେଖାଯାଉଛି। ବାପାଙ୍କ ପ୍ରତି ମାଆର ଭଲପାଇବା ଥିଲା ଅଗାଧ। ଅରୁଣାମାଉସୀ ମଧ୍ୟ ତା'ର ପ୍ରାଣର ବାନ୍ଧବୀ। ସେମାନଙ୍କୁ ଅପମାନିତ କରିବା ମାଆ ବୋଧହୁଏ ପସନ୍ଦ କରିପାରିଲା ନାହିଁ।

ବାପା ସେଇ ଯେ ତାଙ୍କ ରୁମ୍‌ରେ କବାଟ ବନ୍ଦ କରିଥିଲେ – ଦିନସାରା ଆଉ ଖୋଲିଲେ ନାହିଁ। ଖାଇବାକୁ ମଧ୍ୟ ବାହାରିଲେ ନାହିଁ। ପୂଜାରୀ ଡାକି ଡାକି ଗଲା। ରିନୁ ଜିତୁ ମଧ୍ୟ କେତେ ଡାକିଲେ। କିନ୍ତୁ କବାଟ ଖୋଲିଲେନି ସେ। ରିନୁ, ଜିତୁ ଭାରି ଡରିଗଲେ। ରିନୁ ଉପରେ ଜିତୁ ବିଗିଡ଼ିଗଲା। ଆଗରୁ ସେ କେତେ ବୁଝାଇଥିଲା ତାକୁ, ବାପା ତାଙ୍କର ଯାହା କଲେ ବି ସେମାନଙ୍କର କିଛି ପ୍ରତିବାଦ କରିବା ଠିକ୍ ନୁହେଁ। କିନ୍ତୁ ଅସଲ ବେଳକୁ ସିଏ ବି ଚୁପ୍ ହୋଇଗଲା ରିନୁ କଥା ଆଗରେ।

ସନ୍ଧ୍ୟାବେଳକୁ ଆଉ ସମ୍ଭାଳି ପାରିଲେ ନାହିଁ ଭାଇଭଉଣୀ ଦିହେଁ। ବାପାଙ୍କ କବାଟ ବାଡ଼େଇ ଡାକୁ ଡାକୁ ରିନୁ ଭେଁ କରି କାନ୍ଦି ଉଠିଲା। ଅବଶେଷରେ କବାଟ ଫିଟିଲା। ଘରସାରା ସିଗାରେଟ୍ ଧୂଆଁ ଭର୍ତ୍ତି। ଆସ୍‌ଟ୍ରେରେ ସିଗାରେଟ୍‌ର ଅବଶେଷର ସ୍ତୂପ। ବାପାଙ୍କ ଆଖି ଦୁଇଟା ଫୁଲା ଫୁଲା। କାନ୍ଦୁଥିଲେ ନିଶ୍ଚେ।

"କୁହ।" ପଚାରିଲେ ସେ।

"ବାପା ଆମର ଭୁଲ୍ ହୋଇଯାଇଛି। ଅରୁଣାମାଉସୀଙ୍କୁ ଆମର ସେମିତି କହିବାର ନଥିଲା। କିନ୍ତୁ ମାଆ ଜାଗାରେ ଆଉ କାହାକୁ ବି ଗ୍ରହଣ କରିବା ଆମ ପକ୍ଷରେ ସମ୍ଭବ ନୁହେଁ।" ତଳକୁ ମୁହଁ ପୋତି ଜିତୁ କହିଲା।

"ମାଆ ଜାଗାରେ ମାନେ ?" ଚମକି ପଡ଼ି ବାପା କହିଲେ। ତା'ପରେ ଗମ୍ଭୀର କଣ୍ଠରେ କହିଲେ, "ଅରୁଣା ମାଉସୀ ତୁମ ମାଆର ବନ୍ଧୁ, ମୋର ବି। ଆଜି ତୁମ ମାଆର ଜନ୍ମଦିନ ଥିଲାରେ; ସେଇଥିପାଇଁ..." ବାକ୍ୟଟି ଆଉ ପୂରଣ କରି ନପାରି ଛୋଟ ପିଲାଟି ପରି ଭୋ ଭୋ ହୋଇ କାନ୍ଦି ଉଠିଲେ ସେ। ରିନୁ ଓ ଜିତୁ ବ୍ୟାକୁଳ ହୋଇ ବାପାଙ୍କ ପାଖକୁ ଲାଗି ଆସିଲେ। ସେମାନଙ୍କ ଆଖିରୁ ବି ଝରି ପଡୁଥିଲା ଅବାରିତ ଅଶ୍ରୁ। ଆଖିରୁ ଲୁହ ପୋଛି ବାପା କହିଲେ, "ତୁମ ମାଆର ସ୍ଥାନ ଆଉ କେହି କେବେ ବି ନେଇ ପାରିବନି। ମୋ ସତ୍ତାରେ ସିଏ ଏମିତି ବ୍ୟାପି ଯାଇଛି ଯେ ଆଉ କାହାରି ଅନୁପ୍ରବେଶ ସେଠି ସମ୍ଭବ ନୁହେଁ।"

ଦୁଇ ହାତରେ ଛାତି ଉପରେ ଜାବୁଡ଼ି ଧରିଥିଲେ ସେ ପିଲା ଦୁହିଁଙ୍କୁ। ତିନିଜଣଙ୍କ ଆଖିରୁ ଝରୁଥିଲା ନୀରବ ଅଶ୍ରୁ।

# ତପସ୍ୟା

ସେଦିନ ଅଭିଳାଷ ଅଫିସ୍ ବାହାରିଯିବା ପରେ ଆହୁତି ଅଣ୍ଟାରେ ପଣନ୍ତ ଖୋଷି ଘର ସଜାଡ଼ିବାରେ ଲାଗିଗଲା। ବାହାଘର ପରେ ପ୍ରଥମ କରି ସେ ସ୍ୱାମୀଙ୍କ ସହିତ ସଂସାର ପାତିବା ପାଇଁ ଏଇ ସହରକୁ ଆସିଛି। ଶାଶୂ ଶ୍ୱଶୁର ତାକୁ ସାଙ୍ଗରେ ଆଣି ଏଇଠି ଛାଡ଼ିଦେଇ ଦୁଇ ଚାରିଦିନ ରହି ଚାଲିଗଲେ। ଗଲାବେଳେ ଅନେକ ଉପଦେଶ ଦେଇଗଲେ ସାବଧାନରେ ଚଳିବାକୁ। ଅଜଣା, ଅଚିହ୍ନା ପରିବେଶରେ ନୂଆବୋହୂଟି ଚଳିବା ପାଇଁ କେତେ ପ୍ରକାର ଅସୁବିଧା ହୋଇପାରେ। ବାହାଘର ପରେ ଅଭିଳାଷ ତାଙ୍କର ପୂର୍ବ ବସାଘରଟି ଛାଡ଼ି ପ୍ରାୟ ନିର୍ଜନ ସ୍ଥାନରେ ଏଇ ଫ୍ଲାଟ୍‌ଘରଟି ନେଇଛନ୍ତି। ନବବିବାହିତମାନଙ୍କ ପାଇଁ ନିରୋଳାରେ ସମୟ ବିତେଇବାର ସୁବିଧା ଅବଶ୍ୟ ଏଠି ଖୁବ୍ ବେଶି, ତେବେ ସମୟ ଅସମୟରେ ସାହା ଭରସା ହେବାପାଇଁ କେହି ତ ପୁଣି ଥିବା ଦରକାର, ବିଶେଷ କରି ଅଭିଳାଷ ଅଫିସ୍ ଚାଲିଯିବା ପରେ। ଗହଳି ଘରୁ ଆସିଥିବା ଆହୁତି ପାଇଁ ଏଇ ଗୋଟାଏ ନିର୍ବାସନ ଦଣ୍ଡ ପାଇବା ଭଳି ଅବସ୍ଥା। ସବୁଠାରୁ ବେଶି ଡର ତା'ର ଅଭିଳାଷଙ୍କୁ। ଅଜବ ବ୍ୟକ୍ତିଟିଏ ସେ। ଅଦ୍ଭୁତ ତାଙ୍କର ଆଚରଣ ଓ ବ୍ୟବହାର। ସବୁବେଳେ କେମିତି ଅନ୍ୟମନସ୍କ ଓ ଖାପଛଡ଼ା ଲାଗନ୍ତି। ଏମିତି ଲୋକ କାହିଁକି ବାହା ହୁଅନ୍ତି କେଜାଣି। ଏମିତି ଲୋକ ଲୋଟା କମଣ୍ଡଳୁ ଧରି ବାବାଜୀ ହୋଇଯିବା ଭଲ। ବାହାଘର ମାସେ ଉପରକୁ ହେଲାଣି। ତଥାପି ଆହୁତି ପାଖରେ ସେ ଅଚିହ୍ନା ମଣିଷଟିଏ। ଆହୁତିର ଭାରି ରାଗ ହୁଏ ନିଜ ବାପାମାଆଙ୍କ ଉପରେ। ପୃଥିବୀ ସାରା ଆଉ ଯେମିତି କେହି ନଥିଲେ ଆହୁତିକୁ ବାହାହେବା ପାଇଁ।

ଦୀର୍ଘନିଃଶ୍ୱାସ ଛାଡ଼ିଲା ଆହୁତି। ଠିକ୍ ଅଛି। ଇଏ ବି ଗୋଟାଏ ଚ୍ୟାଲେଞ୍ଜ ତା ପାଇଁ। ଅଗ୍ନିକୁ ସାକ୍ଷୀ ରଖି ବାହା ହୋଇଛି ଯେତେବେଳେ, ଯାହା ହେଲେ ବି, ଯେମିତିହେଲେ ବି ସେ ଆହୁତିର। ତାଙ୍କ ମନ ପାଇବାକୁ ସେ ପ୍ରାଣପଣେ ଚେଷ୍ଟା କରିବ। ଆହୁତି ଦେଖିବାକୁ ମନ୍ଦ ନୁହେଁ। ରଙ୍ଗ ଟିକେ ମଇଳା ହେଲେ ବି ଗଢ଼ଣ ଖୁବ୍

ଭଲ। କ'ଣ କ'ଣ କଲେ ସେ ଆକର୍ଷଣୀୟା ହୋଇପାରିବ ସେ କଳା ମଧ୍ୟ ତା'ର ଆୟତ୍ତରେ। ଦେଶୀ ବିଦେଶୀ ଅନେକ ପ୍ରକାର ରନ୍ଧା ସେ ଜାଣେ। ଗୃହସଜ୍ଜାରେ ମଧ୍ୟ ଖୁବ୍ ଦକ୍ଷ ସେ। ଗୀତ ଗାଇ ଅନେକ ପୁରସ୍କାର ଓ ପ୍ରଶଂସା ସେ ପାଇଛି। ବ୍ୟବହାର କୁଶଳତା ଯୋଗୁଁ ସମସ୍ତେ ତାକୁ ଭଲ ପାଆନ୍ତି। ଅଭିଳାଷଙ୍କୁ ଯଦି ସେ ନିଜ ପ୍ରତି ଆକୃଷ୍ଟ କରି ନ ପାରିଲା, ଏତେ ସବୁ ଗୁଣ ଥାଇ କ'ଣ ହେବ ? ଧନ କଥା ସେ ଭାବୁ ନଥିଲା। ଅଭିଳାଷ ଏକ ପ୍ରତିଷ୍ଠିତ କମ୍ପାନୀରେ ଉଚ୍ଚପଦସ୍ଥ ଅଫିସର। ତଥାପି ଆହୁତିର ବାପା ହାତଖୋଲି ଅନେକ କିଛି ଦେଇଛନ୍ତି। ସେଥିରୁ ସମାନ୍ୟ କିଛି ଆହୁତିର ନୂଆ ସଂସାରକୁ ଆସିଛି। ଆଉ ସବୁ ସେଇ ଶାଶୂଘରେ ଅଛି। ଶାଶୂ କହିଛନ୍ତି, ତା'ର ଯାହା ଦରକାର ହେବ ଖବର ଦେଲେ ପଠାଇଦେବେ।

ଘର ସଜାଡ଼ିବ ଆହୁତି। ଏମିତି ସୁନ୍ଦର ଭାବରେ ସଜେଇ ଦେବ ଯେ ଅଭିଳାଷ ଅଫିସରୁ ଆସି ମୁଗ୍ଧ ହୋଇଯିବେ। ତାଙ୍କ ଗମ୍ଭୀର ମୁହଁରେ ହସ ଟିକିଏ ଫୁଟିଉଠିବା ଦେଖିଲେ ଆହୁତିର ହୃଦୟ ଉଲ୍ଲସିତ ହୋଇଯିବ। ଆଗ ଥାକଗୁଡ଼ା ସଜାଡ଼ିଦେବ। ବହିଥାକ, କାନ୍ଥ ଆଲ୍‌ମାରି ଖୁବ୍ ଅସଜଡ଼ା ହୋଇ ରହିଛି। ପୁରୁଣା ବସାରୁ ଜିନିଷପତ୍ର ଆସି ଆଲୁରୁବାଲୁରା ହୋଇ ରହିଛି। ବହି ଗୁଡ଼ିକ ଝାଡ଼ି ପୋଛି, ଥାକରେ କାଗଜ ପକେଇ ଯତ୍ନକରି ରଖିବା ବେଳେ ଦେଖିଲା, ଅନେକ ଗଳ୍ପ, ଉପନ୍ୟାସ ବହି ରହିଛି। ଓଡ଼ିଆ ଇଂରାଜୀ, ହିନ୍ଦୀ ଭାଷାର ଉପନ୍ୟାସମାନଙ୍କର ସଂଖ୍ୟା ଅଧିକ। ଏସବୁ ବହି ପଢ଼ନ୍ତି ଅଭିଳାଷ ! ଏମିତି ରୋମାଣ୍ଟିକ ବହିସବୁ ପଢ଼ିବା ପରେ ବି ସେ ଏମିତି ଶୁଷ୍କ, ନୀରସ କାହିଁକି ? ସବୁ ବହି ଭିତରେ ସଂକ୍ଷେପରେ ନାଁଟିଏ ଲେଖା ହୋଇଛି 'ଏ.ଏ.ଏମ୍'। ଖୁବ୍ ସୁନ୍ଦର ଭାବରେ କମକୁଟ ହୋଇ ଲେଖା ହୋଇଛି ଅକ୍ଷର ତିନୋଟି। ଏ ବହି ଯଦି ଅଭିଳାଷଙ୍କର ହୋଇଥାଆନ୍ତା ତେବେ କେବଳ ଏ.ଏମ୍.ଲେଖା ହୋଇଥାଆନ୍ତା, ଏ.ଏମ୍. ମାନେ ଅଭିଳାଷ ମିଶ୍ର। ହୁଏତ ଆଉ କାହାଠାରୁ ଆଣିଥିବେ ପଢ଼ିବାକୁ। କିନ୍ତୁ ପ୍ରାୟ ତିନିଭାଗ ବହିରେ ସେଇ ଏକ ପ୍ରକାର ଲେଖା। ଆହୁତିର ମନେ ପଡ଼ିଲା, କୌଣସି ଜଣେ ବିଖ୍ୟାତ ବ୍ୟକ୍ତି ଅନ୍ୟମାନଙ୍କ ଠାରୁ ମାଗିଆଣି ଆଉ ନ ଫେରାଇଥିବା ବହିରେ ନିଜର ଏକ ଲାଇବ୍ରେରୀ କରିଥିଲେ। ଅଭିଳାଷ କ'ଣ ସେମିତି କରିଛନ୍ତି କି ? ଏ ପ୍ରକାର ଭାବନାରେ ମନେ ମନେ ହସିଲା ସେ।

ଅଭିଳାଷଙ୍କର ପୋଷାକ ଆଲ୍‌ମାରିଟା ସଜାଡ଼ିବା ଦରକାର। ଅଫିସ୍ ଯିବା ଆଗରୁ ସମାନ ରଂଗର ମୋଜା ହଳେ ନ ପାଇ ବିରକ୍ତ ହୋଇ ସେ ଫୋପଡ଼ା ଫୋପଡ଼ି କରୁଥିଲେ। ପ୍ରଥମେ ସବୁ ଡ୍ରେସ, ଲୁଗାପଟା ଆଣି ପଲଙ୍କ ଉପରେ ଗଦା କଲା ଆହୁତି। ଗୋଟି ଗୋଟି କରି ସଜାଡ଼ି ରଖିବ। ଆଲ୍‌ମିରାର ଲୁଗାପଟା ତଳେ ଏଣୁ ତେଣୁ କେତେ

କାଗଜପତ୍ର, ପାଶ୍‌ବୁକ୍। ମୋଟା ଖାମ୍‌ଟିଏ ଦେଖି କୌତୂହଳରେ ଆହୁତି ଠିକଣା ଉପରେ ଆଖି ପକେଇଲା। ଅଭିଳାଷଙ୍କର ଅଫିସ୍ ଠିକଣାରେ ଚିଠିଟି ଆସିଛି। ପ୍ରେରକ ସ୍ଥାନରେ ଏ.ଏ.ଏମ୍ ଲେଖାଯାଇ ଗୋଟିଏ 'ଏ' ଉପରେ ନାଲି କାଳିରେ ଛକି ମରାଯାଇଛି। ଆହୁତିର କୌତୂହଳ ଆହୁରି ସାନ୍ଦ୍ର ହେଲା। ଖାମ୍‌ଟିରୁ ବାହାର କରିଆଣିଲା ଅଭ୍ୟନ୍ତରର ରହସ୍ୟ। ଦଶବାର ପୃଷ୍ଠାର ଚିଠିଟିଏ। ସମ୍ବୋଧନ ସ୍ଥାନରେ କେବଳ କେତୋଟି ବିନ୍ଦୁ ଦିଆଯାଇଛି। ଆହୁତିର ଛାତି ଭିତରେ ହାତୁଡ଼ି ପିଟାର ଯନ୍ତ୍ରଣା। ସମ୍ବୋଧନର ଶୂନ୍ୟସ୍ଥାନ ତା ହୃଦୟକୁ ସଞ୍ଚରି ଆସୁଥିଲା ଅବା ! ଖଟ ଉପରେ ଧମ୍ କିନା ବସିପଡ଼ି କମ୍ପିତ ହାତରେ ଚିଠିଟି ପଢ଼ିବା ଆରମ୍ଭ କଲା।

'... ... ...'

ତୁମକୁ ଯାହା ଯାହା ସମ୍ବୋଧନ କରୁଥିଲି, ସେଇ ସମ୍ବୋଧନ କରିବାର ଅଧିକାର ମୋର ଆଉ ନାହିଁ। ତେଣୁ ସେଇ ଜାଗା ଖାଲି ରଖିଦେଲି। ମୁଁ ଏବେ ବି ବିଶ୍ୱାସ କରିପାରୁନି। ତୁମେ ମୋ ବ୍ୟତୀତ ଆଉ କାହାରିକୁ ସ୍ୱାମୀ ଭାବରେ ଗ୍ରହଣ କରିପାରିଥିବ ବୋଲି। ମନେ ହେଉଛି ହୁଏତ ମୁଁ ଗୋଟିଏ ଦୁଃସ୍ୱପ୍ନ ଦେଖୁଛି, ସେଇ ସ୍ୱପ୍ନ ଭାଙ୍ଗିଗଲେ ତୁମେ ପୁଣି ପହଞ୍ଚିଯିବ ମୋ ପାଖରେ। ତୁମର ସେ ଭୁବନଜିଣା ହସରେ ମୋ ଭିତରର ଦୁଃଖ, ଅବସାଦ ସବୁ ପୋଛିଦେବ ପଲକ ମାତ୍ରକେ। ସାଉଁଟି ନେବ ମୋତେ ତୁମ ଦୁଇ ହାତର ବନ୍ଧନୀ ଭିତରକୁ। ଗତ ଚାରିବର୍ଷର ସମ୍ପର୍କ ମଧ୍ୟରେ ମୁଁ କେବେ ମଧ୍ୟ ଭାବିନାହିଁ ତୁମେ ମୋ ଠାରୁ ଭିନ୍ନ ବୋଲି। ତୁମ ସତ୍ତାର ଏକ ଅବିଚ୍ଛେଦ୍ୟ ଅଂଶ ବୋଲି ନିଜକୁ ମଣିଛି ମୁଁ। ପ୍ରତି ମୁହୂର୍ତ୍ତରେ ତେଣୁ ତୁମରି ସାନ୍ନିଧ କାମନା କରିଛି। ତୁମ ସହିତ ଏକାତ୍ମ ହୋଇଯିବାର ପ୍ରତ୍ୟୟ ମୋ ଭିତରେ ଏମିତି ସୁଦୃଢ଼ ହୋଇଛି ଯେ ସାମାଜିକ ନୀତି, ନିୟମ, ଶୃଙ୍ଖଳା, ସବୁ ତୁଚ୍ଛ ହୋଇଯାଇଛି ମୋ ପାଖରେ। ବ୍ରାହ୍ମଣର ମନ୍ତ୍ରପାଠ, ହୋମ, ହାତଗଣ୍ଠି କିଛି ନ ହୋଇଥିଲେ ବି ମୁଁ ତ ତୁମର ପରିଣୀତା ହୋଇସାରିଛି ମନେ ମନେ। ସୁନ୍ଥାରେ ସିନ୍ଦୂର ନାଇ ନାହିଁ, କିନ୍ତୁ ସଧବାର ସମସ୍ତ ଆଚରଣ ପାଳିଛି। କେତେ ବାହାନା କରି ବ୍ରତ, ଉପବାସ ଦିନମାନ ପାଳିଛି ତୁମ ମଙ୍ଗଳ କାମନା କରି।ଏସବୁ କଥା ତୁମେ ଜାଣିଛ। ମୋର ପାଗଳାମି ଦେଖି ହସିଛ। ଆକଟ କରିଛ ଅନ୍ୟମାନଙ୍କ ଦୃଷ୍ଟିରେ ନିଜକୁ ଲୋକହସା ନ କରିବାକୁ। ତୁମପାଇଁ ଲୋକହସା ହେବାରେ ମୋର ଡର ନଥିଲା। ତୁମର ଭଲପାଇବା ମୋ ପାଇଁ ଅନେକ ଗର୍ବ ଓ ଗୌରବର ବିଷୟ ଥିଲା। ତୁମ ସହିତ ମୋର ସମ୍ପର୍କ ସାରା ସଂସାରକୁ ଜଣାଇବାକୁ ମୁଁ ଚାହୁଁଥିଲି। ତୁମେ ଟିକେ ସଂକୁଚିତ ହେଉଥିଲ। ତୁମର କୁଣ୍ଠା, ତୁମର ଲଜ୍ଜା, ଦେଖି ମୁଁ ଆମୋଦିତ ହେଉଥିଲି, କାରଣ ମୋର ବିଶ୍ୱାସ ଥିଲା, ତୁମେ କେବଳ ମୋର- ଆଉ କାହାର ଏତେ ଟିକିଏ ମଧ୍ୟ ଅଧିକାର ନାହିଁ ତୁମ ଉପରେ।

ତୁମର ହୁଏତ ସବୁକଥା ମନେ ନଥିବ। ସେଇଥିପାଇଁ ମୁଁ ମନେ ପକାଉଛି ଆମ ସମ୍ପର୍କର ପ୍ରଥମ ଦିନର କଥା। ଆତ୍ମସମୀକ୍ଷା କରୁଛି ମୁଁ। କୋଉଠି ମୋର ଭୁଲ୍ ରହିଲା ? କାହିଁକି ତୁମେ ଏତେ ବଡ଼ ଶାସ୍ତି ମୋତେ ଦେଲ ? ମୁଁ ତୁମକୁ ଚିହ୍ନିଥିଲି ଯଦିଓ, ସେମିତି କୌଣସି ଆକର୍ଷଣ ପ୍ରଥମ ଦେଖାରେ ଅନୁଭବ କରିନଥିଲି। ଆମ ଘର ପାଖାପାଖି ତୁମେ ରହୁଥିଲ। ସାହି ପଡ଼ିଶାର ଅନ୍ୟ ପଚାଶ, ଶହେ ଲୋକଙ୍କ ଭଳି ତୁମେ ବି ସାଧାରଣ ଥିଲ ମୋ ପାଖରେ। କ୍ରମେ ଅନୁଭବ କଲି ମୋର ଯିବା ଆସିବା ବାଟରେ ତୁମେ ଠିଆ ହୋଇରହୁଛ। ଚାହିଁରହୁଛ ମୋତେ ତୀବ୍ର ଦୃଷ୍ଟିରେ। ଅସ୍ୱସ୍ତି ବୋଧ କରୁଥିଲି। ଥରେ କୌଣସି କାମରେ ବା କାମର ବାହାନାରେ ଆମ ଘରକୁ ଆସିଥିବା ବେଳେ ତୁମକୁ ପଚାରିଥିଲି ବିରକ୍ତ ହୋଇ, "ସବୁବେଳେ ଏମିତି ମୋତେ ଚାହଁ କାହିଁକି ?" ତୁମ ଗୋରା ମୁହଁ ନାଲି ପଡ଼ିଯାଇଥିଲା। ଝଟ୍ କରି ବୁଲିପଡ଼ି ଚାଲିଯାଇଥିଲ। ତା'ର ଦି'ଦିନ ପରେ ଚିଠିଟିଏ ପାଇଲି ତୁମ ପାଖରୁ, ତୁମ ଚାହାଣୀର ପରିଭାଷା ବୁଝିବା ପାଇଁ ଚେଷ୍ଟା କରିବାକୁ। ମୋର କୁମାରୀ ମନ ତୁମର ଏ ଆସ୍ପର୍ଦ୍ଧାରେ କ୍ଷୁବ୍ଧ ହୋଇଥିଲା। ଭାବିଥିଲି ତୁମର ଏ ଚିଠି ମୋ ବୋଉବାପାଙ୍କୁ ଦେଖାଇ ଆଚ୍ଛା କରି ପାନେ ଦେବି ତୁମକୁ। କାହିଁକି କେଜାଣି ସେ କଥା କରିପାରିଲି ନାହିଁ। ସେମିତି କରିଥିଲେ ଆଜି ଏଇ ଅଶ୍ରୁର ଭଉଁରୀରେ ଉବୁଟୁବୁ ହେଉନଥାନ୍ତି।

ମୋତେ ପାଇବାକୁ ତୁମେ ରୀତିମତ ସାଧନା କରିବା ଆରମ୍ଭ କରିଦେଇଥିଲ। ଏମିତି କିଛି ଅସାଧାରଣ ଝିଅ ମୁଁ ନୁହେଁ। ସାଧାରଣ ଚେହେରା ଓ ଗୁଣର ଅତି ସାଧାରଣ ମଧ୍ୟବିତ୍ତ ପରିବାରର ଝିଅଟିଏ ଥିଲି। ହଁ, ମୋ ବାପା ଓ ଭାଇମାନେ ଭଲ ଚାକିରି କରୁଥିଲେ। ସମସ୍ତଙ୍କର ଖୁବ୍ ଆଦରର ପାତ୍ରୀ ଥିଲି ମୁଁ। ମୋର ସମସ୍ତ ଇଚ୍ଛା, ଖୁସି ପୂରଣ ପାଇଁ ମୋ ପରିବାର ତତ୍ପର ଥିଲେ। ଯାହା ଚାହୁଁଥିଲି, ତାହା ପାଉଥିଲି। ସେଇଥିପାଇଁ ଏକଜିଦିଆ,ଏକବାଗିଆ ପାଲଟି ଯାଇଥିଲି। ନିଜର ଯୋଗ୍ୟତା ଓ ସାମର୍ଥ୍ୟକୁ ଖୁବ୍ ଅଧିକ ଗୁରୁତ୍ୱ ଦେଉଥିଲି। ମୋ ଭିତରେ ତୁମେ କ'ଣ ଦେଖିଥିଲ କେଜାଣି ମୋତେ ପାଇବା ପାଇଁ ଆକାଂକ୍ଷିତ ହୋଇଥିଲ, ବ୍ୟଗ୍ର ହୋଇ ପଡ଼ିଥିଲ। ନିଜକୁ ବାମନ ବୋଲି ବାରମ୍ବାର କହୁଥିଲ। କେମିତି କୋଉ ସୂତ୍ରରୁ ମୋର ରୁଚି, ମୋର ପସନ୍ଦ ଅପସନ୍ଦର ଖବର ସଂଗ୍ରହ କରି ସେଇଭଳି ହେବା ପାଇଁ ଆପ୍ରାଣ ଉଦ୍ୟମ କରୁଥିଲ। ଯେମିତି ଉପନ୍ୟାସ ପଢ଼ିବା ସଉକ ତୁମର ପ୍ରବଳ ହୋଇଥିଲା। ଲାଇବ୍ରେରୀମାନଙ୍କର ସଦସ୍ୟ ହୋଇ ବହି ପଢ଼ିବା ଆରମ୍ଭ କରିଥିଲ। ତାପରେ ମୋ ପସନ୍ଦର ଲେଖକ - ଲେଖିକାଙ୍କର ବହି କିଣି ପଢ଼ିଲ। କେତେ କୌଶଳରେ ବହି କିଣି ମୋ ପାଖକୁ ପଠାଉଥିଲ, ନାଁ ଲେଖି ଦେବାକୁ। ପୁଣି ଫଟୋଗ୍ରାଫି ପ୍ରତି ମଧ୍ୟ ଖୁବ୍ ଝୁଙ୍କିଥିଲ - ସିଏ ବି ମୋତେ ପ୍ରଭାବିତ କରିବା ପାଇଁ।

ମୋ ପସନ୍ଦର ସିନେମା ଦେଖୁଥିଲ। ମୋର ପ୍ରିୟ ଗାୟକ- ଗାୟିକାଙ୍କର କ୍ୟାସେଟ୍ କିଣୁଥିଲ।

ଅଭିଳାଷ, ମୁଁ ତ ଦେବୀ କି ମହାମାନବୀ ନଥିଲି। ଖୋସାମତରେ କୁଆଡ଼େ ଭଗବାନ୍ ବି ଟଳନ୍ତି -ମୋ ପରି ରକ୍ତମାଂସରେ ଗଢ଼ା ସାଧାରଣ ଝିଅଟିଏ କେତେଦିନ ଦମ୍ଭ ଧରିଥାଆନ୍ତା ! ଆସ୍ତେ ଆସ୍ତେ ମୁଁ ବି ତୁମ ପ୍ରତି ଆକୃଷ୍ଟ ହେଉଥିଲି ମୋ ଅଜାଣତରେ। ସେହି ସମୟରେ ତୁମେ ହଠାତ୍ ମୋର ଦୃଷ୍ଟିଗୋଚର ହେଲ ନାହିଁ। ସାତ ଆଠ ଦିନ ତୁମକୁ ନ ଦେଖି ମୁଁ ବ୍ୟାକୁଳ ହୋଇପଡ଼ିଲି। କେବେ ଯାଉ ନଥିବା ତୁମର ସେଇ ସମ୍ପର୍କୀୟ ଭାଇଙ୍କ ଘରକୁ ମୁଁ ପହଞ୍ଚ ଯାଇଥିଲି ତୁମର ଭାଉଜଙ୍କ ଠାରୁ ଉଲ୍‌ବୁଣା ଶିଖିବାର ବାହାନା କରି। ତୁମ କଥା ଆଉ ପଚାରିବା ଦରକାର ପଡ଼ିଲା ନାହିଁ। ଦାଣ୍ଡଘର ଖଟରେ ହିଁ ତୁମେ ଶୋଇଥିଲ ଅସୁସ୍ଥ ହୋଇ। ତୁମର ରୋଗପାଣ୍ଡୁର ମୁହଁ ମୋତେ ଦେଖି ଉଜ୍ଜ୍ୱଳ ଦିଶିଥିଲା। ତୁମ ଭାଉଜ ମୋତେ ଦେଖି କୋଟିନିଧି ପାଇଲା ପରି ଉଚ୍ଛ୍ୱସିତ ହୋଇ ଉଠିଥିଲେ। ହାତ ଧରି ପାଖରେ ବସାଇ ଥିଲେ। ଖୁବ୍ ଆଗ୍ରହରେ ମୋତେ ଉଲ୍‌ବୁଣା ଶିଖାଇଥିଲେ। ମୋତେ ବୁଣିବାକୁ ଧରେଇ ଦେଇ ସେ ଚା' କରିବାକୁ ଭିତରକୁ ଯାଇଥିଲେ। ଖୁବ୍ ସନ୍ତର୍ପଣରେ ମୁଁ ଯାଇ ଠିଆ ହୋଇଥିଲି ତୁମ ପାଖରେ। ତୁମେ ଆଖି ବନ୍ଦ କରି ଶୋଇବାର ଛଳନା କରୁଥିଲ। ମୋତେ ଜଣାଥିଲା, ତୁମେ ଆମ କଥାବାର୍ତ୍ତାକୁ କାନେଇ ଥିଲ। ତୁମ କପାଳରେ ମୁଁ ମୋର ହାତ ରଖିବା ମାତ୍ରକେ, ତୁମର ଜ୍ୱରତପ୍ତ ହାତରେ ଚାପି ଧରିଲ ମୋ ହାତ। ମୋ ପାପୁଲିରେ ଓଠ ରଖିଲ। ମୋର ସମଗ୍ର ସତ୍ତା କମ୍ପି ଉଠିଲା। ଭୟରେ ହାତ ଛଡ଼ାଇ ଯାଇ ସୋଫାରେ ବସିଲି। ଭାଉଜ ଚା' ନେଇ ଆସିବା ପର୍ଯ୍ୟନ୍ତ ଉଲ୍‌କଣ୍ଟାରୁ ଫିଟି ଯାଇଥିବା ଘରଗୁଡ଼ିକ ପୁଣିଥରେ କଣ୍ଟା ଭିତରକୁ ଆଣିବାକୁ ଚେଷ୍ଟା କରୁଥିଲି। ମୋ ମନ କିନ୍ତୁ ମୋ ଆୟତ୍ତରେ ନଥିଲା ଆଉ।

ଯା' ପରେ ଉଲ୍‌ବୁଣା ଶିଖିବା ନିଶା ମୋ ଉପରେ ସବାର ହୋଇଗଲା। ପ୍ରାୟ ସବୁଦିନ ତୁମ ଘରକୁ ଯାଉଥିଲି। ତୁମ ସହିତ ଯଦିଓ ସିଧା ସଳଖ କଥାବାର୍ତ୍ତା କରୁନଥିଲି, ତେବେ ଭାଉଜଙ୍କୁ କହିଲା ବେଳେ ଅନେକ କଥା କହୁଥିଲି, ଯାହା ତୁମ ପାଇଁ ଉଦ୍ଦିଷ୍ଟ ଥିଲା। ଦିନ ଭିତରେ ତୁମକୁ ଥରଟିଏ ନ ଦେଖିଲା ଯାଏ ମୋତେ ଶାନ୍ତି ମିଳୁନଥିଲା। ଦେହ ଭଲ ହେବା ପରେ ତୁମେ ପୁଣି ଆମ ଘର ବାଟ ଦେଇ ଯିବା ଆସିବା କରିବାରୁ ମୋର ଉଲ୍ ବୁଣା ଶିଖିବା ନିଶା କମିଗଲା। ସେ ପର୍ଯ୍ୟନ୍ତ ତୁମେ କ'ଣ କର, ପଚାରି ନଥିଲି। ଅନୁମାନ କରୁଥିଲି - କିଛି ଗୋଟାଏ ସାଧାରଣ ଚାକିରି କରୁଥିବ। ତୁମ ପାଇଁ ମୁଁ ଏତେ ବ୍ୟାକୁଳ ଥିଲି, ତୁମେ ଯାହା ହେଲେ ବି ତୁମର ପତ୍ନୀ ହେବାରେ ମୋର ଆପତ୍ତି ନଥିଲା। ତୁମ ସହିତ ଟିକିଏ କଥା ହେବା ପାଇଁ ବହୁତ ଚାହୁଁଥିଲି। ତେଣୁ କଲେଜ୍ ଯିବା

ଆସିବା ରାସ୍ତାରେ ତୁମେ ଠିଆ ହୋଇଥିବା ଦେଖିଲେ ମୋ ଭିତରେ ଉଲ୍ଲାସ ଭରି ଯାଉଥିଲା। ପ୍ରଥମେ ପ୍ରଥମେ ବିରକ୍ତ ହୋଇଥିଲି ଉପର ମନରେ ଯେ ସବୁଦିନ ଅଫିସ୍ କମେଇ କରି ଆସିଲେ ତୁମର ଚାକିରି ଗୋଲ୍ ହୋଇଯିବ। ମୋର ପାଠପଢ଼ା ବି ବନ୍ଦ ହେବ। ତୁମେ ଖାତିର କରୁନଥିଲ। ହସି ହସି କହୁଥିଲ, "ଭଲ ହେବ, ଆମେ ଦୁହେଁ ନିଶ୍ଚିନ୍ତରେ ବସି ଅନେକ ସମୟ ଗପି ପାରିବା।" ଗପିବା ପାଇଁ ନିରୋଳା ଜାଗାଟିଏ ଖୋଜି ଖୋଜି ଆମେ କେତେ ଆଡ଼େ ଯାଇଛେ। ସହର ସାରା ଆମର ପରିଚିତ ଲୋକଙ୍କର ମୁହଁ। କୋଉଠି ନା କୋଉଠି କାହା ଦୃଷ୍ଟିରେ ଆମେ ପଡ଼ିଯିବାର ଭୟ ରହିଥିଲା। ଧରା ପଡ଼ିବାର ଭୟରେ ନୁହେଁ, ଆମ ଭିତରେ ଆଉ କାହାରି ଅବାଞ୍ଛିତ ଅନୁପ୍ରବେଶ ମୁଁ ଚାହୁଁନଥିଲି। କେବେ କେବେ ତୁମେ ତୁମର କେଉଁ ସାଂଗ ପାଖରୁ ସ୍କୁଟର ମାଗି ଆଣିଥାଅ। ନିଃସଙ୍କୋଚରେ ମୁଁ ତୁମ ସାଙ୍ଗରେ ଚାଲିଯାଏ, ଧଉଳି, ନନ୍ଦନକାନନ, ଖଣ୍ଡଗିରି। ନିରୋଳା ସ୍ଥାନଟିଏ ବାଛି ବସିଯାନ୍ତି ଆମେ ଦୁହେଁ- ଯେତେ ସମୟ ରହିବା ସମ୍ଭବ ସେତେବେଳ ଯାଏ।

ଯେଉଁଦିନ ତୁମର ଅଫିସରେ ଜରୁରୀ କାମ ଥାଏ, ପାଞ୍ଚମିନିଟ୍ ଦେଖାକରି ଚାଲିଯାଅ। ଟୁର୍‌ରେ ଯିବାର ଥିଲେ ପୂର୍ବରୁ କହିଥାଅ। ତୁମର ଦିନକର ଅନୁପସ୍ଥିତି ମୋତେ ଯୁଗଟିଏ ପରି ମନେହୁଏ। ତୁମ ସହିତ ମୋର ସମସ୍ତ ପ୍ରାଣଶକ୍ତି ମଧ୍ୟ ଚାଲିଯାଇଥାଏ ଯେମିତି। ନିର୍ଜୀବ ମନେହୁଏ ନିଜକୁ। ତୁମକୁ ଦେଖିଲେ ମୋ ଦେହରେ ଜୀବନ ପଶେ। ତୁମେ କୁହ, ତୁମର ବଡ଼ ପରିବାର। ସେଠି ଯଦି ମୁଁ ବଡ଼ବୋହୂ ହୁଏ, ଅନେକ ଝଞ୍ଜାଳ ମୁଣ୍ଡେଇବାକୁ ପଡ଼ିବ। ରାତି ପାହାନ୍ତାରୁ ଉଠି ଗାଧୋଇ ପାଧୋଇ ରୋଷେଇଘରେ ପଶିବାକୁ ହେବ। ସମସ୍ତଙ୍କର ଖବର ଅନ୍ତର ବୁଝି ତୁମ ପାଖକୁ ଆସିବାକୁ ହୁଏତ ସମୟ ପାଇବିନି ମୁଁ। ପୁଣି ବାହାଘର ପରେ କେତେ ବର୍ଷ ପର୍ଯ୍ୟନ୍ତ ମୋତେ ଶାଶୂ ଶ୍ୱଶୁରଙ୍କ ପାଖରେ ରହିବାକୁ ହେବ। ତୁମ କଥା ଶୁଣି ମୁଁ ଦମ୍ଭର ସହିତ କୁହେ, "ତୁମପାଇଁ ମୁଁ ସବୁ କରିପାରିବି। ଦରକାର ପଡ଼ିଲେ ନିଆଁରେ ପଶିଯିବି। ତୁମେ ଖାଲି ମୋତେ ଟିକେ ଭଲ ପାଉଥିବ।"

ମୁଁ ଯେମିତି ସ୍ୱପ୍ନରେ ବଞ୍ଚୁଥିଲି ସେଇସବୁ ଦିନ। ତୁମର ପତ୍ନୀ ହେବାପରେ କ'ଣ କ'ଣ କରିବି - ସେଇସବୁ କଳ୍ପନା ଜଳ୍ପନା କରୁଥିଲି। ମୋର ସୁଖୀ ଦାମ୍ପତ୍ୟ ଜୀବନରେ ସ୍ୱପ୍ନ ମୋତେ ଆନନ୍ଦର ଢେଉରେ ଅନବରତ ପ୍ଲାବିତ କରୁଥିଲା। ବୋଉ ପାଟି କରୁଥିଲା, "ଏତେ ରଙ୍ଗଢ଼ଙ୍ଗ ହୋଇ କଲେଜ ଯାଉଛୁ ନା ପାର୍ଟିକୁ ଯାଉଛୁ ମ?" ଭାଇମାନେ କହୁଥିଲେ, "ବିଚାରି ଟିକେ ସଜବାଜ ନ ହେଲେ ତାକୁ ଚାହିଁବ କିଏ?" ଭାଉଜ ମୁରୁକି ହସି କହୁଥିଲେ, "କିଛି ନୂଆ ଖବର ଅଛି କି?" ଯିଏ ଯାହା ଭାବିଲେ

ଭାବନ୍ତୁ, ମୁଁ କାହା କଥାକୁ ଖାତିର କରୁନଥିଲି । ବାପା, ବୋଉ, ଭାଇ, ଭାଉଜ, ଝିଆରି, ପୁତୁରାଙ୍କ ସ୍ନେହ ତୁଳନାରେ ତୁମର ଆକର୍ଷଣ ହିଁ ମୋ ପାଇଁ ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ଥିଲା ।

ସେଦିନ ତୁମେ ବହୁତ ଖୁସି ଥିଲ । ତୁମ ସହିତ ଦେଖା ହେବା ମାତ୍ରେ ମୋ ହାତକୁ ବଢ଼ାଇ ଦେଲ ଲମ୍ବା ଲଫାପାଟିଏ । ଗୋଟିଏ ନାମଜାଦା କମ୍ପାନୀରୁ ଆସିଛି ତୁମର ନିଯୁକ୍ତିପତ୍ର । ଦରମାର ଅଙ୍କ ତଥା ଅନ୍ୟାନ୍ୟ ସୁବିଧା ସୁଯୋଗ ମଧ୍ୟ ଖୁବ୍ ଆକର୍ଷଣୀୟ । ସେଇ ରାସ୍ତା ମଝିରେ ମୋ ଖୁସିକୁ ବ୍ୟକ୍ତ କରିବାର ଆଉ କୌଣସି ସୁବିଧା ନଥିଲା । ତୁମ ହାତଟିକୁ ଆବେଗରେ ଚାପି ଧରିଥିଲି ମୋ ଗାଲରେ । ତୁମେ ସେଦିନ ତୁମର ପୁରୁଣା ଅଫିସକୁ ଯାଇନଥିଲ । ମୁଁ ମଧ୍ୟ କଲେଜ ଯାଇନଥିଲି । ଆମେ ଦୁହେଁ ସାଙ୍ଗ ହୋଇ ମନ୍ଦିର ଯାଇଥିଲେ । ମୁଁ ବଡ଼ ଫୁଲମାଳଟିଏ କିଣି ଥିଲି, ତା ସହିତ ବେଲପତ୍ର, ଧୂପ, ଦୀପ, ନଡ଼ିଆ, କଦଳୀ, ଉଖୁଡ଼ା ଆଦି କିଣିଥିଲି । ତୁମ ପାଖରେ ଠିଆ ହୋଇ ଦୀପ ଜାଳିଥିଲି । ମୁଣ୍ଡରେ ଓଢ଼ଣା ଦେଇ ଠାକୁରଙ୍କୁ ପ୍ରଣାମ କରିଥିଲି । ତୁମେ ମୁଗ୍ଧ ଦୃଷ୍ଟିରେ ବାରମ୍ବାର ଚାହୁଁଥିଲ ମୋତେ । ମନ୍ଦିର ବେଢ଼ାରେ ଥିବା ଛୋଟ ବଡ଼ ସବୁ ମନ୍ଦିର ସେଦିନ ଆମେ ବୁଲିଥିଲେ । ଏକାଠି ପ୍ରଣାମ କରିଥିଲେ । ପଣ୍ଡାମାନେ ମୋତେ ବାରମ୍ବାର ଆଶୀର୍ବାଦ କରିଥିଲେ, "ଅହ୍ୟ ସୁଲକ୍ଷଣୀ ହୁଅ ମା । ହାତ କାଚ ବଜ୍ର ହେଉ । ବାବୁ ଆମର ଦୀର୍ଘଜୀବି ହୁଅନ୍ତୁ ।" ଏହା ଶୁଣି ମୋ ଭିତର ଆନନ୍ଦରେ ଉଦ୍ଭାସିତ ହୋଇ ଯାଇଥିଲା । ପାଦ ଆଉ ତଳେ ଲାଗୁନଥିଲା ମୋର । ପବନରେ ପହଁରିଲା ପରି ଚାଲୁଥିଲି ମୁଁ ।

ମନ୍ଦିରରେ ଭୋଗ ଉଠିବା ପର୍ଯ୍ୟନ୍ତ ଆମେ ବେଢ଼ା ଭିତରେ ଅପେକ୍ଷା କରିଥିଲେ । ପ୍ରସାଦ ପାଇ ଫେରିଥିଲେ । ସେଦିନ ମୁଁ ତୁମକୁ କହିଥିଲି, "ଆଉ ଅପେକ୍ଷା କରି ପାରିବିନି । ଏଥର ମୋତେ ସବୁଦିନ ପାଇଁ ପାଖକୁ ନେବାର ବ୍ୟବସ୍ଥା କର । ସେଇଦିନ ହିଁ କହିଥିଲି, ଏଥର ଭାଇ ଭାଉଜଙ୍କ ଘର ଛାଡ଼ି ନିଜର ଘରଟିଏ ନିଅ । ଘରପାଇଁ କ'ଣ କ'ଣ ଜରୁରୀ ଜିନିଷ ଦରକାର ଲିଷ୍ଟ କରି ଦେଇଥିଲି । ଆଶ୍ୱାସନା ଦେଇଥିଲି ତୁମକୁ, ସବୁ ଜିନିଷ ଏକାବେଳକେ ନ କିଣି ଧୀରେ ଧୀରେ କରିବା ସବୁ । ଘରେ କୋଉ ରଙ୍ଗର ପର୍ଦ୍ଦା ଲାଗିବ, କୋଉ ଡିଜାଇନର ସୋଫା କିଣିବା, କୋଉ କମ୍ପାନୀର ଟି.ଭି ଆଣିବା, ଫ୍ରିଜ୍‌ର ରଂଗ କେମିତି ହେବ, ସବୁ ଜଣେଇଥିଲି । ଏହା ମଧ୍ୟ ତୁମକୁ ଜଣାଇଥିଲି ଯେ ଆମ ନୂଆ ସଂସାରରେ ଯାହା ଆସବାସପତ୍ର ଲାଗିବ, ସେ ସବୁ ତୁମ ନିଜ ରୋଜଗାରରେ କିଣା ହେବ । ମୋ ବାପା ଦେଇଥିବା ଯୌତୁକ ବା ତୁମ ବାପାଙ୍କ ପଇସାରେ କିଛି ହେବନାହିଁ । ତୁମେ କହିଥିଲ, "ଯଥା ଆଜ୍ଞା ମହାରାଣୀ ।"

ମହାରାଣୀ ଭଳି ତ ଲାଗୁଥିଲା ମୋତେ । ତୁମ ହୃଦୟ ରାଜ୍ୟର ସାମ୍ରାଜ୍ଞୀ ବୋଲି

ମଣୁଥିଲି ନିଜକୁ । ସାମ୍ରାଜ୍ଞୀ ଥିଲି ମୋ କଳ୍ପନା ରାଜ୍ୟର । ଅଫିସର ହେବାପରେ ତୁମର ପୋଷାକପତ୍ର କେମିତି ହେବ, ସେଥିପ୍ରତି ତୀକ୍ଷ୍ଣ ଦୃଷ୍ଟି ରଖିଥିଲି । ନିଜେ ଯାଇ ପସନ୍ଦ କରି କିଣିଥିଲି ତୁମର ପ୍ୟାଣ୍ଟ, ଶାର୍ଟ, ଜୋତା, ମୋଜା, ଟାଏ । ତୁମ ବ୍ୟକ୍ତିତ୍ୱ ଆହୁରି ଆକର୍ଷଣୀୟ ହୋଇ ଉଠିଥିଲା । ଭାଉଜ କହୁଥିଲେ, ମୁଁ କୁଆଡ଼େ ଦିନକୁ ଦିନ ସୁନ୍ଦର ଦିଶୁଥିଲି । ହୃଦୟରେ ଆନନ୍ଦର ମେଳା ବସିଥିଲେ ଶରୀରରେ ତା'ର ପରିପ୍ରକାଶ ଘଟିଥାଏ କୁଆଡ଼େ ? ତୁମ ନୂଆଘରକୁ ଯାଇ ସଜାଡ଼ି ଦେଇଥିଲି ଜିନିଷପତ୍ର । ତୁମର ସବୁ ଜିନିଷପତ୍ର ମୋ ନିଜର ଭଳି ଲାଗୁଥିଲା । ଆଉ ଅଳ୍ପଦିନ ପରେ ଯେ ଏସବୁ ନେଇ ମୋତେ ହିଁ କାରବାର କରିବାକୁ ପଡ଼ିବ, ଏକଥା ନିଶ୍ଚିତ ବୋଲି ଧରିନେଇଥିଲି ।

ନୂଆ ଚାକିରିରେ ଯୋଗ ଦେବାପରେ ମୋ ସହିତ ଦେଖା କରିବାକୁ ତୁମେ ଆଉ ସମୟ କରିପାରୁନଥିଲ । ଖୁବ୍ ବ୍ୟସ୍ତ ରହୁଥିଲ କାମରେ । ତୁମର ଅଫିସ୍ ଫୋନ୍ ନମ୍ବର ତୁମଠାରୁ ଜବରଦସ୍ତ ଆଦାୟ କରି ମୁଁ ଏଣିକି ଫୋନ୍‌ରେ କଥାବାର୍ତ୍ତା ହେଉଥିଲି ତୁମ ସହିତ । ଅଫିସକୁ ମୋର ଫୋନ୍ କରିବା ତୁମେ ପସନ୍ଦ କରୁନଥିଲ । କାରଣ ମୋର ବଦ୍‌ଖୋଇ , ଥରେ ଫୋନ୍ ଧରିଲେ ଆଉ ସହଜରେ ଛାଡୁ ନଥିଲି ମୁଁ । ତୁମ ସହକର୍ମୀମାନଙ୍କ ଆଗରେ ତୁମେ କୁଆଡ଼େ ଅପ୍ରସ୍ତୁତ ହୋଇ ଯାଉଥିଲ ମୋର ବାରମ୍ବାର ଫୋନ୍ କରିବା ଦ୍ୱାରା । ତୁମେ ଆଦୌ ବୁଝିପାରୁନଥିଲ ତୁମକୁ ନ ଦେଖି, ତୁମ ସହିତ କଥାବାର୍ତ୍ତା ନ କରି ମୁଁ କେମିତି ରହିବି ? ବହୁତ କଷ୍ଟରେ ତୁମକୁ ରାଜି କରିଥିଲି ଦିନରେ ଅନ୍ତତଃ ଥରେ ମୋ ପାଖକୁ ତୁମେ ଫୋନ୍ କରିବ, ଆଉ ସପ୍ତାହରେ ଦୁଇଥର ଦେଖା କରିବ । ତୁମ ଘରର ଡୁପ୍ଲିକେଟ୍ ଚାବିଟିଏ ମୋ ପାଖରେ ଥିଲା । ମନ ଖରାପ ହେଲେ ମୁଁ କେବେକେବେ ଯାଇ ଘର ଖୋଲି ବସୁଥିଲି । ତୁମ ବିଛଣାରେ ଶୋଇ ଯାଉଥିଲି । ଘର ସଫାସୁତୁରା ଅଛି କି ନାହିଁ, ଜିନିଷପତ୍ର ଠିକ୍ ଠାକ୍ ଅଛି କି ନାହିଁ ଦେଖୁଥିଲି । ତୁମ ପାଇଁ ନେଇଥିବା ଶୁଖିଲା ଜଳଖିଆ ଥାକରେ ପ୍ଲାଷ୍ଟିକ୍ ଜାର୍‌ମାନଙ୍କରେ ରଖିଦେଉଥିଲି । ତୁମ ଆଖିରେ ପଡ଼ିବା ପରି ଜାଗାରେ ସେସବୁ ରଖି ଘରେ ଚାବି ପକେଇ ଚାଲି ଆସୁଥିଲି । ତୁମ ସାହିପଡ଼ିଶା ଲୋକ ମୋ ବିଷୟରେ କ'ଣ ଭାବୁଛନ୍ତି ସେକଥା ଭାବି କେବେ ମୁଣ୍ଡ ଖରାପ କରିନାହିଁ । ତୁମର ଖାପଛଡ଼ା ଭାବକୁ କେତେ ଯୁକ୍ତି ଦେଖାଇ ସମର୍ଥନ କରିଛି । ତୁମ ସାଂଗରେ ଦେଖାହେଲା ମାତ୍ରେ ମନର ସବୁ ଦୁଃଖ, କ୍ଷୋଭ ମେଣ୍ଟି ଯାଇଛି । ତୁମକୁ ପଚାରିଛି ତୁମର ନୂଆ ଅଫିସ୍‌ର ଅଭିଜ୍ଞତାର କଥା, ତୁମର ସହକର୍ମୀଙ୍କମାନଙ୍କ କଥା । ଏମିତି କି ତୁମ ଅଫିସ୍‌କୁ ଫୋନ୍ କଲେ ଯେଉଁ ସରୁକଣ୍ଠୀ ଝିଅଟି ପ୍ରଥମେ ଧରେ, ତା ବିଷୟରେ ମଧ୍ୟ ଟିକିନିଖି ଖବର ନେଇଛି । ତୁମକୁ ସତର୍କ କରିଦେଇଛି କୌଣସି ସୁନ୍ଦରୀ ତରୁଣୀ ସହକର୍ମିଣୀଙ୍କ ସହିତ ମିଳାମିଶା ନ

କରିବାକୁ। ମୋର ଏଇ ଅଧିକାରବୋଧ ଦେଖି ତୁମେ ହସିଛ। ଥଟ୍ଟା ବି କରିଛ।

କିଛି ଦିନ ପର୍ଯ୍ୟନ୍ତ ତୁମର ଖବର କିଛି ପାଉନଥିଲି। ଅଫିସ୍‌କୁ ଫୋନ୍ କରି ବୁଝିଲି ଟୁର୍‌ରେ ଯାଇଛ। ମୋତେ ନ ଜଣାଇ ତ ଏମିତି କେବେ ଯାଅନି ତୁମେ। ଭାବିଥିଲି ଆସିଲେ ତୁମ ସହିତ ମୋଟେ କଥା କହିବିନି। ଦେଖା ବି କରିବିନି ନିଜ ତରଫରୁ। ଦଶବାର ଦିନ ନିଜକୁ ଯଥେଷ୍ଟ ଆକଟ କରି ରଖିଲି। ତୁମର କିଛି ଖବର ନ ପାଇ ଭିତରେ ଭିତରେ ଡରି ଯାଇଥିଲି ଖୁବ୍। କେଜାଣି ବାହାରେ ଯାଇ ଯଦି କୋଉଠି ଅସୁସ୍ଥ ହୋଇ ପଡ଼ିଥିବ ! ଅଜଣା ଅଚିହ୍ନା ଜାଗାରେ କିଏ ଥିବ ତୁମ କଥା ବୁଝିବାକୁ ? ଅନେକ ଅନେକ ଆଶଙ୍କା ମଧ୍ୟରେ ଘାରି ହେଉଥିବା ବେଳେ ସେଦିନ ଡାକରେ ମୋ ନାମରେ ଚିଠିଟିଏ ଆସିଲା। ଚିଠି ନୁହେଁ – ବୋମାଟିଏ ହିଁ ଆସିଥିଲା। ଚିଠି ଖୋଲିବା ପରେ ଯେଉଁ ବିସ୍ଫୋରଣ ହେଲା ସେଥିରେ ଛିନ୍ନବିଛିନ୍ନ ହୋଇଗଲା ମୋର ଏତେଦିନର ସଯତ୍ନ ଲାଳିତ ସ୍ୱପ୍ନ, ଆଶା, ବିଶ୍ୱାସ, ଭରସା, ପରିକଳ୍ପନା ସବୁକିଛି। ତୁମ ବାହାଘର ନିମନ୍ତ୍ରଣ ପତ୍ର ଆସିଥିଲା  ମୋ ନାମରେ। ତୁମ ନାଁ ପାଖରେ ମୋ ନାଁ ନଥିଲା। ଆଉ ଗୋଟିଏ ଝିଅର ନାଁ ଥିଲା। ବିଶ୍ୱାସ କରି ପାରିଲିନି। ପ୍ରଥମେ ଭାବିଲି ଇଏ ଆଉ କେଉଁ ଅଭିଳାଷ ହୋଇଥିବେ। ପୃଥିବୀରେ ଅଭିଳାଷ ନାମରେ କେତେ ଲୋକ ଥିବେ। କିନ୍ତୁ ଆଉ କୋଉ ଅଭିଳାଷଙ୍କର ମୋ ସହିତ କି ସମ୍ପର୍କ ଯେ ନିମନ୍ତ୍ରଣ ପତ୍ର ପଠେଇବେ ମୋ ପାଖକୁ। ବାହାଘର ନିମନ୍ତ୍ରଣ ସହିତ ଛୋଟ ଚିଠିଟିଏ ଥିଲା। ତୁମ ଅକ୍ଷରକୁ କେମିତି ଚିହ୍ନି ନ ପାରିବି ? ଲେଖିଥିଲ "ମୋତେ କ୍ଷମା କରିଦେବ। ବାପାବୋଉଙ୍କର ଆତ୍ମହତ୍ୟାର ଧମକ ପାଖରେ ମୁଁ ହାର ମାନିଲି। ମୋ ଜୀବନରେ ତୁମର ସ୍ଥାନ କେହି ନେଇପାରିବେ ନାହିଁ। ଲୋକାଚାର ଦୃଷ୍ଟିରୁ ଯିଏ ମୋର ପତ୍ନୀ ହେଲେ ବି ତୁମ ସହିତ ମୋର ସମ୍ପର୍କ ପୂର୍ବଭଳି ରହିବ। ତୁମକୁ ମୁଁ କେବେ ବି ଭୁଲି ପାରିବି ନାହିଁ।"

ମୁହୂର୍ତ୍ତକ ମଧ୍ୟରେ କେଉଁ ଅତଳ ଗହ୍ୱର ମଧ୍ୟକୁ ମୁଁ ଖସିଗଲି ବୁଝିପାରିଲି ନାହିଁ। ପ୍ରଖର ଦିବାଲୋକରେ ମୋ ଚତୁର୍ଦ୍ଦିଗ ଅନ୍ଧାର ହୋଇଗଲା। ଚେତା ହରାଇ ପଡ଼ିଗଲି। ଚେତା ଆସିବା ପରେ ଦେଖିଲି ଆମ ଘରର ପରିବେଶ ଅସ୍ୱସ୍ତିକର ହୋଇଯାଇଛି। କାନ୍ଦି କାନ୍ଦି ବୋଉର ଆଖି ଫୁଲିଯାଇଛି। ଭାଇମାନଙ୍କର ଫଣ ଫଣ ମୁହଁ। ଭାଉଜ ଉଦାସ ହୋଇଯାଇଛନ୍ତି। ବାପା ବି ଗୁମ୍‌ସୁମ୍ ହୋଇ ବସିଛନ୍ତି। ପୂର୍ବରୁ ସେମାନେ କିଛି ଜାଣିନଥିଲେ ବି ଖୋଲା ନିମନ୍ତ୍ରଣ ପତ୍ର ତଥା ତା ଭିତରର ଚିଠିରୁ ସବୁ ଅନୁମାନ କରିଥିବେ। ବାପା କୁଆଡ଼େ ତୁମ ଘରକୁ ଯାଇଥିଲେ ଅଭିଳାଷ। ତୁମେ ଥିଲ ତ ଘରେ ? ଆତ୍ମ ଅଭିମାନୀ ବାପା ମୋର କାହା ପାଖରେ କେବେ ନ୍ୟୂନ ହୋଇ ଠିଆ ହୋଇନଥିଲେ। ମାତ୍ର ଆଦରିଣୀ କନ୍ୟାର ଖୁସି ଟିକକ ଫେରାଇ ଆଣିବା ପାଇଁ ଯାଇଥିଲେ ତୁମ ଘରକୁ ।ପ୍ରାର୍ଥନା କରିଥିଲେ

ତୁମ ବାପାଙ୍କ ନିକଟରେ ତାଙ୍କର ସମସ୍ତ ଦାବି ସେ ପୂରଣ କରିବେ। ତାଙ୍କ ଝିଅକୁ ସେମାନେ ଗ୍ରହଣ କରନ୍ତୁ। ବାପା ମୁଣ୍ଡ ପୋତି ଫେରି ଆସିଥିଲେ। କ'ଣ କହିଲେ ତୁମ ବାପା ? କରଣ ଘର ଝିଅକୁ ଗ୍ରହଣ କରି ପାରିବେ ନାହିଁ। ତୁମର ମୋର ଜାତି ଯେ ଭିନ୍ନ ଏକଥା ମୁଁ ଭୁଲି ଯାଇଥିଲି। ଭାବିଥିଲି ଏସବୁ ସଂକୀର୍ଣ୍ଣତାର ଯଥେଷ୍ଟ ଉର୍ଦ୍ଧ୍ୱରେ ତୁମେ। ପୁଣି ତୁମେ ତ କେତେଥର କହିଛ ! ବାପାମାଆଙ୍କର ଗୋଟିଏ ବୋଲି ପୁଅ ତୁମେ। ସେମାନେ ତୁମ ମନରେ ଦୁଃଖ ଦେବା ଭଳି କିଛି କରିବେ ନାହିଁ। ତୁମର ସବୁ କଥାରେ ସେମାନେ ରାଜି ହୋଇଯିବେ। ଏଇ କ'ଣ ତା'ର ପ୍ରମାଣ ଅଭିଳାଷ ? ଏଇଥିରେ କ'ଣ ଖୁସି ତୁମେ ?

କେଡ଼େ ନିର୍ଲଜ୍ଜୀ ମୁଁ । ତୁମ ବାହାଘର ଦିନ ମୁଁ ଅପେକ୍ଷା କରିଥିଲି ତୁମକୁ । ଭାବୁଥିଲି ଶେଷ ମୁହୂର୍ତ୍ତରେ ତୁମେ ମତ ପରିବର୍ତ୍ତନ କରିବ। ବାହାଘର ଭାଙ୍ଗିଦେଇ ଫେରି ଆସିବ ମୋ ପାଖକୁ। କହିବ, "ନା, ପାରିବିନି, ତୁମକୁ ଛାଡ଼ି ମୁଁ ବଞ୍ଚି ପାରିବିନି।" ସାରାଦିନ କାନେଇଥିଲି ଟେଲିଫୋନ୍‌ର ଶବ୍ଦ ନଚେତ୍ କଲିଂବେଲ୍‌ର ଶବ୍ଦକୁ। କେତେଥର ଫୋନ୍ ବାଜିଲା। କଲିଂବେଲ୍ ବି। ମାତ୍ର ନିରାଶ ହେଲି ମୁଁ । ବାହାଘର ସମୟ ଅତିକ୍ରାନ୍ତ ହୋଇଯିବା ପରେ ଅବସନ୍ନ ହୋଇ ବସିପଡ଼ିଲି। ଶୂନ୍ୟ ହୋଇ ଯାଉଥିଲା ମୋ ଭିତର। ନା – ଶୂନ୍ୟ କାହିଁକି – ତୁମ ବିବାହ ବେଦୀର ହୋମ ନିଆଁ ମୋ ଛାତି ଭିତରେ ଜଳୁଥିଲା ଧୂ ଧୂ ହୋଇ। ଅସହ୍ୟ ଉତ୍ତାପରେ ଜଳି ଯାଉଥିଲା ମୋର ଦେହ ମନ। ଗାଧୁଆ ଘରକୁ ଯାଇ ସାୱାର୍ ଖୋଲି ଗାଧୋଇଲି। ଘଣ୍ଟାଟିଏ ପାଣିରେ ନିଜକୁ ଭିଜାଇ ଥିଲି ଦେହ ଓ ମନର ନିଆଁକୁ ଲିଭାଇ ଦେବାକୁ। ତୁମର କ୍ଳେଦାକ୍ତ ସ୍ମୃତି ସବୁ ମୋ ଦେହ ମନରୁ ଧୋଇ ବାହାର କରିଦେବାକୁ ଚାହୁଁଥିଲି ଅବା ! ଗାଧୋଇସାରି ଧଳା ଲୁଗାଟିଏ ପିନ୍ଧିଲି। ଖୋଲିଦେଲି ସବୁ ଅଳଙ୍କାର। ଆଜିଠାରୁ ମୋ ପାଇଁ ତୁମେ ନାହଁ। ବିଦାୟ ଦେଲି ତୁମକୁ ମୋ ଜୀବନରୁ।

କିନ୍ତୁ ଅଭିଳାଷ, ତୁମ ସ୍ମୃତିକୁ ମୋ ଭିତରୁ ପୋଛିଦେବା କ'ଣ ସମ୍ଭବ ? ଚନ୍ଦନ ଭଳି ତୁମ ସ୍ମୃତି ଦିନେ ମୋତେ ପ୍ରତି ମୁହୂର୍ତ୍ତରେ ସୁରଭିତ କରୁଥିଲା । କିନ୍ତୁ ବର୍ତ୍ତମାନ ଅନୁଭବ କରୁଛି ତୁମ ସ୍ମୃତି କ୍ୟାନ୍‌ସର ଭଳି ମୋତେ ଖାଇଯାଉଛି। ନିଃଶେଷ ହୋଇଯାଉଛି ମୁଁ ନିଜ ଭିତରେ। ମୋ କଷ୍ଟର ପରିମାଣ କାହାରିକୁ ବୁଝାଇ ପାରିବିନି ମୁଁ। ବୁଝିଥାନ୍ତ ତୁମେ। କିନ୍ତୁ ସେ ଅଧିକାର ତ ତୁମେ ହରାଇ ବସିଛ। କେମିତି ତୁମେ ଭାବି ପାରିଲ ଆଉ ଜଣକୁ ବାହାହେଲା ପରେ ବି ମୋ ସହିତ ତୁମର ସମ୍ପର୍କ ପୂର୍ବଭଳି ରହିବ ବୋଲି ? ସେ ସମ୍ପର୍କରେ ସଂଜ୍ଞା କ'ଣ ହେବ ଜାଣିଛ ? ମୋ ପ୍ରତି ଏଭଳି ଶ୍ରଦ୍ଧା ଓ ସମ୍ମାନ ତୁମ ମନରେ ? ଧିକ୍‌କାର ଆସୁଛି ନିଜ ଉପରେ। କେମିତି ମୁଁ ଏଭଳି ଅନ୍ଧୁଣୀ ହୋଇଯାଇଥିଲି !

ତୁମ ପରି ଜଣେ ମେରୁଦଣ୍ଡବିହୀନ ବ୍ୟକ୍ତିକୁ ଜୀବନ - ସର୍ବସ୍ୱ ବୋଲି ଭାବି ନେଇଥିଲି। ତୁମକୁ ଯେତିକି ଭଲ ପାଇଥିଲି - ଯଦି ଭଗବାନ୍‌ଙ୍କୁ ସେତିକି ଭଲ ପାଇଥାଆନ୍ତି - ଏଇ ମଣିଷ ଜନ୍ମରୁ ଉଦ୍ଧାର ପାଇ ଯାଇଥାଆନ୍ତି।

ତୁମକୁ ଏତେ ଭଲ ପାଉଛି- ତୁମକୁ କିଛି କଟୁକଥା କହି ଭର୍ତ୍ସନା କରିବାକୁ ଜିଭ ଲେଉଟିବ ନାହିଁ କି ଲେଖିବାକୁ କଲମ ଯିବ ନାହିଁ। ତୁମକୁ ଅଭିଶାପ ଦେଲେ ବି ନିଜ ଉପରକୁ ଚାଲିଆସିବ। ଖାଲି ଏତିକି କହୁଛି - ବିଶ୍ୱସ୍ତ ହେବା ଶିଖ। ଅନ୍ୟର ବିଶ୍ୱାସ ଓ ଭଲପାଇବାକୁ ମର୍ଯ୍ୟାଦା ଦେଇ ଶିଖ। ନିଜ ସ୍ତ୍ରୀ ସହିତ ଆଉ ବିଶ୍ୱାସଘାତକତା କରନାହିଁ। ତୁମ ସ୍ତ୍ରୀ ପ୍ରତି ମୋ ମନରେ କୌଣସି ଈର୍ଷା ବା ଅସୂୟା ନାହିଁ। ବରଂ ଦୟା ଆସୁଛି ତୁମ ଭଳି ବିଶ୍ୱାସଘାତକ ବ୍ୟକ୍ତିଟି ସହିତ ତାଙ୍କୁ ସାରା ଜୀବନ ବିତେଇବାକୁ ପଡ଼ିବ ବୋଲି। ତୁମେ ଆଉ ମୋ ପାଖକୁ ଫୋନ୍ କରିବ ନାହିଁ କି ଦେଖା କରିବାର ଚେଷ୍ଟା କରିବ ନାହିଁ। ଅନେକ କ୍ଷତି କରିଛ ତୁମେ ମୋର। ଆଉ ଟିକିଏ ବି ସୁଯୋଗ ପାଇବନି ତୁମେ। ଆତ୍ମହତ୍ୟା ପାଇଁ ମନରେ ଖୁବ୍ ଇଚ୍ଛା ହୋଇଥିଲା। ତାପରେ ଭାବିଲି ନା - ଏତେବଡ଼ ମର୍ଯ୍ୟାଦା ତୁମକୁ ମୁଁ ଦେଇପାରିବିନି। ତୁମ ପାଇଁ ମୋର ଦୁର୍ଲ୍ଲଭ ମଣିଷ ଜନ୍ମଟିକୁ କାହିଁକି ଶେଷ କରିଦେବି ? ମୁଁ ବଞ୍ଚିବି ଅଭିଳାଷ, ଦେଖିବ - ଯାହାକୁ ଅବହେଳାରେ ଆଡେଇ ଦେଇ ଚାଲିଯାଇଥିଲ ସେ ତୁଚ୍ଛ ନୁହେଁ ଆଦୌ।

ଶେଷରେ ତୁମର ସୁଖୀ ଦାମ୍ପତ୍ୟ ଜୀବନର ସମସ୍ତ ଶୁଭ ମନାସୁଛି। ଭଗବାନ୍ କରନ୍ତୁ, ଖୁବ୍ ଶୀଘ୍ର ଝିଅଟିଏ ହେଉ ତୁମର। ଝିଅର ବାପା ହେଲେ ତୁମେ ବୁଝିପାରିବ ତା ପ୍ରତି କେହି ଟିକିଏ ବି ଅନ୍ୟାୟ କଲେ କେମିତି କଷ୍ଟ ଲାଗେ। ଏ ଚିଠି ତୁମ ସ୍ତ୍ରୀ ନ ପଢ଼ନ୍ତୁ। ତୁମକୁ ଶୁଦ୍ଧ ପୁରୁଷଟିଏ, ପ୍ରେମମୟ ସ୍ୱାମୀଟିଏ ଭାବି ଜୀବନ କଟାନ୍ତୁ। ପୁଣିଥରେ କାମନା କରୁଛି ସୁଖୀ ହୁଅ।

"ଆକାଂକ୍ଷା ମହାନ୍ତି"

ଚିଠିଟି ପଢ଼ିସାରିଲା ବେଳକୁ ଆହୁତିର ହୃଦୟ ଶୂନ୍ୟ ହୋଇଯାଇଥିଲା। ଅସହାୟ ବୋଧ କରିଥିଲା। ଆଖି ଆଗରେ ଯେମିତି ଲମ୍ବି ଯାଉଥିଲା ଦିଗନ୍ତ ବ୍ୟାପି ମରୁଭୂମି। ପାଦ ରଖିବା ପାଇଁ ଶ୍ୟାମଳ ମାଟି ଟିକେ ନଥିଲା କୋଉଠି। ଅଭିଳାଷଙ୍କ ସଂସାରରେ, ତାଙ୍କ ଜୀବନରେ ସେ ଅବାଞ୍ଛିତା। ଯେତେ ବାହାର ଦେଖା ସମାରୋହର ରୋଷଣୀ କରି ଆସିଥିଲେ ବି ତାଙ୍କ ଜୀବନରେ ସେ ଅନଧିକାର ପ୍ରବେଶ କରିଛି। ଆଉ ଜଣଙ୍କର ଉପସ୍ଥିତି ତାଙ୍କ ଜୀବନକୁ ଏମିତି ଆବୋରି ବସିଛି ଯେ ଅଭିଳାଷଙ୍କୁ ସେଥିରୁ ବାହାର କରି ଆଣିବା ସହଜସାଧ୍ୟ ନୁହେଁ। କାହିଁକି ଅଭିଳାଷ ତାକୁ ଏପର୍ଯ୍ୟନ୍ତ ଗ୍ରହଣ କରିପାରିନାହାନ୍ତି, ସେ ରହସ୍ୟ ଆଜି ଭେଦ କରିପାରୁଥିଲା ଆହୁତି। ତାଙ୍କ ହୃଦୟରୁ ଆକାଂକ୍ଷାର ସ୍ମୃତି ସେ

ଲିଭାଇ ପାରୁନାହାନ୍ତି, କିମ୍ବା ଚାହୁଁନାହାନ୍ତି ତା' ସ୍ଥାନ ଆଉ କେହି ନେଉ ବୋଲି। ଆହୁତି କ'ଣ କରିବ ? ତା ଜୀବନରେ ଏଭଳି ପରିଣତି ପାଇଁ କିଏ ଦାୟୀ ? ପ୍ରଥମେ ସେ ନିଜ ବାପାମାଆଙ୍କୁ ଦାୟୀ କଲା। ଅଭିଳାଷଙ୍କର ଚାକିରିର ପ୍ରତିଷ୍ଠା, ତାଙ୍କର ସୁନ୍ଦର ଚେହେରା ଦେଖି ଯେମିତି ହେଲେ ବି ତାଙ୍କୁ ଜ୍ୱାଇଁ କରିବାକୁ ଆପ୍ରାଣ ଉଦ୍ୟମ କରିଥିଲେ ସେମାନେ। ତାଙ୍କ ବ୍ୟକ୍ତିଗତ ଜୀବନ ସମ୍ପର୍କରେ ଆଦୌ ଖୋଜ୍ ଖବର ନେଇ ନଥିଲେ। ତାପରେ ଦାୟୀ ଅଭିଳାଷଙ୍କର ବାପା ବୋଉ। ସବୁ କଥା ଜାଣିବା ପରେ ମଧ୍ୟ ଅଭିଳାଷଙ୍କ ଇଚ୍ଛା ବିରୁଦ୍ଧରେ ତାଙ୍କୁ ଆତ୍ମହତ୍ୟାର ଧମକ ଦେଇ ବାହାଘର ପାଇଁ ରାଜି କରେଇଥିଲେ। ଶେଷରେ ସବୁଠୁ ବେଶି ସେ ଦାୟୀ କରୁଥିଲା ଅଭିଳାଷଙ୍କୁ। ସେ ଯଦି ନିଜ ବାପାମାଆଙ୍କର ସ୍ୱଭାବ ପ୍ରକୃତି ଜାଣିଥିଲେ, ତେବେ ଆକାଂକ୍ଷା ସହିତ ସମ୍ପର୍କ ଏତେଦୂର ବଢ଼େଇଥିଲେ କାହିଁକି ? ଯେତେ ଚେଷ୍ଟା କଲେ କ'ଣ ତାଙ୍କୁ ସମ୍ପୂର୍ଣ୍ଣ ଭାବରେ ପାଇପାରିବ ସେ ? କୋଉଠି ନା କୋଉଠି ଆକାଂକ୍ଷାର ଉପସ୍ଥିତି ରହିଥିବ ତାଙ୍କ ମନ ଭିତରେ, ଅନୁଭବ ଭିତରେ। ପୁଣି ଆଉ ଜଣେ ଝିଅର ଲୁହ ଓ ଦୀର୍ଘଶ୍ୱାସ ଉପରେ ତା ସଂସାରଟି କେତେ ଦିନ ତିଷ୍ଠି ରହିବ ? କ'ଣ କରିବ ଆହୁତି ? ଫେରିଯିବ ନିଜ ବାପାମାଆଙ୍କ ପାଖକୁ ? ପୋଛିଦେବ ଲୋକ ଦେଖାଣିଆ ବାହାଘରର ସଧବା ଚିହ୍ନ ସବୁ ?

ଚିଠିଟିକୁ ପଲଙ୍କ ଉପରେ ରଖି ଅନ୍ୟମନସ୍କ ଭାବରେ ସେ ଯାଇ ଦର୍ପଣ ପାଖରେ ଠିଆ ହେଲା। ସାଜିବା ପାଇଁ ଭଲ ପାଏ ଆହୁତି। ତା ଡ୍ରେସିଂଟେବୁଲ୍ ଉପରେ ଅନେକ ପ୍ରସାଧନ ସାମଗ୍ରୀର ଭିଡ଼। ସବୁଦିନ ସେ ନୂଆ ନୂଆ ରୂପରେ ନିଜକୁ ସଜାଇ ଅଭିଳାଷଙ୍କ ଆଖି ଆଗରେ ଚଳପ୍ରଚଳ ହୋଇଛି। କେବେ ବି ମୁଗ୍ଧତା ଫୁଟି ଉଠିନାହିଁ ତାଙ୍କ ଆଖିରେ। ପାଖକୁ ଡାକି ନାହାନ୍ତି, ଆଦର କରିନାହାନ୍ତି। ଯେତିକି ନିହାତି ଦରକାର, ସେତିକି ମାତ୍ର କଥାବାର୍ତ୍ତା କରନ୍ତି ତା ସହିତ। ଆହୁତିର କ'ଣ ସବୁ ଦରକାର, ପଚାରି ବୁଝନ୍ତି। ଯଥା ସମୟରେ ଆଣିଦିଅନ୍ତି। ଏତିକି ମାତ୍ର ପ୍ରୟୋଜନ ଆହୁତିର ? ଅନେକ୍ ଚିନ୍ତା କଲା ପରେ ଆହୁତି ସ୍ଥିର କଲା, ସେ ଆକାଂକ୍ଷା ସହିତ ଦେଖାକରିବ। ତାପରେ ନିଜର ଭବିଷ୍ୟତ ପନ୍ଥା ନିର୍ଣ୍ଣୟ କରିବ। ରେଜିଷ୍ଟ୍ରି ହୋଇ ଆସିଥିବା ଚିଠିଟିରେ ପ୍ରେରକ ସ୍ଥାନରେ ଆକାଂକ୍ଷାର ଠିକଣା ଥିଲା। ଅଭିଳାଷଙ୍କ ଅନୁପସ୍ଥିତିରେ ଘରେ ତାଲା ପକେଇ ଆହୁତି ଖୋଜି ଖୋଜି ଯାଇ ପହଞ୍ଚିଗଲା ନିର୍ଦ୍ଦିଷ୍ଟ ଠିକଣାରେ।

"ଦେଈ, ତୁମର କିଏ ସାଂଗ ଆସିଛନ୍ତି।" ଚାକର ପିଲା ଆସି ଖବର ଦେଲା ଆକାଂକ୍ଷାକୁ।

– "ଏଇଠିକୁ ପଠେଇଦେ।" ବହି ଉପରୁ ମୁଣ୍ଡଟେକି ଆକାଂକ୍ଷା କହିଲା।

ପୁଣିଥରେ ସେ ବୁଡ଼ିଗଲା ପଠନରେ ।

- "ନମସ୍କାର ।" ଦୁଆର ପାଖରେ ମଧୁର କଣ୍ଠରେ କେହି କହିବା ମାତ୍ରେ ଆକାଙ୍‌କ୍ଷା ଚାହିଁଲା । ନୂଆ ସ୍ୱର, ନୂଆ ଚେହେରା । ଅଳ୍ପ ବୟସୀ ତରୁଣୀଟିଏ ଠିଆ ହୋଇଚି । ଶାନ୍ତ, ସ୍ନିଗ୍ଧ, ମାଧୁର୍ଯ୍ୟଭରା ମୁହଁର ସୁନ୍ଦରୀ ତରୁଣୀଟିଏ ।

- "ଆସ । ମୁଁ କିନ୍ତୁ ଜାଣିପାରୁନି ତୁମକୁ ।" ଆକାଙ୍‌କ୍ଷା ପଚାରିଲା ।

- "ମୁଁ ଆହୁତି ।" ନରମ ପଦପାଦରେ ଭିତରକୁ ଆସିଲା ଆହୁତି । ଆକାଙ୍‌କ୍ଷା ବହି ବନ୍ଦ କରି ଉଠି ବସିଲା । ଆହୁତି ତା ପାଖରେ ଆସି ବସିଗଲା ।

- "ଆହୁତି - ମାନେ... ।" ଆକଙ୍‌କ୍ଷାର କଥା ସରିବା ପୂର୍ବରୁ ଆହୁତି କହିଲା, "ମୁଁ କେବଳ ଆହୁତି, ଆଉ କିଛି ନୁହେଁ ।"

- "ମୋ ପାଖରେ କିଛି ଦରକାର ଥିଲା ?" ଆକାଙ୍‌କ୍ଷା ଜାଣି ସାରିଥିଲା ଆହୁତିର ପରିଚୟ । ତା କଣ୍ଠ ଗମ୍ଭୀର ଶୁଭିଲା ।

- "ତୁମ ଘରର ଚାବି ଫେରାଇଦେବାକୁ ଆସିଲି ।" ଆହୁତି କହିଲା ।

- "ମୋ ଘର ?"

- "ହଁ, ଅଭିଳାଷ ଆଉ ତୁମର ଘର ।"

- "ତୁମେ ତାଙ୍କ ସ୍ତ୍ରୀ ନା ?"

- "ବେଦୀରେ ବସି ହାତଗଣ୍ଠି ପକେଇଦେଲେ ବାହାଘର ହୋଇଯାଏନି ଅପା । ଯୋଉଠି ମନର ବନ୍ଧନ ନାହିଁ - ସେଠି ବାହାଘରର କୌଣସି ଅର୍ଥ ନାହିଁ ।"

- "ଅଭିଳାଷ ତୁମକୁ ଭଲ ପାଆନ୍ତି ନାହିଁ ?"

- " ସବୁତକ ଭଲପାଇବା ତ ତୁମକୁ ଦେଇଦେଇଛନ୍ତି । ଆଉ କିଛି ଥିଲେ ତ ଦେବେ ?"

ଆକାଙ୍‌କ୍ଷା ନୀରବ ହୋଇଗଲା । ନୀରବରେ କିଛି ସମୟ ଚାହିଁରହିଲା ଆହୁତିକୁ । ପ୍ରଚ୍ଛନ୍ନ ଈର୍ଷାଟିଏ ମନ ଭିତରେ ଧପ୍‌ଧପ୍ ହେଉଥିଲା । କିନ୍ତୁ ଝିଅଟିର ଶାନ୍ତ, ସ୍ନିଗ୍ଧ ଚାହାଣୀରେ କି ମାୟା ଥିଲା କେଜାଣି ଭଲ ଲାଗୁଥିଲା ତାକୁ ଦେଖିବାକୁ । ସେ ଶୁଣିଛି, ଆହୁତିର ବାପା ଖୁବ୍ ବଡ଼ଲୋକ । ବହୁତ ଯୌତୁକ ଦେଇଛନ୍ତି । ଆହୁତି ନୂଆବୋହୂ । ପାଟଶାଢ଼ି, ଗହଣାରେ ଝଟକିବା କଥା । କିନ୍ତୁ ମୁଣ୍ଡରେ ତା'ର ସିନ୍ଦୁର ନାହିଁ କି ହାତରେ ଶଙ୍ଖା ନାହିଁ । ଦି ପଟ ଲେଖାଏଁ ସୁନାଚୁଡ଼ି ହାତରେ, କାନରେ ଛୋଟ ଛୋଟ ଟପ୍ ହଳେ, ବେକରେ ସରୁଚେନ୍‌ଟିଏ, ଦୁଇ ହାତରେ ଦୁଇଟି ସୁନା ମୁଦି । ଫିକା ଗୋଲାପି ରଂଗର ଶାଢ଼ିଟିରେ ଖୁବ୍ ନମ୍ର ଲାଗୁଥିଲା ସେ । ଦୁହେଁ ଦୁହିଁଙ୍କୁ ଅପଲକ ଦୃଷ୍ଟିରେ ଚାହିଁ ରହିଥିଲେ । ଆହୁତି ଦେଖୁଥିଲା ଅଭିଳାଷଙ୍କର ସମଗ୍ର ସତ୍ତାକୁ ଗ୍ରାସ କରି ଯାଇଥିବା ସେଇ

ମାୟାବିନୀ, କୁହୁକିନୀ ନାରୀଟିକୁ, ଯାହା ପାଇଁ ସାମାଜିକ ସ୍ୱୀକୃତି ପାଇ ମଧ ସେ ସ୍ୱାମୀଙ୍କର ପ୍ରେମ ପାଇପାରିନାହିଁ। ଆଉ ଆକାଡ୍କ୍ଷା ଦେଖୁଥିଲା ସେଇ ସ୍ୱାର୍ଥପର ନାରୀଟିକୁ, ଯିଏ ପ୍ରଲୋଭନ ତଥା ନିରୁପାୟତାର ଜାଲ ବିଛାଇ ଅଭିଳାଷଙ୍କୁ ଛଡ଼ାଇ ନେଇଛି ତା ଜୀବନରୁ। ଦେଖା ହେବା ପୂର୍ବରୁ ଦୁହେଁ ଦୁହିଁଙ୍କ ବିଷୟରେ ଯାହା ଧାରଣା କରିଥିଲେ, ସେଇ ଧାରଣା ସହିତ ବାସ୍ତବ ରୂପକୁ ମିଳାଇ ପାରୁନଥିଲେ। ଆକାଡ୍କ୍ଷା ଧଳା ଛିଟ ଶାଢ଼ିଟିଏ ପିନ୍ଧିଥିଲା। ପିଠି ଉପରେ ଖେଳାଇ ହୋଇ ପଡ଼ିଥିଲା କଳା ମଚ ମଚ ରେଶମି କେଶ। ତକିଆ ଉପରେ ଲେଉଟା ହୋଇ ଥୁଆ ହୋଇଥିବା ବହିଟିକୁ ଚାହିଁଲା ଆହୁତି। ଶ୍ରୀଅରବିନ୍ଦଙ୍କର ଅନବଦ୍ୟ ଗ୍ରନ୍ଥ "ଲାଇଫ୍ ଡ଼ିଭାଇନ୍।" କାନ୍ଥ ଆଲମିରାରେ ମଧ ପ୍ରଚୁର ବହି ରହିଛି। ଅଧିକାଂଶ ବହି ଆଧ୍ୟାତ୍ମିକ ବିଷୟରେ ସମ୍ବଳିତ। ଘର ଭିତରେ ଧୂପର ମଧୁର ସୁଗନ୍ଧ। ତପସ୍ୱିନୀଟିଏ ଭଳି ମନେ ହେଉଛି ଆକାଡ୍କ୍ଷା। ଅଭିଳାଷଙ୍କ ଉପରେ ଅଭିମାନ କରି ଏମିତି ଜୀବନ ହୁଏତ ବାଛି ନେଇଛି ସେ। ଆକାଡ୍କ୍ଷା ଆହୁତିକୁ ଯେତେ ଦେଖୁଥିଲା ସେତିକି ଭଲ ଲାଗୁଥିଲା। ଆହୁତିର ଉପସ୍ଥିତି, ତା ମୁହଁର ସରଳ ଅଭିବ୍ୟକ୍ତି, ତା ଓଠର ସ୍ନିଗ୍ଧ କରୁଣ ହସ ଟିକକ ଆକାଡ୍କ୍ଷା ହୃଦୟକୁ ଅପୂର୍ବ ମମତ୍ୱବୋଧରେ ଭରି ଦେଉଥିଲା। ଏ ଝିଅକୁ ଭଲ ନପାଇ କେହି ରହିପାରେ ? ଅଭିଳାଷ ସତରେ ଖୁବ୍ ଅନ୍ୟାୟ କରିଛନ୍ତି ତା' ପ୍ରତି । ଆକାଡ୍କ୍ଷା ପ୍ରତି ଏବେ ଆଉ ବିଶ୍ୱସ୍ତତା ଦେଖାଇ ଲାଭ କ'ଣ ?

ଆହୁତିର ହାତ ଧରି ଆକାଡ୍କ୍ଷା କହିଲା, "ମୋ ପାଖକୁ କାହିଁକି ଆସିଛ, ସତ କୁହ ତ ?" ଆହୁତି ହସି ଦେଲା ଫିକ୍ କରି। ତାପରେ କହିଲା, "ଅଭିଳାଷଙ୍କ ସହିତ ତୁମ ସମ୍ପର୍କ ନେଇ ତୁମେ ଯେଉଁ ପୋଥି ଲେଖି ପଠେଇଥିଲ, ତାକୁ ପଢ଼ିବା ପରେ ତୁମକୁ ଦେଖିବାକୁ ଖୁବ୍ ଇଚ୍ଛା ହେଲା।" ଚିଠି କଥା ମନେ ପକେଇ ଆକାଡ୍କ୍ଷା ଟିକେ ଗମ୍ଭୀର ହେଲା। ଅଭିଳାଷ କ'ଣ ଆହୁତି ପାଖରେ ସ୍ୱୀକାରୋକ୍ତି ଦେଇଛନ୍ତି ତାଙ୍କ ସମ୍ପର୍କର ? ସେ ଚିଠି କ'ଣ ସେ ପଢ଼ିବାକୁ ଦେଇଥିଲେ ଆହୁତିକୁ ? ଏକଥା ପଚାରିବାରୁ ଆହୁତି ପୁଣି ହସିଦେଲା। ଆକାଡ୍କ୍ଷା ମୁହଁକୁ ଚାହିଁ କହିଲା, "ତାଙ୍କର ଆଲୁରା ସ୍ୱଭାବ କ'ଣ ତୁମେ ଜାଣିନ ଅପା ? ଜିନିଷ ପତ୍ର ସବୁ ଏଣେ ତେଣେ ପକେଇଥିବେ। ଚିଠିଟା ସେ ଲୁଚେଇକି ରଖି ନଥିଲେ। ଡ୍ରେସ୍ ଆଲମିରାରେ ଥିଲା। ସଜାଡିଲା ବେଳେ ପାଇଗଲି। ସ୍ତ୍ରୀଲୋକର ସ୍ୱଭାବ ତ, ପର ଚିଠି ପଢ଼ିବା ଅନ୍ୟାୟ ଜାଣି ମଧ ପଢ଼ିଦେଲି।"

– "ଅଭିଳାଷ ତ ତୁମର ପର ନୁହଁନ୍ତି ?" ଆକାଡ୍କ୍ଷା କହିଲା ଧୀର କଣ୍ଠରେ।

– "ନିଜର ବି ହେଲେ କୋଉଠି ? କଥା ପଦେ ତ କହନ୍ତିନି ଭଲରେ।" ଆହୁତି କଣ୍ଠରେ ଅଭିଯୋଗ।

"କହିଲନି ତ – କାହିଁକି ଆସିଛ ? ବିଶ୍ୱାସ କର– ସେଇ ଚିଠି ଲେଖିବା ପରଠାରୁ

ଅଭିଳାଷଙ୍କୁ ମୋ ଜୀବନରୁ ବିଦାୟ ଦେଇ ଦେଇଛି । ଏ ଜନ୍ମରେ ତାଙ୍କ ସହିତ ଆଉ କୌଣସି ସମ୍ପର୍କ ନାହିଁ ।"

- "ସେମିତି କୁହନି ଅପା, ତୁମକୁ ବାଦ ଦେଇ ସେ ହୁଏତ ବଞ୍ଚିପାରିବେନି । ତୁମେ ତାଙ୍କର ସବୁକିଛି । ପରିସ୍ଥିତି ଚାପରେ ପଡ଼ି ହୁଏତ ତୁମ ପ୍ରତି ସେ ଅନ୍ୟାୟ କରିଛନ୍ତି । ସେଥିପାଇଁ ଅନେକ କଷ୍ଟ ପାଉଛନ୍ତି । ତୁମେ ତାଙ୍କୁ କ୍ଷମା କରିଦିଅ । ପୁଣି ଥରେ ତାଙ୍କ ଜୀବନକୁ ଫେରିଆସ ।" ଆହୁତି ସ୍ୱରରେ କରୁଣ ନିବେଦନ ।

- "କୋଉ ଅଧିକାରରେ ?" ଆକଙ୍‌କ୍ଷାର କଣ୍ଠ ଶାଣିତ ହୋଇଉଠିଲା ।

- "ନିଜ ଅଧିକାରରେ । ଏମିତି ଅବାଞ୍ଛିତ ହୋଇ ଲୋକଦେଖାଣିଆ ସ୍ତ୍ରୀ ହେବାଠାରୁ ଛାଡ଼ପତ୍ର ନେବାପାଇଁ ମୁଁ ପସନ୍ଦ କରିବି ।" ସହଜ ଭାବରେ କହିଲା ଆହୁତି ।

- "ଅଭିଳାଷଙ୍କୁ ତୁମେ ଛାଡ଼ପତ୍ର ଦେବ ? ତାଙ୍କୁ ଭଲ ପାଅନି ତୁମେ ?" ଆକାଙ୍‌କ୍ଷା ଆଶ୍ଚର୍ଯ୍ୟ ହେଲା । ଆହୁତି ଏଥର ବିଷଣ୍ଣ ହସଟିଏ ହସି କହିଲା, "ଭଲ ପାଏ ବୋଲି ତ ଛାଡ଼ପତ୍ର ଦେବି । ଭଲ ପାଇବା ତ ବନ୍ଧନ ନୁହେଁ । ଦେଇ ଦେବାରେ ହିଁ ଆନନ୍ଦ ଥାଏ । ଜୋର୍ କରି ତ କାହାଠାରୁ ଭଲ ପାଇବା ଆଦାୟ କରି ହୁଏ ନାହିଁ । ଅଭିଳାଷଙ୍କୁ ସୁଖୀ କରିବାର ସାମର୍ଥ୍ୟ କେବଳ ତୁମର ଅଛି । ସେଇଥିପାଇଁ ତୁମକୁ ଫେରାଇ ନେବାକୁ ଆସିଛି ।"

ସ୍ତବ୍‌ଧ ହୋଇ ଆକଙ୍‌କ୍ଷା ଚାହିଁ ରହିଥିଲା ଆହୁତିକୁ । ତଣ୍ଟି ପାଖରୁ କେମିତି ଏକ ଯନ୍ତ୍ରଣା ଉଠୁଥିଲା । ଦେଇ ଦେବାରେ ଆନନ୍ଦ ! ତ୍ୟାଗରେ ହିଁ ପ୍ରେମର ମହତ୍ୱ ବଢ଼େ; ବନ୍ଧନରେ ନୁହେଁ ! ଆକାଙ୍‌କ୍ଷାର ପ୍ରେମ କଣ ସ୍ୱାର୍ଥସର୍ବସ୍ୱ ଥିଲା ? ଅଭିଳାଷଙ୍କୁ ଭଲପାଉନଥିଲା ସେ ! ଦଖଲ ନେବାକୁ ଚାହୁଁଥିଲା ! ଅଧିକାର କରିବାକୁ ଚାହୁଁଥିଲା ତାଙ୍କୁ । ସେଇ ଅଧିକାରରୁ ବଞ୍ଚିତା ହେବାରୁ ସେ କ୍ଷୁଣ୍ଣହେଲା, ଉତ୍‌କ୍ଷିପ୍ତ ହେଲା, ଦୁଃଖ ପାଇଲା । କେଡ଼େ ଅନାୟାସରେ ଆହୁତି ନିଜର ଅଧିକାର ଦେଇଦେବାକୁ ପ୍ରସ୍ତୁତ ତାଙ୍କୁ ! ନିଃସ୍ୱାର୍ଥ, ନିଷ୍କପଟ ଭଲ ପାଇବା ତା'ର । ଆହୁତିର ଉଦାରତା ପାଖରେ ହାରିଯାଉଛି ଆକାଙ୍‌କ୍ଷା । ଆଖିପତା ଉପରକୁ ଚହଲି ଆସୁଥିବା ଅବାଧ୍ୟ ଲୁହକୁ ସାବାଡ଼୍ କରି ଆକାଙ୍‌କ୍ଷା କହିଲା, "ଅଭିଳାଷଙ୍କ ପାଖକୁ ଆଉ ଫେରିଯିବା ବା ତାଙ୍କୁ ଗ୍ରହଣ କରିବା ସମ୍ଭବ ନୁହେଁ ମୋ ପକ୍ଷରେ ।"

- "ସମ୍ଭବ ନୁହେଁ ? କାହିଁକି ?" ଆହୁତି ପଚାରିଲା ।

- "ଅଭିଳାଷଙ୍କର ସ୍ଥାନ ଆଉ ଜଣଙ୍କୁ ଦେଇ ସାରିଛି ମୁଁ ।" ଆକାଙ୍‌କ୍ଷା କହିଲା ଦୃଢ଼ ପ୍ରତ୍ୟୟରେ ।

- "ମିଛକଥା ।"

- ବିଶ୍ୱାସ କର, ତାଙ୍କ ଛଡ଼ା ଆଉ କାହାରି ବିଷୟରେ ଚିନ୍ତା କରିବାକୁ ଚାହେଁନି ମୁଁ। ସେ ଅଭିଳାଷଙ୍କ ଠାରୁ ଅନେକ ସୁନ୍ଦର, ଖୁବ୍ ଭଲ ସେ। ତାଙ୍କରି ସହିତ ଖାଲି ଏ ଜନ୍ମ ନୁହେଁ, ଜନ୍ମଜନ୍ମାନ୍ତର ଯାଏ ଜୀବନ ବିତେଇବି ବୋଲି ସଂକଳ୍ପ କରିଛି।"

- "କିଏ ସେ ଲୋକ? କୋଉଠି ଥାଆନ୍ତି? କଣ କରନ୍ତି?" ଆହୁତିର ଅଣନିଃଶ୍ୱାସୀ ପ୍ରଶ୍ନ।

- "ମୋ ପାଖ ଛାଡ଼ି ସେ କେବେ ଯାଆନ୍ତିନି। ଆଖିରେ ଆଖିରେ ରଖନ୍ତି ମୋତେ।"

- "ତୁମ ଘରେ ରହନ୍ତି?"

- "ଏଇଠି ଅଛନ୍ତି ତ ଏଇ ଘରେ। ତୁମ ପଛ ପାଖକୁ ଦେଖ। ସେ କେମିତି ହସୁଛନ୍ତି?" ରହସ୍ୟମୟ ହସ ହସି କହିଲା ଆକାଡ୍‌କ୍ଷା। ଚମକି ପଡ଼ି କାନ୍ଧ ଉପରର ପଣନ୍ତକୁ ସଜାଡ଼ି ନେଇ ଆହୁତି ପଛକୁ ଚାହିଁଲା। କାନ୍ଥରେ ପ୍ରେମମୟ ଭଗବାନ୍ ଶ୍ରୀକୃଷ୍ଣଙ୍କର ବିରାଟ ତୈଳଚିତ୍ର। ହାତରେ ମୋହନ ବଂଶୀ। ଓଠରେ ଅମୃତଝରା ହାସ୍ୟଛଟା। ଖୁବ୍ ଚମତ୍କାର ଚିତ୍ରଟି। ଜୀବନ୍ତ ମନେ ହେଉଛି। ଅବାକ୍ ହୋଇଗଲା ଆହୁତି। ଚକ୍ଷୁ ଲୋତକାପ୍ଲୁତ ହୋଇଉଠିଲା। ଆକାଡ୍‌କ୍ଷାର ପାଦରେ ମଥା ରଖି ପ୍ରଣାମ କଲା ସେ। ଆକାଡ୍‌କ୍ଷା ତାକୁ ଆବେଗରେ କୋଳାଗ୍ରତ କଲା। ସ୍ନେହରେ କପାଳ ଚୁମ୍ବନ କରି କହିଲା, "ଅଭିଳାଷ ଖୁବ୍ ଭାଗ୍ୟବାନ୍, ତୁମ ପରି ଚମତ୍କାର ରତ୍ନଟିଏ ପାଇଛନ୍ତି। ଅନ୍ତରର ସହିତ ମୁଁ କାମନା କରୁଛି ତୁମେ ସୁଖୀ ହୁଅ। ତୁମ ତପସ୍ୟା ସଫଳ ହେଉ।"

# କଞ୍ଚନଫୁଲର ମାୟା

ଭୋର୍ ଚାରିଟା ହୋଇଗଲେ ଫଟ୍ କିନା ନିଦ ଭାଙ୍ଗିଯାଏ ଅନୁପମାଙ୍କର। ବିଛଣାରୁ ନିଃସଙ୍କୋଚରେ ଓହ୍ଲାଇଯିବାକୁ ଚେଷ୍ଟା କଲାବେଳେ ଆଦିତ୍ୟ ନିଦୁଆ କଣ୍ଠରେ କହନ୍ତି, "କଞ୍ଚନଫୁଲ ଡାକିଲା କି ?" ଅନୁପମା କିଛି ନକହି ମୁହଁ ଧୋଇ ଫୁଲ ପାଛିଆଟି ଧରି ଦୁଆର ଖୋଲନ୍ତି। ସେଯାଏଁ ଅନ୍ଧାର କଟିନଥାଏ। ତାରାମାନେ ଆକାଶରେ ମିଟ୍ ମିଟ୍ କରି ଚାହିଁଥାଆନ୍ତି। ଜହ୍ନ କେବେ ଥାଏ ତ କେବେ ନଥାଏ। ରାତ୍ରିଚର ପକ୍ଷୀଙ୍କର ଡେଣା ଫଡ୍ ଫଡ୍ ଶୁଭିଯାଏ। କଦବା କ୍ୱଚିତ୍ ସେ ଇଲାକା ଜଗିବା ପାଇଁ ସ୍ଥାନୀୟ ଲୋକଙ୍କ ଦ୍ୱାରା ନିଯୁକ୍ତ ରାତ୍ରି ଜଗୁଆଳୀର ହୁଇସିଲ୍ ମଧ ଶୁଭେ। ଗେଟ୍ ବାହାରକୁ ଆସି ଫୁଲ ତୋଳିବାବେଳେ ଅନୁପମାଙ୍କର ଭୟ ଭୟ ଭାବଟା କଟିଯାଏ। ପ୍ରଥମେ ପ୍ରଥମେ ଆଦିତ୍ୟ ଆସି ଠିଆ ହେଉଥିଲେ ଗେଟ୍ ପାଖରେ। କିନ୍ତୁ ଜଣକ ପରେ ଜଣେ ଫୁଲ ତୋଳାଳିଙ୍କୁ ନିର୍ଭୟରେ ଯା' ବାଡ଼ି, ତା ବାଡ଼ିରୁ ଫୁଲ ତୋଳୁଥିବା ଦେଖି ସେ ନିଶ୍ଚିନ୍ତ ହୋଇଗଲେ। ରାତି ନପାହୁଣୁ ଭଦ୍ର ମହିଳାମାନେ ମଧ ରାତ୍ରିପୋଷାକ ପିନ୍ଧି ଫୁଲ ତୋଳିବା ପାଇଁ ଆଙ୍କୁଡ଼ିଟିଏମାନ ଧରି ନିର୍ଭୟରେ ବୁଲୁଥାଆନ୍ତି। ଅନୁପମାଙ୍କର ଯୋଉଦିନ ଉଠିବାରେ ପାଞ୍ଚ ସାତ ମିନିଟ୍ ଡେରି ହୋଇଯାଏ, ପାଚେରୀ ସେ ପାଖକୁ ଯାଇ ମଧ ଶୂନ୍ୟ ପାଛିଆ ଧରି ତାଙ୍କୁ ଫେରିବାକୁ ହୁଏ। ଫୁଲଚୋର ବା ଚୋରଣୀମାନେ ଗୋଟିଏ ବି ଫୁଲ ଛାଡ଼ିନଥାନ୍ତି। ଯିଏ ଗଛ ଲଗାଇ ଯତ୍ନ କରି ବଢ଼େଇଛି- ତା'ର ଯେମିତି କିଛି ହେଲେ ଅଧିକାର ନାହିଁ ନିଜ ଗଛର ଫୁଲ ଉପରେ। ଅବିବେକୀ ଫୁଲଚୋରମାନଙ୍କୁ ମନେମନେ ଗାଳିଦେବା ସହିତ କଞ୍ଚନଗଛଟିକୁ ମଧ ଗାଳିଦିଅନ୍ତି ସେ। ତୁ କାହିଁକି ତୋର ସବୁତକ ଶାଖା ପ୍ରଶାଖା ପାଚେରୀ ସେ ପାଖକୁ ଲମ୍ବେଇ ଦେଇଛୁ ? ଆଖିରେ ପଡ଼ିଲେ ଲୋକଙ୍କର ଲୋଭ ହେବ। ଆଖିର ଲୋଭକୁ କେତେ ଲୋକ ସଂଯତ କରିପାରନ୍ତି। ଛାଡ଼ – ଗଛ ତ ଅକାତର ଭାବରେ ନିଜର ଡାଳ, ପତ୍ର, ଫୁଲ ମେଲାଇ ଦେଇଛି ସର୍ବସାଧାରଣଙ୍କ ପାଇଁ। ସିଏ କାହିଁକି ଭାବନାରେ ହେଲେ ବି କୃପଣ ହେବ ?

ଯେତେ ଆଦର୍ଶର କଥା ଭାବିଲେ ମଧ ଭୋର୍‌ରୁ ଶୂନ୍ୟ  ପାଛିଆ ଧରି ଘର ଭିତରକୁ ପଶିଲାବେଳେ ମନ ବିଦ୍ରୋହ କରି ଉଠେ। ସିଏ ତ ଦିନେ କାଳେ ଯାଆନ୍ତିନି କାହା ଗଛରୁ ଫୁଲ ଟାଣିବାକୁ ! ଯୋଉଦିନ ବେଶି ଫୁଲ ଥାଏ, ସେଥିରୁ ଅଧେ ମନ୍ଦିରକୁ ପଠାଇଦେଇ ଅବିଶିଷ୍ଟ ଫୁଲରେ ଘରଠାକୁରମାନଙ୍କୁ ସୁନ୍ଦର ଭାବରେ ମଣ୍ଡଣି କରିଦିଅନ୍ତି। ଯୋଉଦିନ ଫୁଲ ନଥାଏ, ଠାକୁରମାନଙ୍କୁ କେବଳ ଧୂପ, ଦୀପ, ନୈବେଦ୍ୟରେ ସନ୍ତୁଷ୍ଟ ହେବାକୁ ପଡ଼େ। ପୂଜା ପର୍ବ ଦିନମାନଙ୍କରେ ଆଦିତ୍ୟ ବଜାରରୁ ଫୁଲମାଳ କିଣିଆଣନ୍ତି। ଆଉ କାହା ବାଡ଼ିରୁ ଫୁଲ ଚୋରି କରି ଠାକୁରଙ୍କୁ ପୂଜା କରିବା କଥା ଅନୁପମା ଚିନ୍ତା କରିପାରନ୍ତି ନାହିଁ। ଅବଶ୍ୟ କଞ୍ଚନଫୁଲ ବ୍ୟତୀତ ସେମାନଙ୍କ ବଗିଚାରେ ଟଗର, ତଗର, ମଲ୍ଲୀ, ମନ୍ଦାର, ଗୋଲାପ, ଚମ୍ପା, ଅପରାଜିତା, ସ୍ଥଳପଦ୍ମ ଇତ୍ୟାଦି ଅନେକ ଫୁଲଗଛ ରହିଛି। ପୁଣି ଶୀତଋତୁବେଳକୁ ଗେଣ୍ଡୁ, ଡାଲିଆ, ସେବତୀ ତଥା ଅନ୍ୟ କେତେକ ଦେଶୀ ବିଦେଶୀ ଫୁଲଗଛର ସମାବେଶ ମଧ ହୋଇଥାଏ ତାଙ୍କର ଛୋଟ ବଗିଚାଟିରେ। କିନ୍ତୁ କେଜାଣି କାହିଁକି ଧଳା ରଙ୍ଗର କଞ୍ଚନ ଫୁଲ ପ୍ରତି ଅନୁପମାଙ୍କର ଏକ ସ୍ୱତନ୍ତ୍ର ଆକର୍ଷଣ ରହିଛି। ଶୁଭ୍ର ସତେଜ କୋମଳ ପବିତ୍ରତା ଯେମିତି ଭରି ରହିଥାଏ ପ୍ରତିଟି ଫୁଲ ପାଖୁଡ଼ାରେ।

"କଞ୍ଚନ ଫୁଲର ବରା କରି ଖାଉନ ? ଭାରି ଭଲ ଲାଗେ ପିଠୋଉ ଦେଇ କଞ୍ଚନ ଫୁଲକୁ ଭାଜିଲେ। ସୋରିଷ ବେସର ଦେଇ କଞ୍ଚନ ଫୁଲର କଢ଼ିକୁ ରାନ୍ଧିଲେ ପୂରା ଛତୁ ତରକାରୀ ପରି ଲାଗେ।" କଞ୍ଚନ ଫୁଲ ଗଛଟିକୁ ଦେଖି କେହି କେହି ପରାମର୍ଶ ଦିଅନ୍ତି। ଅନୁପମା କିନ୍ତୁ ସେଇ ସତେଜ ଶୁଭ୍ର କୋମଳତାକୁ ତରକାରୀ କଡେଇ କିମ୍ବା ଗରମ ତାୱାରେ ବିସର୍ଜି ଦେବା କଥା ଭାବିପାରନ୍ତି ନାହିଁ। ସେଇ ଫୁଲଗୁଡ଼ିକ ସହିତ ନିଜର ସତ୍ତାକୁ ଏକାତ୍ମ କରିଦିଅନ୍ତି ସେ। ସେଇଥିପାଇଁ କେବଳ ଠାକୁରଙ୍କ ନିକଟରେ ହିଁ ସମର୍ପି ଦେବାକୁ ଚାହାନ୍ତି ସେମାନଙ୍କୁ।

ପିଲାଦିନେ ଧାଈମା ପାଖରୁ କଞ୍ଚନଫୁଲ ଗଛ ବିଷୟରେ ଗପଟିଏ ଶୁଣିଥିଲେ ଅନୁପମା। କଞ୍ଚନବତୀ ଥିଲା ସାତ ଭାଇରେ ଗୋଟିଏ ବୋଲି ଭଉଣୀ - ସମସ୍ତଙ୍କର ଅତ୍ୟନ୍ତ ଅଲିଅଳୀ। ମା' ଭାଉଜଙ୍କ ହାତରୁ କାମ ଛଡ଼େଇ ନେଇ କାମ କରିବାକୁ ଭଲପାଏ ସେ। ସେମିତି ଦିନେ ଶାଗ କାଟୁକାଟୁ ଆଙ୍ଗୁଠିରୁ ଟିକେ କଟିଗଲା କଞ୍ଚନବତୀର। ରକ୍ତ  କେତେ ଟୋପା ଶାଗରେ ଗୋଳାଇ ହୋଇଗଲା। ସେଦିନର ଶାଗଭଜା ସବୁ ଦିନଠୁ ସୁଆଦିଆ ଲାଗିଲା। ଭାଇମାନେ ଶାଗଭଜାର ଖୁବ୍ ପ୍ରଶଂସା କଲେ। ସବାସାନଭାଇ ଭାବିଲା  - ଯାହାର ରକ୍ତ ଟୋପାଏ ଶାଗରେ ପଡ଼ିଯିବାରୁ ଶାଗଭଜା ଏଡ଼େ ସୁଆଦିଆ ଲାଗିଲା ତା'ର ମାଉଁସ କେଡ଼େ ସୁଆଦିଆ ହୋଇନଥିବ। ଦିନେ ଘରେ କେହି ନଥିବାବେଳେ

ସାନଭାଇ କଞ୍ଚନବତୀକୁ ଖଣ୍ଡାରେ ହାଣି ଟିକି ଟିକି କରିଦେଲା ଓ ତା'ର ମାଉଁସ ରାନ୍ଧିକି ଖାଇଲା। ବଳକା ମାଉଁସ ଓ ହାଡ଼ଗୋଡ଼କୁ ବାରିପଟେ ଗାତ ଖୋଳି ପୋତିଦେଲା। କିଛି ଦିନ ପରେ ସେଇ ଜାଗାରେ ଗଛଟିଏ ଉଠିଲା। ତୋଫା ତୋଫା ଫୁଲରେ ମଣ୍ଡି ହୋଇଗଲା ସେଇ ଗଛ। ସୁନ୍ଦର ଫୁଲଗୁଡ଼ିକୁ ଦେଖି ଯିଏ ବି ତୋଳିବା ପାଇଁ ହାତ ବଢ଼େଇଲେ, ସେଇ ଗଛ ଭିତରୁ ଝିଅ କଣ୍ଠର ଗୀତଟିଏ ଶୁଭିଲା -

"ଥିରି ଥିରି କରି ତୋଳ ହେ ବାପା
ଗଛରୁ ପତ୍ର ନ ଝଡ଼େ
ମୋର ସାନଭାଇ ଖଣ୍ଡାରେ ହାଣିଛି
ତହିଁକୁ ମୋ ଦେହ ଥରେ।"

ଏ ସ୍ୱର ତ କଞ୍ଚନବତୀର। କ'ଣ ଅର୍ଥ ଏ ଗୀତର ? ଜଣ ଜଣ କରି ପରିବାରର ସମସ୍ତେ ଗଛଟି ପାଖକୁ ଗଲେ। ସମସ୍ତଙ୍କୁ ସମ୍ବୋଧନ କରି ଗଛଟି ଗୀତ ଗାଉଥାଏ। ଶେଷରେ ସାନଭାଇ ଗଲା ଫୁଲ ତୋଳିବାକୁ। ଗଛଟି ଏଥର ଗୀତ ଗାଇଲା -

"ଥିରି ଥିରି କରି ତୋଳ ସାନଭାଇ
ଗଛରୁ ପତ୍ର ନ ଝଡ଼େ,
ତୁମେ ନିଜେ ମୋତେ ଖଣ୍ଡାରେ ହାଣିଛ
ତହିଁକୁ ମୋ ଦେହ ଥରେ।"

କଞ୍ଚନବତୀ ନିଖୋଜ ହୋଇଯିବା ପରେ ତା'ର ସନ୍ଧାନ ପାଇବାକୁ ପରିବାରର ଲୋକମାନେ ଖୁବ୍ ବ୍ୟାକୁଳ ହୋଇ ପଡ଼ିଥିଲେ। ଗଛର ଗୀତ ଶୁଣି ସାନଭାଇକୁ ପଚରା ଉଚରା କରିବାରୁ ସେ ନିଜର ଦୋଷ ସ୍ୱୀକାର କଲା। କଞ୍ଚନବତୀର ମାଆ ଯାଇ ଗଛଟିକୁ ଛୁଇଁ ଦେବାରୁ ସିଏ ନିଜର ପୂର୍ବ ରୂପ ନେଇ ମାଆ କୋଳକୁ ଡେଇଁ ପଡ଼ିଲା। ଆମ ଲୋକକଥାମାନଙ୍କରେ ଦୋଷୀକୁ ତୁରନ୍ତ ଦଣ୍ଡ ଦିଆଯାଇଥାଏ। କୋର୍ଟ, କଚେରୀ, ଓକିଲଙ୍କର ସତମିଛର ଖେଳ ନେଇ ବର୍ଷ ବର୍ଷ ଧରି ନ୍ୟାୟ ପାଇଁ ଅପେକ୍ଷା କରିବାକୁ ପଡ଼ିନଥାଏ। ତେଣୁ ସାନଭାଇକୁ ତଳକଣ୍ଟା, ଉପରକଣ୍ଟା ଦେଇ ଖଣିଗାତ ମଧ୍ୟକୁ ପେଲି ଦେଇଥିଲେ ପରିବାରର ଲୋକମାନେ।

କଞ୍ଚନ ଗଛଟିକୁ ଚାହିଁଲେ ଅନୁପମାଙ୍କର ସେଇ ଗପଟି ମନେ ପଡ଼ିଯାଏ। ସବୁ ଫୁଲ ଭିତରେ ଦିଶିଯାଏ ଗୋଟିଏ ସରଳ ସୁନ୍ଦର ସୁକୁମାରୀ କିଶୋରୀର ଢଳଢଳ ମୁହଁ। ଫୁଲ ପାଖୁଡ଼ା ଭିତରୁ ଯେମିତି ଟୋପା ଟୋପା ଲୁହ ଝରିଯିବ ଏବେ। କଞ୍ଚନ ଫୁଲକୁ ରାନ୍ଧି ଖାଇବା କଥା ଚିନ୍ତା କରିପାରନିନି ସେ। ସେ କଥା ମନକୁ ଆସିଲେ ଦିଶିଯାଏ କଞ୍ଚନବତୀର ନୃଶଂସ ହତ୍ୟାକାରୀ, ପୈଶାଚିକ ପ୍ରବୃତ୍ତିର ସେଇ ଭୟଙ୍କର ସାନଭାଇର

ରୂପ - ଯିଏ ସମଗ୍ର ଭ୍ରାତୃଜାତିର କଳଙ୍କ। ଏ ଭାବନା ସେ କାହା ପାଖରେ ପ୍ରକାଶ କରିପାରନ୍ତି ନାହିଁ। ତାଙ୍କ ଭାବନା ହୁଏତ ବୁଝିପାରିବେ ନାହିଁ ଅନ୍ୟମାନେ। ତାଙ୍କୁ ଥଟ୍ଟା କରିବେ - ହସିବେ। କହିବେ - କଖାରୁ ଫୁଲ ଭଜା ତ ବେଶ୍ ମଜାରେ ଖାଉଛ। ନିମ୍ବଫୁଲର ଭଜା ବି ଖାଉଛ। କଞ୍ଚନଫୁଲ ଖାଇଲେ ଦୋଷ କ'ଣ?

ସେଦିନ ଅନୁପମା ଖୁବ୍ ଜୋର୍‌ରେ ରାଗିଗଲେ। ରାତି ଚାରିଟା ବେଳକୁ ଉଠି ଫୁଲ ତୋଳିବାକୁ ଗଲାବେଳକୁ ଗଛର ସବୁତକ ଫୁଲ ତୋଳି ନେଇ ଲୋକଟିଏ ଆହୁରି ନିରୀକ୍ଷଣ କରି ଦେଖୁଛି ଗୋଟେ ଅଧେ ଫୁଲ କୋଉଠି ରହିଗଲା କି? ଅନୁପମାଙ୍କୁ ଦେଖି ଲୋକଟି ତରବର ହୋଇ ଚାଲିଗଲା। କଟମଟ କରି ତା'ର ଯିବା ବାଟକୁ ଚାହିଁ ରହିବା ବ୍ୟତୀତ ଆଉ କିଛି କରିବାର ନଥିଲା ତାଙ୍କର। ଖୁବ୍ ଜୋର୍‌ରେ ଲୋକଟିକୁ ଗାଳି ଦେବାକୁ ଇଚ୍ଛା ହେଉଥିଲା ଅନୁପମାଙ୍କର। କିନ୍ତୁ ତାଙ୍କୁ ଯେ ଆଦୌ ଗାଳି ଦେଇ ଆସେ ନାହିଁ! କ'ଣ କହିବେ ସେ?" ଦୟାକରି ଆମ ଗଛରୁ ଫୁଲ ନିଅନ୍ତୁ ନାହିଁ ଆଜ୍ଞା। ଆମର ବି ଏ ଫୁଲ ଦରକାର।" ଧେତ୍ - ଏମିତି କହିଲେ ସେ ଲୋକ କ'ଣ ଶୁଣିବ? କିଛି ଛୋଟପିଲା କି ଟୋକାଟାକଳିଆ ଲୋକ ନୁହେଁ - ମଧ୍ୟବୟସ୍କ ଲୋକଟେ। ଜାଣି ଜାଣି ତ ଏ କାମ କରୁଛି ସେ ସବୁଦିନ ଅତ୍ୟନ୍ତ ନିର୍ବିକାର ଭାବରେ। କେବଳ ଅନୁପମାଙ୍କ ଗଛରୁ ନୁହେଁ - ଆଖପାଖର ସମସ୍ତଙ୍କ ବାରିରୁ ସେ ଲୋକ ଫୁଲ ତୋଳି ନିଅନ୍ତି ରାତି ଅନ୍ଧାରରୁ। ଆଙ୍କୁଡ଼ି ସହିତ ଟର୍ଚ୍ଚଟିଏ ମଧ୍ୟ ତାଙ୍କ ପାଖରେ ଥାଏ। ଅନ୍ଧାରରେ ଟର୍ଚ୍ଚ ମାରି ମାରି ସେ ଫୁଲ ତୋଳି ନିଅନ୍ତି। ପର ବାଡ଼ିରୁ ଫୁଲ ତୋଳିନେବା ତାଙ୍କର ଯେମିତି ସାମ୍ବିଧାନିକ ଅଧିକାର ଅଥବା ଅତ୍ୟନ୍ତ ପବିତ୍ର କର୍ତ୍ତବ୍ୟ। ଚୋରି କରି ଅଣାଯାଇଥିବା ଫୁଲରେ ପୂଜା କଲେ କ'ଣ ଇଶ୍ୱର ସନ୍ତୁଷ୍ଟ ହୁଅନ୍ତି! ସାହି ପଡ଼ିଶାର ଅନେକ ଲୋକ ବିରକ୍ତ ହୋଇଗଲେଣି ସେ ଲୋକଟି ଉପରେ। ଗାଳିମନ୍ଦ ମଧ୍ୟ କଲେଣି କେହି କେହି। କେଡ଼େ ଅବିବେକୀ ଲୋକଟେ ମ! ରାତି ଅଧରୁ ଆସି ସବୁ ଗଛରୁ ଫୁଲତକ ଖୁଣ୍ଟି ନେଉଛୁ। କାହା ଘରେ ଆଉ ଠାକୁର ଫୁଲଟିଏ ପାଇବେନି ନା କ'ଣ! ଯିଏ ଗଛ ଲଗେଇଛି - ତୋ ଦାଉରୁ ସିଏ ଶାନ୍ତିରେ ଶୋଇ ପାରିବନି ରାତିରେ!

ତାଙ୍କ ମନର ଅଶାନ୍ତିର କଥା ଆଦିତ୍ୟଙ୍କୁ ଜଣାନ୍ତି ନାହିଁ ଅନୁପମା। ଜଣେଇଲେ ସେ ଅତ୍ୟନ୍ତ ଉଦାର କଣ୍ଠରେ କହିବେ, "ଓହ, ଫୁଲ ଗଣ୍ଡାଏ କିଏ ନେଇଯାଉଛି ତ ନେଉ ନା! ଭଗବାନ କ'ଣ ସେଥିରେ ଅଭାବ ରଖିଛନ୍ତି ତୁମର? ଯିଏ ବି ନେଇଛି - ଠାକୁରଙ୍କୁ ଦେବ ବୋଲି ନେଇଛି ନା? ଯଦି ବେଶି ମନ ଖରାପ କରିବ ତ ଗଛଟି ହାଣିଦେବା - ନା କ'ଣ କହୁଛ?" ଆଦିତ୍ୟ ଜାଣନ୍ତି, ଗଛଟିକୁ ହାଣିଦେବା କଥାରେ ଅନୁପମା କେବେ ବି ସମ୍ମତ ହେବେ ନାହିଁ। ଗଛକୁ ଭଲପାଉଥିବା କୌଣସି ଲୋକ

ଏକଥା ମନରେ ସ୍ଥାନ ଦେଇପାରିବ ନାହିଁ। କିନ୍ତୁ ସବୁଦିନର ବ୍ରାହ୍ମ ମୁହୂର୍ତ୍ତଟି ଏକ ଶୂନ୍ୟତାବୋଧ ତଥା ଅଶାନ୍ତିର ଅନୁଭବ ମଧ୍ୟରୁ ଆରମ୍ଭ ହେଉ ବୋଲି ବି ଚାହୁଁ ନଥିଲେ ଅନୁପମା। ଅନ୍ୟର ଭୁଲ୍ କାମକୁ ମଥାପାତି ପାଟି ବୁଜି ସହିଯିବା ବି ଉଚିତ ନୁହେଁ। ଏକଥା ସେ ଭାବନ୍ତି। ଅନ୍ୟାୟର ପ୍ରତିକାର କରିବା ନିହାତି ଦରକାର। ସେଥିପାଇଁ ନିଜକୁ ପ୍ରସ୍ତୁତ କଲେ ଅନୁପମା। ସେଦିନ ଲୋକଟି ଫୁଲ ତୋଳି ଫେରୁଥିବାବେଳେ ତା' ପଛେ ପଛେ ଚାଲିଲେ ସେ। ତାଙ୍କ ଘରଟୁ ବେଶି ଦୂର ନୁହେଁ ଲୋକଟିର ଘର। ଘରଟି ଦେଖିବା ପରେ କେତେବେଳେ ଦିନରେ ଯାଇ ଲୋକଟି ସହିତ ସିଧାସଳଖ କଥା ହେବେ ବୋଲି ଠିକ୍ କଲେ। ଦେଖାଯାଉ - କିଭଳି ଭାବରେ ସେ ଗ୍ରହଣ କରୁଛି ଅନୁପମାଙ୍କ କଥା।

ଆଦିତ୍ୟ ଅଫିସ୍ ଚାଲିଯିବା ପରେ ଘରେ ତାଲା ପକାଇ ଅନୁପମା ବାହାରି ପଡ଼ିଲେ ଫୁଲଚୋର ଘରେ ଚଢ଼ାଉ କରିବାକୁ। ତାଙ୍କୁ ଝଗଡ଼ା କରି ଆସେ ନାହିଁ।ଭଦ୍ର ଭାବରେ ଅନ୍ତତଃ ବୁଝାଇବାକୁ ଚେଷ୍ଟା କରିବେ ଲୋକଟାକୁ। ସମ୍ଭବ ହେଲେ ସେ ଦେଖିବାକୁ ଚାହିଁବେ ତାଙ୍କର ଠାକୁରଙ୍କ ଆସ୍ଥାନଟିକୁ - ଯୋଉଠି ମଣ୍ଡଣି ହୋଇଥିବ ତାଙ୍କ ଗଛର ଫୁଲଗୁଡ଼ିକ। ଯଦି ସେ ଦୃଶ୍ୟ ତାଙ୍କୁ ଭଲ ଲାଗିବ ତ ସେ କିଛି ନ କହି ଚାଲି ଆସିବେ। ଯୋଉ ଗଛରେ ବି ଫୁଲ ଫୁଟୁ, ଯୋଉଠି ବି ଫୁଟୁ - ସବୁ ତ ସେଇ ଭଗବାନଙ୍କ ଇଚ୍ଛାରେ ହିଁ ଫୁଟିଛି। ଯଦି ଅନୁପମାଙ୍କ ଗଛର ଫୁଲ ତାଙ୍କ ହାତରୁ ନପାଇ ଆଉ କାହା ହାତରୁ ପାଇବାକୁ ସେ ଇଚ୍ଛା କରୁଛନ୍ତି ଅନୁପମା କାହିଁକି ଦୁଃଖ କରିବେ ?

ଭଦ୍ରଲୋକ ( ! ) ଅଳ୍ପଦିନ ହେଲା ଆସିଛନ୍ତି ସେଇଠିକୁ ଘରଭଡ଼ା ନେଇ। ପାଖ ପଡୋଶୀଙ୍କ ସହିତ ଏବେ ବି ସମ୍ପର୍କ ଗଢ଼ି ଉଠିନାହିଁ। ଏମିତିରେ ଅନୁପମା କ୍ୱଚିତ୍ ଯାଆନ୍ତି ସାହି ପଡ଼ିଶାରେ ବୁଲିବାକୁ। ଘରକାମ ସରିଯିବା ପରେ ଟିଭି ଦେଖନ୍ତି, ନଚେତ୍ ପତ୍ରପତ୍ରିକା ପଢ଼ି ଅବସର ସମୟ ବିତାନ୍ତି। ତେବେ ପଡୋଶୀମାନଙ୍କ ସହିତ ସୁସମ୍ପର୍କ ବଜାୟ ରଖିଥାଆନ୍ତି ସେ। ନୂଆ ପଡୋଶୀଙ୍କ ଘରେ ତାଙ୍କର ପ୍ରଥମ ପଦାର୍ପଣ। ଦେଖାଯାଉ କ'ଣ ହେଉଛି ତାଙ୍କ ଅଭିଯାନର ଫଳ। "ମାଉସୀ ନମସ୍କାର।" ଦୁଆର ମୁହଁରେ ବସିଥିବା ବୟୋବୃଦ୍ଧା ମହିଳା ଜଣଙ୍କୁ କହିଲେ ଅନୁପମା। "ଅୟିସୁଲକ୍ଷଣୀ ହୋଇଥା ମା। ମୁଁ ଜାଣି ପାରୁନିରେ, ଆଖିକୁ ତ ଦୁଶୁନି ଭଲକି ।" ବୃଦ୍ଧା ତାଙ୍କ ଆଖିକୁ ମିଟ୍ ମିଟ୍ କରି ଅନୁପମାଙ୍କୁ ଚିହ୍ନିବାକୁ ଚେଷ୍ଟା କଲେ । ବୟସର ବୁଢ଼ିଆଣୀ ଜାଲ ମୁହଁ ସାରା ଛନ୍ଦାଛନ୍ଦି ହୋଇରହିଛି । ଦେହର ଚମ ଲୋଚାକୋଚା ହୋଇଗଲାଣି । ଆଖି ପେଚୁଆ ଦିଶୁଛି ପରଳ ପଡିଥିବା ହେତୁ ।

ଅନୁପମା ପରିଚୟ ଦେଲେ ନିଜର । "ଏଇଠି ପାଖରେ ରହୁଛୁ ଆମେ ।

ଆପଣମାନେ ନୂଆହୋଇ ଆସିଛନ୍ତି ତ – ଦେଖିବାକୁ ଚାଲିଆସିଲି ।"

'ଭାରି ଭଲକଲୁ ମା । ସେଦିନରୁ ଆଇଲୁଣି ଆମେ । ଏଠି କେହି ପଚାରିବାକୁ ନାହିଁ । ଇଏ କ'ଣ ଆମ ଗାଁ ହୋଇଛି ଯେ ସୁଖଦୁଃଖ ଭଲମନ୍ଦରେ ଦଶଜଣ ଧାଇଁ ଆସିବେ ! ଇଏ ପରା ସହର ବଜାର ଜାଗା – ଏଠି କେହି କାହାର ନୁହଁନ୍ତି । ପୁଅକୁ ଯେତେ ମନାକଲି – ସିଏ କ'ଣ ଶୁଣିଲା ମୋ କଥା ! ଶାଶୂବୋହୂ ଯୋଡ଼ିକ ଆମେ କେତେ ଆନନ୍ଦରେ ଥିଲୁ ଗାଆଁରେ । ଛୁଟି-ଫୁଟି ହେଲେ ପୁଅ ଘରକୁ ଆସେ । ଆମର ଭଲମନ୍ଦ କଥା ବୁଝେ । ଯେବେଠୁ ସେ ଜାଣିଲା – ମୋ ଆଖିକୁ ଆଉ ଭଲ ଦିଶୁନାହିଁ, ଆଖିରେ ପରଳ ମାଡ଼ିଲାଣି – ଜିଦି ଲଗେଇଲା ଭୁବନେଶ୍ୱର ଆଣି ଡାକ୍ତର ଦେଖେଇବ – ଆଖି ଅପରେସନ୍ କରିବ । ମୋର ଆଉ କେତେଦିନ ? ଦୁନିଆର ରୀତିନୀତି ଦେଖି ଦେଖି ହାଲିଆ ହୋଇଗଲିଣି । ଆଉ କିଛି ଦେଖିବାକୁ ମନ ନାହିଁ । ଏଥର ପିଲାଙ୍କ ଆଗରେ ଆଖି ବୁଜିଦେଲେ ଗଲା । ବୁଢ଼ା ତ କୋଉ କାଳରୁ ମୋ ମୁଣ୍ଡରେ ସଂସାରଟା ଲଦି ଦେଇ ପାର୍ । କେତେ ଦୁଃଖ ଧନ୍ଦା କରି ମୋ ପୁଅକୁ ମଣିଷ କରିଛି – ସେଇ କାଳିଆ ଠାକୁର ଜାଣିଛି । ତାକୁ ଇ ଭରସା କରି ଏତେଦିନ କାଟିଦେଲି – ଆଉ କେଇଟା ଦିନ ଯେ !" ବୃଦ୍ଧାଙ୍କର ବକ୍ତବ୍ୟ ଯେମିତି ସରିବାର ନାହିଁ ।

"ଘରେ ଆଉ କେହି ନାହାଁନ୍ତି କି ?" ଅନୁପମା ପଚାରିଲେ ।

"ଏ ବେଳରେ ଆଉ କିଏ ଥିବ ଆମ ଶାଶୂ ବୋହୂଙ୍କ ଛଡ଼ା । ପୁଅ ତା'ର ଖାଇପିଇ ଅଫିସ୍ ଗଲାଣି ଭାରି । ବୋହୂ ଆହୁରି ରୋଷେଇଘରୁ ବାହାରିନି ।"

"ଆପଣମାନଙ୍କର ଖିଆପିଆ ହେଇନି ତା' ହେଲେ ?"

"କେମିତି ହେବ ? ଏଯାଏଁ କ'ଣ ଦିଅଁ ପୂଜା ହେଲାଣି ଯେ ପାଟିରେ କିଛି ଦେବି ? ବୋହୂର ରୋଷେଇଘର କାମ ସରିଲେ ଲୁଗା ପାଲଟି ଆସିଲେ ଯାଇ ମୋର ଦିଅଁ ପୂଜା ହେବେ । ଆଖିକୁ ତ ଆଉ ଦିଶୁନି – ସେଇ ବୋହୂ ସବୁ କରିବ । ଦିଅଁମାନଙ୍କୁ ଗାଧୋଇ ଦେବ । ପୋଛାପୋଛି କରି ଚନ୍ଦନ ସିନ୍ଦୂର ଲଗେଇଦେବ । ଫୁଲ ଲଗେଇ ଦେବ । ମୋ ହାତରେ ଧରେଇଦେଲେ ମୁଁ ଖାଲି ଘଣ୍ଟି ବଜେଇ ଦିଅଁଙ୍କୁ ଭୋଗ ଦେବି ।"

"ବୋହୂଟି ଆପଣଙ୍କର ଭାରି ଭଲ – ନୁହେଁ ମାଉସୀ ?" ଅନୁପମା କହିଲେ ।

"ବୋହୂ ନୁହଁରେ ମା' –ସିଏ କୋଉ ଜନ୍ମରେ ମୋର ଝିଅ ଥିଲା । ପୁଅଟି ମୋର ଆହୁରି ଭଲ । ଆଜିକାଲି ଯୁଗରେ କୋଉ ଚାକିରିଆ ପୁଅ ନିଜ ଭାରିଯାକୁ ବୁଢ଼ୀ ମା'ର ପାଖରେ ଛାଡ଼ିଦେଇ ସହର ବଜାର ଜାଗାରେ ହାତରେ ରାନ୍ଧିବାଢ଼ି ଖାଉଛି କହିଲ ? ପୁଅ ପାଇଁ ସିନା ବୋହୂ । ଯେତେ କହିଲି ବୋହୂକୁ ତୋ ପାଖକୁ ନେଇଯା– ତା'ର ଏକା ଜିଦି – ଆସିବ ଯଦି ଶାଶୂ ବୋହୂ ଦି'ଜଣ ଯାକ ଆସ । ନହେଲେ କେହି

ନାହିଁ। ଗାଆଁରେ ନିଜ ଘର, ନିଜ ବାରି। ବାରିରେ ପନିପରିବା, ଫୁଲଫଳ ଭର୍ତ୍ତି। ବାରିରେ ଥରେ ବୁଲି ଆସିଲେ ତରକାରୀର ଚିନ୍ତା ନଥାଏ। ଦିଅଁପୂଜା ପାଇଁ ଫୁଲ ଯାହାକୁ ଯେତେ। ପୁଅ କହିଲା, ଭୋବନିଶରରେ ସବୁ ମିଳିବ। ଯୋଉ ପରିବା କହିବୁ ସବୁ ଆଣିଦେବି। ତୋ ଦିଅଁମାନଙ୍କୁ ନେଇ କି ଚାଲ୍। ଦିଅଁପୂଜା ପାଇଁ ଯେତେ ଫୁଲ କହିବୁ ସବୁ ଆଣିଦେବି। ଗାଁରେ ଆମର ଘର ଥାଉଁ ଥାଉଁ ଏଠି ଦି' ବଖୁରା ଘରକୁ ଗଦାଏ ଟଙ୍କା ଗଣି ଦେଉଛି ମାସକୁ ମାସ। ଏ ବୁଢ଼ୀ ମାଆଟାକୁ ଖୁସି କରିବା ପାଇଁ ସେ ତା'ର ସାଧ୍ୟଠୁ ଅଧିକ କରୁଛି ପଛେ- କମ୍ କରୁନାହିଁ। ମାଆ ତା'ର ଦିଅଁ ପୂଜିବ ବୋଲି ରାତି ପାହାନ୍ତାରୁ କୁଆଡ଼େ କୁଆଡ଼େ ବୁଲି ଗଦାଏ ହେବ ଫୁଲ ନେଇ ଆସୁଛି। ଠାକୁରେ ମୋ ପୁଅକୁ କୋଟି ପରମାୟୁ ଦେଇଥାଆନ୍ତୁ।"

"ବୋଉ - ଏ ନାନୀଙ୍କୁ ଏଯାଏଁ ଦାଣ ଦୁଆରେ ଠିଆ କରି କଥା ହେଉଛନ୍ତି ? ଆସନ୍ତୁ ନାନୀ ଭିତରକୁ ଆସନ୍ତୁ। ବୋଉଙ୍କ ଆଖିକୁ ତ ଦିଶୁନି - ଗପୁଡ଼ି ମଣିଷ- ଶୁଣିବା ଲୋକଟେ ପାଇଗଲେ ଏମିତି କ'ଣ ନାଇଁ କ'ଣ ଗପି ଚାଲିଥିବେ।" ବୃଦ୍ଧାଙ୍କର ବୋହୂ ଜଣକ ଏତେବେଳେକେ ବାହାରି ଆସିଲେ। ଅନୁପମାଙ୍କୁ ସାଦରେ ଡାକିଲେ ଘର ଭିତରକୁ।

"ମାଉସୀଙ୍କର ଦିଅଁ କୋଉଠି ପୂଜା ହେଉଛନ୍ତି - ମୁଁ ଦେଖନ୍ତି।" ଅନୁପମା କହିଲେ।

"ବୋଉ ଯୋଉଠି- ବୋଉଙ୍କ ଦିଅଁ ବି ସେଇଠି। ଆମ ବାବୁଙ୍କର ତ ସବୁଠୁ ବଡ଼ ଦିଅଁ ତାଙ୍କ ବୋଉ।" ବୃଦ୍ଧା ରହୁଥିବା ପ୍ରକୋଷ୍ଠ ଭିତରକୁ ଗଲେ ଅନୁପମା। ଗୋଟିକିଆ ଖଟଟାରେ ବିଛଣା ଟେକା ହୋଇ ରହିଛି। ପ୍ରକୋଷ୍ଠର ଗୋଟିଏ କୋଣରେ ପ୍ଲାଷ୍ଟିକ୍‌ର ତିନି ଥାକିଆ ସେଲଫ୍ ଭିତରେ ଜଗନ୍ନାଥ, ବଳଭଦ୍ର, ସୁଭଦ୍ରା, ଦୁର୍ଗା, ଗଣେଶ, ଶିବ, ସରସ୍ୱତୀ, ଲକ୍ଷ୍ମୀଙ୍କ ସମେତ ଆହୁରି ଅନେକ ଦେବଦେବୀଙ୍କର ମୂର୍ତ୍ତି ଏବଂ ଫଟୋ ସଜଡ଼ା ହୋଇ ରହିଛି। ପାଖରେ ଦୀପ, ଧୂପଦାନୀ, ଘଣ୍ଟି, ଶଙ୍ଖ, ଚନ୍ଦନପେଡ଼ି ଇତ୍ୟାଦି ପୂଜା ସାମଗ୍ରୀ ଏବଂ ଫୁଲଝୁଡ଼ିରେ ଝୁଡ଼ିଏ ଫୁଲ। ଫୁଲ ସବୁ ମଉଳି ଆସିଲାଣି। ଟଗର, ମନ୍ଦାର, କନିଅର ଇତ୍ୟାଦି ଫୁଲ ଦିଶୁଛି। କିନ୍ତୁ ସେ ଝୁଡ଼ିରେ କଞ୍ଚନଫୁଲ ତ ଦିଶୁନାହିଁ ଗୋଟାଏ ହେଲେ। ଅନୁପମା ବୋଧହୁଏ ଭୁଲ୍ ଜାଗାକୁ ଚାଲି ଆସିଛନ୍ତି କଞ୍ଚନଫୁଲ ଚୋରର ସନ୍ଧାନରେ।

"ମୁଁ ଏବେ ଆସୁଛି ମାଉସୀ।" ଠାକୁରମାନଙ୍କୁ ମୁଣ୍ଡିଆଟିଏ ମାରି ଅନୁପମା ଉଠିଲେ।

"ଆଲୋ ବୋହୂ- ଏଇ ଝିଅ ଆଜି ପହିଲି କରି ଆସିଛି ଆମ ଘରକୁ। ତାକୁ

କ'ଣ ଟିକିଏ ଦେଲୁନି ?" ବୃଦ୍ଧା କହିଲେ ଆତିଥେୟତା ପ୍ରଦର୍ଶନ କରି।

ବୋହୂ ତୁରନ୍ତ ଆଦେଶ ପାଳନ କଲେ। ଖୁବ୍ କମ୍ ସମୟ ଭିତରେ ଗୋଟେ ପ୍ଲେଟ୍‌ରେ କିଛି ଖାଇବା ଜିନିଷ ନେଇ ଆସିଲେ।

"ନାଇଁ ନାଇଁ, ମୁଁ କିଛି ଖାଇବିନି।" ଅନୁପମା ଅନିଚ୍ଛା ପ୍ରକାଶ କଲେ।

"ଖାଆନ୍ତୁନା - ଗୋଟେ ନୂଆ ଜିନିଷ ଚାଖନ୍ତୁ।" ବୋହୂ କହିଲେ।

"କ'ଣ ଇଏ ?"

"କଞ୍ଚନଫୁଲର ବରା - ଆମ ବୋଉଙ୍କର ଭାରି ପ୍ରିୟ। ସେଇଥିପାଇଁ କୋଉଠୁ କେଜାଣି ଆମର ଇଏ ମେଞ୍ଚାଏ ଲେଖାଏଁ କଞ୍ଚନଫୁଲ ସବୁଦିନ ନେଇ ଆସୁଛନ୍ତି। କଞ୍ଚନଫୁଲର ବରା ଥିଲେ ବୋଉଙ୍କର ଆଉ କିଛି ତରକାରୀ ଲୋଡ଼ା ହୁଏ ନାହିଁ।" ବୋହୂଙ୍କ କଣ୍ଠରେ ଗଭୀର ଆତ୍ମତୃପ୍ତି।

ଚମକି ପଡ଼ିଲେ ଅନୁପମା। ଆଖିରେ ଲୁହ ଚାଲି ଆସିଲା। ଆହା - ତାଙ୍କର ଅତି ପ୍ରିୟ କଞ୍ଚନଫୁଲମାନଙ୍କର ତେବେ ସବୁଦିନ ଏଇ ପରିଣତି ହେଉଛି ।ନା - ସେ କେବେ ବି ପାରିବେନି। କଞ୍ଚନବତୀର ସାନଭାଇର ଭୂମିକାରେ ନିଜକୁ ସେ କଳ୍ପନା କରିପାରିବେନି। କିଛି ଗୋଟାଏ ବ୍ରତର ବାହାନା କରି ଆଉ କେବେ ଆସିବାର ପ୍ରତିଶ୍ରୁତି ଦେଇ ଅନୁପମା ଚାଲିଆସିଲେ ତାଙ୍କ ଘରୁ।

ଫେରିବା ବେଳକୁ କିନ୍ତୁ ମନ ଭିତରେ ଜମା ହୋଇଥିବା କ୍ଷୋଭ ତଥା ବିରକ୍ତିର କଳାମେଘ ଧୀରେ ଧୀରେ ଅପସରି ଯାଇଥିଲା। ମନେମନେ ସେ କହିଲେ, "ହେ ମୋର ପ୍ରିୟ କଞ୍ଚନଗଛ - ତୁ ଦୀର୍ଘଜୀବୀ ହ - ତୋର ଶାଖା ପ୍ରଶାଖା ଆହୁରି ବିସ୍ତାରିତ ହୋଇଯାଉ। ଅଜସ୍ର ଫୁଲରେ ଭରିଯାଉ ତୋର ସାରା ଅଙ୍ଗ। ଆୟୁଷ୍ମାନ୍ ହୁଅନ୍ତୁ ସେଇ ମାତୃଭକ୍ତ ଫୁଲଚୋରମାନେ ଆଉ ଶାଶୂ ଅନୁରାଗିଣୀ ସ୍ନେହମୟୀ ବଧୂମାନେ।

# ଭିକ୍ଟ୍ରି ଷ୍ଟାଣ୍ଡ୍

ସାନ୍ଧ୍ୟ ଭ୍ରମଣରେ ଆସି ପାର୍କ୍‌ର ସେହି ନିର୍ଦ୍ଦିଷ୍ଟ ସ୍ଥାନଟିରେ ସବୁଦିନ କିଛି ସମୟ ବସେ ଅନିମେଷ। ସେଇଠି ବସିବାକୁ ତାକୁ ଭାରି ଭଲଲାଗେ। ସୁନା ରଙ୍ଗର ଫୁଲରେ ବୋଝେଇ ହୋଇ ଐଶ୍ୱର୍ଯ୍ୟମୟୀ ଦିଶୁଥିବା ସୁନାରିଗଛର ପାଖ ସେଇ ଜାଗା। ସବୁଦିନ ସେଇ ଗଛ ପାଖରେ ବସିବସି ଗଛଟି ପ୍ରତି ମଧ ମାୟା ଲାଗିଯାଇଛି ଅନିମେଷର। ଅତ୍ୟନ୍ତ ଶ୍ରଦ୍ଧାର ସହିତ ଗଛଟିକୁ ମନେ ମନେ ନାଁ ଟିଏ ଦେଇଛି ସେ - ଐଶ୍ୱର୍ଯ୍ୟା। ଲାଇଟ୍ ପୋଷ୍ଟ୍ ପାଖାପାଖି ସେଇ ଗଛଟି ରହିଥିବାରୁ ଏବଂ ପାଖାପାଖି ଆଉ କୌଣସି ଗଛବୁଦାର ଆଡୁଆଳ ନଥିବାରୁ କିଛି ଅନ୍ତରଙ୍ଗ ମୁହୂର୍ତ୍ତ କଟାଇବାର ଅଭିଳାଷ ନେଇ ପାର୍କକୁ ଆସୁଥିବା ତରୁଣ ତରୁଣୀ ଅଥବା ପ୍ରଣୟୀଯୁଗଳ ସେ ସ୍ଥାନଟିକୁ ପସନ୍ଦ କରନ୍ତି ନାହିଁ। ଘାସ ଗାଲିଚାର ଆସ୍ତରଣ ସେ ପର୍ଯ୍ୟନ୍ତ ପହଞ୍ଚିନଥିବା ହେତୁ ସନ୍ଧ୍ୟା ସମୟରେ ପାର୍କ୍‌ର ଗହଳି ମଧରେ ବି ସେଇ ଗଛପାଖ ଜାଗା ତୁଳନାତ୍ମକ ଭାବରେ ନିରୋଳା ଥାଏ। କେବେ କେବେ ଛୋଟ ଛୋଟ ପିଲାମାନେ ଦୌଡ଼ାଦୌଡ଼ି କରି ଖେଳୁ ଖେଳୁ ଚାଲିଆସନ୍ତି ସେପାଖକୁ। ନୂଆ କରି ଚାଲି ଶିଖୁଥିବା ଶିଶୁମାନେ ମଧ ତାଙ୍କ ଜୋତାର କୁଁ କୁଁ ଶବ୍ଦ କରି ଆଗେଇ ଆସନ୍ତି ଅନିମେଷ ଆଡ଼କୁ। ତାକୁ ଭାରି ଭଲ ଲାଗେ ଦେଖିବାକୁ। ଗଛ ତଳେ ବସି ଭଳି ଭଳି ଲୋକଙ୍କୁ ଲକ୍ଷ୍ୟ କରେ। ସେମାନଙ୍କର ହସଖୁସି, ଆଳାପ ଆଲୋଚନା କିଛି କିଛି ଛିଟିକା ଆସେ ତା ପାଖକୁ। ଆନମନା ହୋଇଯାଏ ସେ, ଭିଡ଼ ଭିତରେ ଖୁବ୍ ଏକୁଟିଆ ଲାଗେ ନିଜକୁ।

ନିଜ ପରିବାରଠାରୁ ଦୂରରେ ରହି ଏ ସହରରେ ଚାକିରି କରେ ଅନିମେଷ। ପାଠ ପଢୁଥିବା ପିଲାମାନଙ୍କୁ ଛାଡ଼ି ତା' ପତ୍ନୀ ଅନିନ୍ଦିତା ଆସିପାରେନା ତା' ପାଖକୁ। ପୁଅର ଅଷ୍ଟମ ଶ୍ରେଣୀ, ଝିଅର ଷଷ୍ଠ। ଅନିମେଷର ବାପା ସରକାରୀ ହାଇସ୍କୁଲ୍‌ର ଅବସରପ୍ରାପ୍ତ ପ୍ରଧାନ ଶିକ୍ଷକ। ତାଙ୍କର ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ରହି ପିଲା ଦୁହେଁ ବେଶ୍ ଭଲ ପଢୁଛନ୍ତି। ଚାକିରିରୁ ଅବସର ନେବା ପରେ ବାପା ଗାଆଁରେ ରହୁଛନ୍ତି ସପରିବାର।

ତାଙ୍କ ଗାଆଁ ପାଖ ସ୍କୁଲଟିର ବେଶ୍ ସୁନାମ ଅଛି । ତେଣୁ ପିଲାମାନଙ୍କର ପାଠପଢ଼ା ନେଇ ଭାବିବାକୁ ପଡ଼ିନାହିଁ ଏ ପର୍ଯ୍ୟନ୍ତ । ଏଣିକି ଭାବିବାକୁ ପଡ଼ିବ । ଅନିମେଷର ଇଚ୍ଛା ତାଙ୍କର ପରିବାରର ସମସ୍ତେ ଏକାଠି ରହନ୍ତେ । ପିଲାମାନେ ସହରରେ ଭଲ ସ୍କୁଲ୍‌ରେ ପଢ଼ନ୍ତେ । ସେମାନଙ୍କର ଭବିଷ୍ୟତକୁ ସୁନ୍ଦର ରୂପରେଖ ଦେବା ପାଇଁ କେତେ କ'ଣ ସୁବିଧା ସୁଯୋଗ ରହିଛି ସହରରେ । ତା'ପିଲାମାନେ ତା'ଭଳି ସାଧାରଣ ଚାକିରିଆଟିଏ ହୋଇ ରୁହନ୍ତୁ ବୋଲି ଅନିମେଷ ଆଦୌ ଚାହେଁ ନାହିଁ । ବାପା କିନ୍ତୁ ରାଜି ହୁଅନ୍ତି ନାହିଁ ସହରକୁ ଆସିବାକୁ । ଚାକିରି ସୂତ୍ରରେ ଜୀବନସାରା ଏଣେ ତେଣେ ଘୂରି ବୁଲିଛନ୍ତି । ଜନ୍ମମାଟି ପ୍ରତି ତାଙ୍କର ଯାହା କର୍ତ୍ତବ୍ୟ ସେ କରିନାହାନ୍ତି । ଶେଷ ଜୀବନ ସେ ଗାଆଁରେ କଟାଇବେ ଏବଂ ତାଙ୍କ ଦ୍ୱାରା ଯାହା କିଛି ସମ୍ଭବ ତାଙ୍କ ଅଞ୍ଚଳର ଉନ୍ନତିମୂଳକ କାମରେ ସହଯୋଗ କରିବେ । ବାପାଙ୍କୁ ତାଙ୍କ ମତରୁ ଜମା ଅଲଗା କରିହେବ ନାହିଁ । ଖୁବ୍ ଦୃଢ଼ପ୍ରତିଜ୍ଞ ମଣିଷ ସେ । ବୋଉର ନିଜସ୍ୱ ମତ ବୋଲି କିଛି ନାହିଁ । ବାପା ଯାହା କହିବେ, ତାହା ହିଁ ତା' ପାଇଁ ବେଦର ଗାର । ଆଉ ଶାଶୂ ଶ୍ୱଶୁରଙ୍କର ଏକାନ୍ତ ଅନୁଗତା ବଧୂ ଅନିନ୍ଦିତା । ସେମାନଙ୍କୁ ଛାଡ଼ି ସ୍ୱାମୀଙ୍କ ପାଖକୁ ଆସି ସହରରେ ରହିବା ପାଇଁ ରାଜି ହେବ ନାହିଁ । ଅନିମେଷ ବି ସେଥିପାଇଁ ବାଧ କରିପାରିବନି ତାକୁ ।

ଦୀର୍ଘଶ୍ୱାସ ଛାଡ଼ିଲା ଅନିମେଷ । ଘରକଥା ଭାବିଲେ ମନ ଉଦାସ ହୋଇଯାଏ । କେମିତି ଶନିବାର ହେବ - ସେ ଗାଆଁକୁ ଯିବ, ନିଜ ପରିବାର ଗହଣରେ ଦିନଟିଏ ହେଉ ପଛେ କଟେଇବ - ସେଇଥିପାଇଁ ଉତ୍କଣ୍ଠିତ ହୋଇ ଚାହିଁ ରହିଥାଏ ସେ । ବାପାଙ୍କର ସସ୍ନେହ ଜିଜ୍ଞାସା, ବୋଉର ହାତ ପରଷା, ଅନିନ୍ଦିତାର ଅନୁରାଗଭରା ପରିଚର୍ଯ୍ୟା ଆଉ ପୁଅଝିଅ ଦୁହିଁଙ୍କର ଅଳି ଆବଦାର ଭିତରେ ସମୟ କେମିତି ବିତିଯାଏ ଜଣା ପଡ଼େନାହିଁ । ଘରକୁ ଗଲାବେଳେ ଭାବି ଭାବି ଯାଇଥାଏ - ବାପାଙ୍କୁ କହିବ, ଏଥର ସହରରେ ଆଉ ଟିକେ ଭଲଘରଟିଏ ଭଡ଼ାରେ ନେବ ସେ । ବାପା, ବୋଉ, ଅନିନ୍ଦିତା, ପିଲା ଦୁହେଁ - ସମସ୍ତ ଯାଇ ରହିବେ ତା' ପାଖରେ । ଗାଆଁକୁ ଆସିଲେ କିନ୍ତୁ ସେକଥା ସେ କହିପାରେ ନାହିଁ । ବାପା ଖୁବ୍ ଆନନ୍ଦରେ ଅଛନ୍ତି । ଗାଆଁରେ ତାଙ୍କର ଖୁବ୍ ଖାତିର୍ । ସବୁ କଥାରେ ଗାଆଁ ଲୋକେ ତାଙ୍କର ପରାମର୍ଶ ଲୋଡ଼ନ୍ତି । ବାପା ବିଲବାଡ଼ି, ପୋଖରୀ, ବଗିଚା କଥା ବୁଝନ୍ତି । ଗାଆଁର ନିରକ୍ଷର ଲୋକଙ୍କୁ ମାଗଣାରେ ପଢ଼ାନ୍ତି । ଗାଆଁରେ ଲାଇବ୍ରେରୀ କରିଛନ୍ତି । ସ୍ୱାସ୍ଥ୍ୟକେନ୍ଦ୍ର ପାଇଁ ଲାଗିଛନ୍ତି । ସରପଞ୍ଚଙ୍କୁ କହି ଗାଆଁ ରାସ୍ତାକୁ ମଧ୍ୟ ପକ୍କା କରିଛନ୍ତି । ଆହୁରି କେତେ କ'ଣ ସ୍ୱପ୍ନ ଦେଖନ୍ତି ସିଏ ଗାଆଁକୁ ନେଇ । ସେଇ ସ୍ୱପ୍ନ ଭାଙ୍ଗିଦେବାର ଅଧିକାର ଅନିମେଷର ନାହିଁ ।

ଘରକଥାରୁ ମନ ଓହରାଇ ଆସିଲା ଅନିମେଷ । ପୁଣି ଥରେ ପାର୍କର ଲୋକଙ୍କ

ପ୍ରତି ନଜର ଦେଲା। ତା' ବସିବା ଜାଗାର ଅଳ୍ପ ଦୂରରେ ଥିବା ଗୋଟେ ଲମ୍ବା ସିମେଣ୍ଟ ବେଞ୍ଚରେ ସବୁଦିନ ଆସି ବସୁଥିବା ଚାରିଜଣ ବ୍ୟକ୍ତି ଆଜି ମଧ ବସିଗଲେଣି। ସାନ୍ଧ୍ୟ ଭ୍ରମଣ ନାମକୁ ମାତ୍ର - ଆଳାପ ଆଲୋଚନା ଅଧିକ। ସେମାନେ ପରସ୍ପରର ବନ୍ଧୁ, ଏକଥା ସେମାନଙ୍କ କଥାବାର୍ତ୍ତାରୁ ଜଣାଯାଏ। ସେମାନେ ସମସ୍ତେ ସମାଜରେ ସୁପ୍ରତିଷ୍ଠିତ - ଏକଥା ମଧ ବୁଝି ହୋଇଯାଏ ସେମାନଙ୍କ ଢଙ୍ଗଢାଙ୍ଗରୁ। ମେଦ ବହୁଳ ଶରୀରକୁ ଟ୍ରାକ୍‌ସୁଟ୍ ମଧରେ ପୂରାଇ, ସମଗ୍ର ଶରୀରର ବୋଝକୁ ନାଇକ୍ ଜୋତା ପିନ୍ଧା ପାଦ ଦୁଇଟି ଉପରେ ଲଦି ନିଜକୁ ଫିଟ୍ ରଖିବା ପାଇଁ ଯେଉଁ ଦୟନୀୟ ପ୍ରଚେଷ୍ଟା ସେମାନେ କରୁଥାଆନ୍ତି, ତାହା ଅନେକଙ୍କ ପାଇଁ ହସର ଖୋରାକ ଯୋଗାଇଥାଏ। ଯଥାକଥା କରି ଜଗିଙ୍ଗ୍ ତଥା ବ୍ୟାୟାମ୍ ସାରିଦେଇ ଚାରିଜଣଯାକ ଏକାଠି ଆସି ବସନ୍ତି ସିମେଣ୍ଟ୍ ବେଞ୍ଚରେ। ଜଣେ ବିଚାରପତି, ଜଣେ ପ୍ରଫେସର୍, ଜଣେ ଆଇପିଏସ୍ ଅଫିସର, ଆଉ ଜଣେ ଇଞ୍ଜିନିୟର। ବେଶ୍ ଉଚ୍ଚ ପଦବୀ ତଥା କ୍ଷମତାରେ ଥିବାବେଳେ ସମସ୍ତେ ଅବସର ଗ୍ରହଣ କରିଛନ୍ତି। ହଠାତ୍ କରି ସେମାନଙ୍କର ଅବସର ଗ୍ରହଣକୁ ମାନିନେଇ ପାରୁନାହାଁନ୍ତି। ପରସ୍ପର ନିକଟରେ ସେମାନେ ନିଜ ନିଜର କ୍ଷୋଭ ପ୍ରକାଶ କରନ୍ତି।

"ବୁଝିଲୁ ବ୍ୟୋମକେଶ, ଆମ ଦେଶରେ କେତେ ଶୀଘ୍ର ଲୋକମାନଙ୍କୁ ଅକର୍ମଣ୍ୟ ବୋଲି ଷ୍ଟାମ୍ପ୍ ମାରିଦିଆଯାଉଛି କହ ତ? ବାହାର ଦେଶମାନଙ୍କରେ କିନ୍ତୁ ଏମିତି ନାହିଁ। ଷାଠିଏ ବର୍ଷ ପରେ ସେ ଦେଶମାନଙ୍କରେ ଜୀବନ ଯେମିତି ନୂଆ କରି ଆରମ୍ଭ ହୁଏ।" ଆମେରିକାରେ ଥିବା ପୁଅବୋହୂଙ୍କ ପାଖରେ ଛ' ମାସ ରହି ନିକଟରେ ଦେଶକୁ ଫେରି ଆସିଥିବା ଇଞ୍ଜିନିୟର ନାରାୟଣ ପାତ୍ର କହନ୍ତି।

"ସତକଥା ତ - ଷାଠିଏ ବର୍ଷରେ ସତରେ କିଏ କ'ଣ ବୁଢ଼ା ହୋଇଯାଉଛି, ଅକର୍ମଣ୍ୟ ହୋଇଯାଉଛି? ମୁଁ ତ ଏବେ ବି ପୂରା ଫିଟ୍ ଅଛି। ଏକାବେଳକେ ପାଞ୍ଚ କିଲୋମିଟର ଚାଲିପାରୁଛି। ଯାହା ଖାଉଛି ହଜମ ହୋଇଯାଉଛି। ଦୃଷ୍ଟିଶକ୍ତି ବି ଠିକ୍‌ଠାକ୍ ଅଛି। କିନ୍ତୁ ସରକାରୀ ହିସାବରେ ମୁଁ ଅକର୍ମଣ୍ୟ ହୋଇଗଲି।" ଅବସରପ୍ରାପ୍ତ ଆଇପିଏସ୍ ଅଫିସର ଦେବକୀନନ୍ଦନ ରାୟ ଚୂଡ଼ାମଣି କ୍ଷୋଭ ପ୍ରକାଶ କରନ୍ତି।

"ମୋର ବି ସେଇଆ ମନେହୁଏ। ଖୁବ୍ ଅନ୍ୟାୟ ଏ ପ୍ରକାର ବ୍ୟବସ୍ଥା। ଏଇ ନିୟମ କେବଳ ଚାକିରିଆଙ୍କ ପାଇଁ। କିନ୍ତୁ ଆମର ନେତାମାନଙ୍କ ପାଇଁ ତ ଅବସର ନେବାର ସମୟସୀମା ଧାର୍ଯ୍ୟ ହୋଇନାହିଁ। ନେତାଟିଏ ଆଜୀବନ ନେତା। ବୟସ ଭାରରେ ଠିକ୍ ଭାବରେ ପାହୁଣ୍ଡେ ଚାଲି ପାରୁନଥିଲେ କି ସ୍ପଷ୍ଟ ଭାବରେ କଥା କହିପାରୁନଥିଲେ ବି ସେ ଆମ ସମାଜର ମଉଡ଼ମଣି, ଆମର ଭାଗ୍ୟବିଧାତା ହୋଇ ରହିଥିବେ। ଖୁବ୍ ଅନ୍ୟାୟ କଥା।" ସାରାଜୀବନ ବିଚାରପତି ଆସନରେ ବସି ନ୍ୟାୟ

ଅନ୍ୟାୟକୁ ବିଚାରର ତରାଜୁରେ ମାପି ରାୟ ଶୁଣାଉଥିବା ଅବସରପ୍ରାପ୍ତ ବିଚାରପତି ରଘୁନାଥ ମିଶ୍ର ତାଙ୍କର ଖେଦ ପ୍ରକଟ କରନ୍ତି।

"ମୁଁ କିନ୍ତୁ ସରକାରୀ ଘୋଷଣାକୁ ଖାତିର୍ କରେ ନାହିଁ। ଜୀବନସାରା ଯାହା କରିଆସିଛି ଏବେ ବି ସେଇଆ କରୁଛି। ମୋର ପଢ଼ାପଢ଼ି, ବହିଲେଖା ଚାଲିଛି। ଏବେ ବି ମୋ ପାଖକୁ ରିସର୍ଚ୍ଚ ସ୍କଲାର୍‌ମାନେ ଆସୁଛନ୍ତି ଗାଇଡାନ୍ସ ନେବାକୁ।ବିଭିନ୍ନ ଅନୁଷ୍ଠାନ ନିମନ୍ତ୍ରଣ କରୁଛନ୍ତି ସଭାରେ ବକ୍ତୃତା ଦେବାକୁ। ମାସରେ କମ୍‌ସେ କମ୍ ପନ୍ଦରଟା ସଭାରେ ମଞ୍ଚମଣ୍ଡନ କରିବାକୁ ପଡୁଛି।" ପ୍ରଫେସର ବ୍ୟୋମକେଶ ସାମନ୍ତରାୟଙ୍କ କଣ୍ଠରେ ଆତ୍ମସନ୍ତୋଷ ନୁହେଁ, ଆତ୍ମବଡ଼ିମା ହିଁ ପ୍ରକଟିତ ହେଉଥିଲା।

ଅନ୍ୟମାନେ କାହିଁକି ପଛରେ ରହିବେ ? ନିଜ ନିଜର ବଡ଼ପଣ ବଖାଣିବାର ପ୍ରତିଯୋଗିତା ଆରମ୍ଭ ହୋଇଗଲା। ଇଞ୍ଜିନିୟର ନାରାୟଣ ପାତ୍ର ଗର୍ବରେ ମଇଦାନକୁ ଡେଇଁ ପଡ଼ିଲେ।

"ମୋର ବାବା ସେ ସଭା ସମିତି, ଭାଷଣବାଜି, ବହିପଢ଼ାରେ ଏତେ ଟିକେ ଆଗ୍ରହ ନାହିଁ, ଭାରି ବୋରିଂ ଲାଗେ। ମୋ ମିସେସ୍ ବି ଭଲପାଏନା ସେସବୁ। ମୋର ରିଟାୟାର୍ ହେବା ପରେ ପରେ ୱାର୍ଲଡ୍ ଟୁର୍‌ରେ ବାହାରିଗଲି ସସ୍ତ୍ରୀକ। ଆମକୁ କିଛି ବି କରିବାକୁ ପଡ଼ିନି। ପିଲାମାନେ ସବୁ ବ୍ୟବସ୍ଥା କରିଥିଲେ। ବଡ଼ ପୁଅବୋହୂଙ୍କ ପାଖରେ କାନାଡ଼ାରେ ତିନି ମାସ, ସାନ ଝିଅ ଜ୍ୱାଇଁଙ୍କ ପାଖରେ ଅଷ୍ଟ୍ରେଲିଆରେ ଦି' ମାସ ରହିଲୁ। ସାନପୁଅ ପାଖରେ ଫ୍ରାନ୍ସରେ ପନ୍ଦରଦିନ ମାତ୍ର ରହିଲୁ। ବୁଲାବୁଲି ଢ଼େର୍ ହେଲା। ମଝିଆଁ ପୁଅ ଆଉ ବଡ଼ଝିଅ ମୁହଁ ଫୁଲାଇଛନ୍ତି ତାଙ୍କ ପାଖକୁ ଯାଇନୁ ବୋଲି। ମିସେସ୍ କହିଲା, "ହଁ, ଇଣ୍ଡିଆରେ ତ ଅଛନ୍ତି। ଦିଲ୍ଲୀ, ହାଇଦ୍ରାବାଦ କୋଉ ଦୂରବାଟ ଯେ। ଯେତେବେଳେ ମନ ଯାଇପାରିବ, ଫ୍ଲାଇଟ୍‌ରେ ଗଲେ ଅବା କେତେ ସମୟ ଲାଗିବ !"

"ମୋର କିନ୍ତୁ କୁଆଡ଼େ ଘୁଞ୍ଚିବାର ଉପାୟ ନାହିଁ। ଚାକିରିକାଳ ଭିତରେ ଘର ଖଣ୍ଡେ କରିଥିଲି ଯେ, ହୁଲୁସ୍ଥୂଲ ପଡ଼ିଯାଇଥିଲା କୁଆଡ଼େ ରାଜକୀୟ ପ୍ରାସାଦ ବନେଇଥିଲି ବୋଲି। ଆମର ପ୍ରିନ୍ସ ଆଉ ପ୍ରିନ୍ସେସ୍‌ମାନଙ୍କର ପସନ୍ଦ ହେଲା ନାହିଁ ବାପାଙ୍କ ଆଇଡ଼ିଆରେ ତିଆରି ହୋଇଥିବା ଘର। ମଲ୍‌ଟି ନ୍ୟାସନାଲ୍ କମ୍ପାନୀରେ ଏକ୍‌ଜିକ୍ୟୁଟିଭ୍ ପୋଷ୍ଟରେ ଅଛନ୍ତି – ଲକ୍ଷ ଲକ୍ଷ ଟଙ୍କା ରୋଜଗାର। ସମସ୍ତଙ୍କର ଏବେ ଅଲଗା ଅଲଗା ଘର ତିଆରି ଚାଲିଛି। ସବୁ ପିଲାଙ୍କର ଇଚ୍ଛା – ବାପା ତାଙ୍କ ଘରେ ରହିବେ। ମୋ ପାଇଁ ସମସ୍ତେ ରୁମ୍‌ଟିଏ ରଖିଛନ୍ତି ପ୍ଲାନ୍‌ରେ। ମାଆ ତ ନାହିଁ – ବାପା ଏକୁଟିଆ କାହିଁକି ଏତେ ବଡ଼ ଘରଟାରେ ରହିଥିବେ ? ସେ ଘରଟାକୁ ଭଡ଼ା ଲଗେଇ ଦେଇ ବାପା ପାଳି କରି ସମସ୍ତଙ୍କ ପାଖରେ ରହିବେ। ଆରେ, ମୁଁ କାହିଁକି ମୋ ଘର ଛାଡ଼ି ତୁମ ଘରେ ରହିବାକୁ ଯିବି ?

ମୋ ଘରେ ମୁଁ ରଜା। ଲୋକବାକ ରଖି ଆରାମ୍‌ରେ ଚଳି ଯାଉଛି। ବର୍ଷେ ଦି' ବର୍ଷରେ କେବେ ଥରେ ଅଧେ ଦେଶକୁ ଆସିବେ କି ନାହିଁ, ବାପା ଯାଉଥିଲେ ତାଙ୍କ ଘରେ ରହିବାକୁ। ଏ ରିଟାୟାର୍ ଲୋକଟାକୁ ୱାଚ୍‌ମ୍ୟାନ୍ ଚାକିରି ଦେବାକୁ ଚାହୁଁଛନ୍ତି ପିଲାମାନେ। ହାଃ ହାଃ ହାଃ....” ଆଇପିଏସ୍ ଦେବକୀ ନନ୍ଦନଙ୍କ ହସରେ ଆଖପାଖର ଲୋକମାନେ ତାଙ୍କୁ ଫେରିପଡ଼ି ଚାହିଁଲେ।

ସମାଜର ବରିଷ୍ଠ ନାଗରିକ ଏଇ ଚାରି ବନ୍ଧୁଙ୍କର କଥାବାର୍ତ୍ତା ଶୁଣି ଅନିମେଷ ସଙ୍କୁଚିତ ହୋଇଯାଏ। ନିଜକୁ ଖୁବ୍ ନଗଣ୍ୟ ମନେହୁଏ। ଜୀବନରେ ଯାହାକୁ ସଫଳତା ବୋଲି କୁହାଯାଇପାରିବ - ସେଭଳି ସଫଳତାର ଆଖପାଖରେ ବି ପହଞ୍ଚି ପାରିନାହିଁ ସେ। ଜେଜେ ଥିଲେ ସ୍ୱାଧୀନତା ସଂଗ୍ରାମୀ। ଦେଶ ପାଇଁ ନିଜ ଜୀବନକୁ ଉତ୍ସର୍ଗ କରି ଦେଇଥିଲେ। ତାଙ୍କରି ଆଦର୍ଶରେ ଅନୁପ୍ରାଣିତ, ତାଙ୍କର ଅନୁଗତ ପୁତ୍ର ଅନିମେଷର ବାପା ଖୁବ୍ କଷ୍ଟରେ ପାଠ ପଢ଼ିଥିଲେ। ଭଲ ପଢୁଥିଲେ ମଧ୍ୟ ତାଙ୍କୁ ସାହାଯ୍ୟ କରିବାକୁ କେହି ନଥିଲେ। ପାଠ ସରୁ ନ ସରୁଣୁ ତାଙ୍କ ବାପା ଚାଲିଗଲେ। ପରିବାରର ଦାୟିତ୍ୱ ନେବାକୁ ହେଲା ଖୁବ୍ କମ୍ ବୟସରେ। ବିଧବା ମାଆ ତଥା ପାଞ୍ଚ ଜଣ ଭାଇଭଉଣୀଙ୍କୁ ଚଳାଇବାକୁ ବାହାରକୁ ଯିବାକୁ ପଡ଼ିଲା। ଶିକ୍ଷକତାକୁ ସେ ପ୍ରଥମେ ବୃତ୍ତି ଭାବରେ ଗ୍ରହଣ କରିଥିଲେ ମଧ୍ୟ ସମୟ କ୍ରମେ ତାହା 'ବ୍ରତ'ରେ ପରିଣତ ହୋଇଗଲା। ସହକାରୀ ଶିକ୍ଷକ ହୋଇ ଚାକିରିରେ ପଶିଥିଲେ। ଅବସର ଗ୍ରହଣର କିଛି ବର୍ଷ ପୂର୍ବରୁ ସେ ପ୍ରଧାନଶିକ୍ଷକ ପଦବୀକୁ ଉନ୍ନୀତ ହୋଇଥିଲେ। ଚାରୋଟି ପୁଅଝିଅ ତଥା ପାଞ୍ଚଜଣ ଭାଇଭଉଣୀଙ୍କୁ ମଣିଷ କରିବାରେ ତାଙ୍କର ସମସ୍ତ ସମୟ ତଥା ସଞ୍ଚିତ ଅର୍ଥ ସେ ଖର୍ଚ୍ଚ କରିଦେଇଛନ୍ତି। ତାଙ୍କ ବୋଉଙ୍କର ଦେହାନ୍ତ ପରେ ଭାଇମାନେ ଅଲଗା ହୋଇଯାଇଛନ୍ତି। ଭଉଣୀମାନେ ବାହା ହୋଇ ନିଜ ସଂସାର ଜଞ୍ଜାଳ ଭିତରେ ବୁଡ଼ି ରହିଛନ୍ତି। ବାପାଙ୍କର ସବୁଠାରୁ ଭଲଗୁଣ- ନିଜର  ଯାହା ପ୍ରତି ଯାହା କର୍ତ୍ତବ୍ୟ ଯଥାସାଧ୍ୟ ପାଳନ କରନ୍ତି। କାହାଠାରୁ ଏତେ ଟିକେ ପ୍ରତିଦାନର ଆଶା ତାଙ୍କର ନଥାଏ। ସେ ଭାଇଭଉଣୀ ହୁଅନ୍ତୁ ବା ପୁଅଝିଅ, ଅଥବା ଛାତ୍ରଛାତ୍ରୀ।

ଅନିମେଷ ବାପାଙ୍କର ଏକମାତ୍ର ପୁଅ। ଏଇ ଭଦ୍ରଲୋକମାନଙ୍କ ପୁଅଝିଅଙ୍କ ଭଳି ନିଜର ବାପାମାଆଙ୍କ ପାଇଁ କିଛି ବି କରିପାରିନି ସିଏ। ଗାଆଁ ଘରଟିର ଅବସ୍ଥା ବିଶେଷ ଭଲ ନୁହେଁ। ସାନଭାଇମାନଙ୍କୁ ପୈତୃକ ଭିଟାର ଭଲ ଅଂଶ ତକ ଦେଇ ଦେଇଛନ୍ତି ଉଦାରପନ୍ଥୀ ମଣିଷ ହୃଦୟବଲ୍ଲଭ ପଟ୍ଟନାୟକ - ଅନିମେଷର ବାପା। ଇଚ୍ଛା ଥିଲେ ମଧ୍ୟ ଗାଆଁ ଘରଟିକୁ ସଜାଡ଼ି ପାରୁନି ଅନିମେଷ। ସ୍ୱାର୍ଥପର ଭାବରେ ବାପାଙ୍କୁ ତାଙ୍କର ଯଥାର୍ଥ ପ୍ରାପ୍ୟରୁ ବଞ୍ଚିତ କରି ଅଲଗା ହୋଇଯାଇଥିବା ଦାଦା ଦୁହିଁଙ୍କର ଅବସ୍ଥା ଏବେ ଶୋଚନୀୟ।

ତାଙ୍କ ଆଗରେ ଭଲ ଘର ତିଆରି କରିବାକୁ ଚାହିଁବେ ନାହିଁ ହୃଦୟବଲ୍ଲଭ। କିନ୍ତୁ ସାରାଜୀବନ ଅନ୍ୟମାନଙ୍କ ପାଇଁ ତ୍ୟାଗ କରି ଆସିଥିବା ବାପା ମାଆଙ୍କର ପରିଣତ ବୟସରେ ଟିକେ ଆରାମ ଓ ଯତ୍ନରେ ରହିବାର ଅଧିକାର ଅଛି - ଏକଥା ଅନିମେଷ ବୁଝାଇ ପାରେନାହିଁ ବାପାଙ୍କୁ। ନିଜର ପରିବାରଠାରୁ ଅଲଗା ହୋଇ ସବୁଦିନ ରହିବାକୁ ତାକୁ ଆଉ ଭଲ ଲାଗୁନି। ଏଇ ସହରରେ ଭଡ଼ା ଘରଟିଏର ସନ୍ଧାନରେ ଅଛି ସେ। ନିଜେ ଏବେ ସିଏ ଯୋଉଠି ରହୁଛି - ସେଠିକୁ ତା'ର ପରିବାରକୁ ଆଣି ରଖିପାରିବ ନାହିଁ। ବାପାବୋଉଙ୍କ ସମେତ ତା' ସ୍ତ୍ରୀ ଅନିନ୍ଦିତା ଓ ପୁଅ ଝିଅ ଦୁହିଁଙ୍କୁ ନେଇ ଯୋଉଠି ସେ ସୁବିଧାରେ ଚଳିପାରିବ - ସେମିତି ଘରଟିଏ ଖୋଜୁଛି ସେ। ଏ ସହରରେ ଘର ତ ଅନେକ ରହିଛି କିନ୍ତୁ ତା'ର ସାମର୍ଥ୍ୟ ମଧ୍ୟରେ ଭଡ଼ାଘରଟିଏ ମିଳିବା ଖୁବ୍ କଷ୍ଟ। ଯୋଉଠି ତା'ର ଆବଶ୍ୟକତା ଅନୁଯାୟୀ ସବୁ ବ୍ୟବସ୍ଥା ରହିଛି - ସେ ଘରର ଭଡ଼ା ବହୁତ ଅଧିକ । ଯୋଉଠି ଭଡ଼ା କମ୍ ଅସୁବିଧା ବହୁତ ଅଧିକ। ନିଜେ ଚାରିଆଡ଼େ ଆଖି ବୁଲେଇବା ସହିତ ଅଫିସ୍‌ର ସହକର୍ମୀମାନଙ୍କୁ,ପରିଚିତ ଅନେକଙ୍କୁ କହି ରଖିଛି। ମନ ମୁତାବକ ଘରଟିଏ ମିଳିଗଲେ ବାପାଙ୍କୁ ଯେମିତି ହେଲେ ରାଜି କରେଇ ସମସ୍ତଙ୍କୁ ସହରକୁ ଆଣିବାକୁ ପଡ଼ିବ।

---

ଅଫିସ୍ ସମୟ ପରେ ବସାଘରକୁ ଫେରିବାକୁ ଆଦୌ ଇଚ୍ଛା ହୁଏନି ଅନିମେଷର। ତାକୁ ସେଠି କେହି ଅପେକ୍ଷା କରି ବସିଥିବ। ତା'ର ନିକଟତମ ପଡ଼ୋଶୀ ହେଉଛନ୍ତି ଘରମାଲିକ। ମାଲିକଙ୍କ ଅପେକ୍ଷା ମାଲିକାଣୀଙ୍କର ପ୍ରଚଣ୍ଡ ଆଧିପତ୍ୟ ସେ ଘରେ। ସକାଳ ହେବାଠାରୁ ରାତି ଏଗାରଟା ଯାଏ କିଛି ନା କିଛି କଥା ନେଇ ଚିତ୍କାର କରୁଥିବେ ସେ। ତାଙ୍କର କଥା କହିବାର ଢଙ୍ଗଟା ବି ସେହି ପ୍ରକାରର। ତାଙ୍କ ପରିବାରର ଅନ୍ୟ ସଦସ୍ୟମାନେ ମଧ୍ୟ କେହି କମ୍ ନୁହନ୍ତି ହୋହଲ୍ଲା କରିବାରେ। ଘରର ସାଧାରଣ କଥାବାର୍ତ୍ତା ବି କଳି ଝଗଡ଼ା ଭଳି ମନେହୁଏ। ଉଚ୍ଚ ଭଲ୍ୟୁମ୍‌ରେ ଟିଭି ଦେଖିବା, ମ୍ୟୁଜିକ୍ ଶୁଣିବା ମଧ୍ୟ ସେମାନଙ୍କର ଅନ୍ୟତମ ହବି। ଆଉ କାହାର ଯେ ଏଥିରେ କିଛି ଅସୁବିଧା ହେଉଥିବ, ସେକଥା ବିଚାର କରିବାର ବୋଧବୁଦ୍ଧି ସେମାନଙ୍କର ନାହିଁ। ପିଲାଦିନରୁ ନୀତି ନିୟମ ତଥା ଶୃଙ୍ଖଳା ମଧ୍ୟରେ ପ୍ରତିପାଳିତ ଅନିମେଷ ସେ ସବୁ ବରଦାସ୍ତ କରିପାରେନା। ସେଇଥିପାଇଁ ସକାଳୁ ନିତ୍ୟକର୍ମ ସାରି ଶୀଘ୍ର ବାହାରି ଆସେ ଏବଂ ରାତିରେ ଡେରି କରି ଘରକୁ ଫେରେ। ଘରେ ରନ୍ଧାରନ୍ଧିର ଝମେଲା ରଖି ନାହିଁ। ତା' ଜଳଖିଆ, ଲଞ୍ଚ୍ ଡିନର୍ ସବୁ ବାହାରେ। ଖୋଜି ଖୋଜି କେତୋଟି ହୋଟେଲ୍‌ର ସନ୍ଧାନ କରିଛି - ଯୋଉଠି ଖାଦ୍ୟର ଗୁଣାତ୍ମକ ମାନ ସହିତ ପରିଷ୍କାର ପରିଚ୍ଛନ୍ନତା ପ୍ରତି ସଜାଗ ଦୃଷ୍ଟି ଦିଆଯାଏ। ହୋଟେଲ୍‌ରେ ସବୁଦିନ ଖାଉଛି ବୋଲି ବୋଉ ଏବଂ ଅନିନ୍ଦିତା ବ୍ୟସ୍ତ ହେଲେ ଅନିମେଷ

ସେମାନଙ୍କୁ ଆଶ୍ୱସ୍ତ କରାଏ ସେ ଖାଉଥିବା ହୋଟେଲ୍‌ର ପରିଷ୍କାର ପରିଚ୍ଛନ୍ନତା ଏବଂ ଆନ୍ତରିକତାଭରା ପରିବେଶର ଘରୋଇ ବ୍ୟବସ୍ଥା କଥା କହି । ଡାଲମା, ସନ୍ତୁଳା, ବାଇଗଣ ଭର୍ତ୍ତା, ବଡ଼ିଚୁରା, ଶାଗଭଜା, ଦହିପଖାଳ ସବୁ ମିଳେ ସେଠି । ସୁଲଭ ମୂଲ୍ୟରେ ପରିତୃପ୍ତିର ସହିତ ଭୋଜନ । ହିଁ - ଆଉ କେତେଟା ଦିନ ଯେ ! ଘରଟିଏ ମିଳିଗଲେ ସମସ୍ତେ ତ ଏକାଠି ରହିବେ । ସେତେବେଳେ ଶାଶୂବୋହୂ ଦୁହେଁ ମିଶି ତାକୁ ଯେତେ ରାନ୍ଧିବାଢ଼ି ଖୁଆଇ ପାରିବେ ଖୁଆନ୍ତୁ ।

"ଏ ଟୋକା - ଏକାଠି ଆସିଲୁ ।" ସେଇ ଭଦ୍ରବ୍ୟକ୍ତିମାନଙ୍କ ମଧ୍ୟରୁ ଜଣେ ଡାକୁଛନ୍ତି । ଅନିମେଷ ଚାହିଁଲା ସେମାନଙ୍କ ଆଡ଼କୁ । ବାଦାମ ବିକୁଥିବା ପିଲାଟିକୁ ଡାକୁଛନ୍ତି ।

"ହେ ଟୋକା, ଶୁଣ୍ ।" ପୁଣି ଡାକିଲେ । ବାଦାମ ଖାଇବାକୁ ମନ କରିଛନ୍ତି ପରା ।

"କ'ଣ କିରେ ବୁଢ଼ା ?" ସେ ପିଲାଟି ଦୂରରେ ଥାଇ ଉତ୍ତର ଦେଲା ।

"ହଇରେ ତୋର ଏଡ଼େ ସାହସ - ମୋତେ ବୁଢ଼ା କହିବୁ ? ଦେବି ଯେ କାନମୁଣ୍ଡାକୁ ଗୋଟେ ଥାପଡ଼ ... !"

" ଆଁ, ଭାରି ମାରିଲାବାଲା । ତୁମେ ଯେମିତି ମୋତେ 'ଏ ଟୋକା' ବୋଲି ଡାକିଲ, ମୁଁ ବି ସେମିତି ତୁମକୁ ବୁଢ଼ା କହିଲି ।"

"ଏଁ, ଏଡ଼ିକି ବକଟେ ପିଲା, ତୋତେ ଟୋକା କହନ୍ତିନି ତ ଆଉ କ'ଣ କହନ୍ତି ?"

" ତୁମେ ତ ବୁଢ଼ା - ତୁମକୁ ବୁଢ଼ା କହିଲି ତ କ'ଣ ହେଇଗଲା ?"

"ଆରେ ମୋତେ ଚିହ୍ନିନୁ, ମୁଁ କିଏ ଜାଣିଛୁ ?"

"ତମେ ଯିଏ ନାଇଁ ସିଏ ହୁଅ - ମୋର କ'ଣ ଗଲା ? ମୁଁ ବାଦାମ ବିକୁଚି, ଯାହାର ଦରକାର ସେ ବାଦାମ ନବ ପଇସା ଦବ । ମୁଁ କ'ଣ କାହାକୁ ଭିକ ମାଗୁଛି ଯେ ଏତେ ବେଖାତିର୍ କରି ମୋତେ ଡାକିବ ?" ପିଲାଟିର ଦର୍ପିତ ଭଙ୍ଗୀ ସ୍ତମ୍ଭିତ କରିଦେଲା ସମସ୍ତଙ୍କୁ । କେତେ ବା ବୟସ ହେବ ତାକୁ ? ବାର କି ଚଉଦ ଭିତରେ ହେବ - ପତଳା ନକ୍‌ନକିଆ ଚେହେରା । ପାହାଡ଼ ଭଳି ବିରାଟ ବପୁବନ୍ତ ମଣିଷଟାକୁ ଟିକେ ବି ଭୟ କରୁନି - ରୋକ୍‌ଠୋକ୍ ଜବାବ୍ ଦେଇଦେଉଛି !

"ଆରେ ହେ - ଏ ପିଲା ତ ଭାରି ବଢ଼ି ବଢ଼ି କଥା କହୁଛି ! କେତେ କେତେ କ୍ରିମିନାଲ୍‌କୁ ମୁଁ ସାବାଡ଼୍ କରିଛି । ମୋ ନାଁ ଶୁଣିଲେ ଆଣ୍ଟି -ସୋସିଆଲ୍‌ମାନଙ୍କ ମନରେ ଛନକା ପଶୁଥିଲା । ତୁ ମୋ'ଠୁଁ ବଳେଇଯିବୁ ? ରହ...." ପୂର୍ବତନ ଆଇଜି ଦେବକୀନନ୍ଦନ ବାଦାମ ବିକାଳୀ ପିଲାଟି ଉପରକୁ ଝପଟି ଗଲେ । ପିଲାଟି ବିଜୁଳି ବେଗରେ ସେଠୁ

ଚମ୍ପଟ ମାରିଲା। ଦେବକୀନନ୍ଦନ କିନ୍ତୁ ହାମୁଡ଼େଇ ହୋଇ ତଳେ ପଡ଼ିଗଲେ। ତାଙ୍କର ବନ୍ଧୁମାନେ ତୁରନ୍ତ ଧାଇଁ ଆସିଲେ ତାଙ୍କୁ ଉଠାଇବା ପାଇଁ। ମାତ୍ର ଶହେ ଦଶ କିଲୋ ଓଜନ ବିଶିଷ୍ଟ ଦେବକୀନନ୍ଦନଙ୍କୁ ତଳୁ ଉଠାଇବା କିଛି ସହଜ କଥା ନଥିଲା। ସାହାଯ୍ୟ ପାଇଁ ସେମାନେ ଏଣେ ତେଣେ ଚାହିଁଲେ। ସମସ୍ତ ଘଟଣାକୁ ମୂଳରୁ ଲକ୍ଷ୍ୟ କରୁଥିବା ଅନିମେଷ ସେମାନଙ୍କ ନିକଟକୁ ଆଗେଇ ଆସିଲା ଏବଂ ଦେବକୀ ନନ୍ଦନଙ୍କୁ ଧରାଧରି କରି ବେଞ୍ଚ୍ ଉପରେ ଆଣି ବସାଇଲା। ସିଏ କିନ୍ତୁ ଖୁବ୍ ଜୋର୍‌ରେ ଥରୁଥିଲେ ଓ ପାଟି ହାଙ୍କୁ ହାଙ୍କୁ କରୁଥିଲେ। ହଠାତ୍ ଉତ୍ତେଜିତ ହୋଇପଡ଼ିଲେ ତାଙ୍କର ଏମିତି ହୋଇଥାଏ। ପକେଟ୍‌ରୁ ଇନ୍‌ହେଲର୍ ବାହାର କରି ପାଟିରେ ସ୍ପ୍ରେ କଲା ପରେ ସ୍ୱାଭାବିକ ଅବସ୍ଥାକୁ ଆସିଲେ। ଅନିମେଷ ମଧ୍ୟ ତା'ର ପୂର୍ବ ସ୍ଥାନକୁ ଫେରି ଆସିଲା।

ଖୁବ୍ ଅଦ୍ଭୁତ ଏଇ ତଥାକଥିତ ଉଚ୍ଚ ବର୍ଗର ମଣିଷମାନେ। ଅନ୍ୟମାନଙ୍କଠାରୁ ସମସ୍ତ ସମ୍ମାନ ସେମାନଙ୍କର ପ୍ରାପ୍ୟ ବୋଲି ସେମାନେ ଦୃଢ଼ ଭାବରେ ବିଶ୍ୱାସ କରନ୍ତି। ଅଥଚ ଏଇ ଛୋଟିଆ କଥାଟେ ବୁଝିପାରନ୍ତି ନାହିଁ ଯେ ଅନ୍ୟଠାରୁ ସମ୍ମାନ ପାଇବାକୁ ଆଶା କରୁଥିଲେ ପ୍ରଥମେ ଅନ୍ୟକୁ ସମ୍ମାନ ଦେଇ ଶିଖିବା ଦରକାର। ସାମାନ୍ୟ ବାଦାମ ବିକାଳି ପିଲାଟିଏ ବି ସେମାନଙ୍କର ଅହଙ୍କାରକୁ କିଭଳି ଦୟନୀୟ ଅବସ୍ଥାରେ ପକେଇ ଦେଇପାରେ ସତେ!

ତା' ପରଦିନ ପାର୍କ୍‌କୁ ଯାଇ ଅନିମେଷ ଦେଖିଲା - ତିନି ଜଣ ଅଛନ୍ତି। ଚତୁର୍ଥ ବନ୍ଧୁ ଦେବକୀନନ୍ଦନ ଅନୁପସ୍ଥିତ। ଅନିମେଷକୁ ଦେଖି ପ୍ରଥମ ଥର ପାଇଁ ସେମାନେ ସମସ୍ତେ ସ୍ମିତହାସ୍ୟଟିଏ ଦେବାକୁ ଚେଷ୍ଟା କଲେ। ସଂସ୍କାରବଶତଃ ଗୁରୁଜନସ୍ଥାନୀୟ ବୟସ୍କ ବ୍ୟକ୍ତିମାନଙ୍କ ପ୍ରତି ତା'ର ହାତ ଦୁଇଟି ନମସ୍କାର ଭଙ୍ଗୀ ପ୍ରଦର୍ଶନ କଲା।

"ତୁମକୁ ବହୁତ ଧନ୍ୟବାଦ - କାଲି ତୁମେ ସାହାଯ୍ୟ କରିନଥିଲେ ଆମ ବନ୍ଧୁଟିକୁ ଆମେ ତଳୁ ଉଠେଇ ପାରିନଥାନ୍ତୁ।" ପ୍ରଫେସର୍ ସାମନ୍ତରାୟ କହିଲେ।

ଅନିମେଷ ସାମାନ୍ୟ ହସି କହିଲା - "ମୁଁ ନ ଉଠେଇଥିଲେ ଆଉ କେହି ନିଶ୍ଚୟ ଉଠେଇଥାଆନ୍ତେ। ସେଥିରେ କ'ଣ ଅଛି ?"

"ସେମିତି କହିଲେ ହେବ ? କାଇଁ ଏତେ ଲୋକ ତ ଥିଲେ, ତୁମ ଭଳି କେହି ସାହାଯ୍ୟ କରିବା ପାଇଁ କୋଉଠି କିଏ ଧାଇଁ ଆସିଲେ ?" ଜଜ୍ ସାହେବ କହିଲେ।

ଅନିମେଷ ଅସ୍ୱସ୍ତି ବୋଧ କଲା। କିଛି ଗୋଟେ କହିବାକୁ ହେବ ବୋଲି ପଚାରିଲା।

"ସେ ସାର୍ ଆଜି ଆସିନାହାଁନ୍ତି ଯେ ?"

"ବିଛଣାରୁ ଉଠିଲେ ସିନା ଆସିବ ? କୁଇଣ୍ଟାଲିଆ ଶରୀରଟା ତଳେ ପଡ଼ିଯାଇ ଯୋଉ ମାଡ଼ ହୋଇଛି, ସେଥିରେ ସେ ଉଠିବା ଅବସ୍ଥାରେ ନହିଁ।" ଜଣେ ବନ୍ଧୁ କହିଲେ।

"ସେଇଟାର ଫୁଟାଣି କ'ଣ କମ୍ କି ? ହୁଁ - ଏମିତି ବଡ଼ିକୁ ଫିଟ୍ ରଖିଛି - ପାଞ୍ଚ କିଲୋମିଟର୍ ଧାଉଁଛି, ସବୁ ହଜମ କରିଦେଉଛି - ସବୁ ଡମ୍ଫାମି। ଦେଖିଲନି କାଲି କେମିତି ତା'ର ଫିଟ୍‌ନେସ୍ ଦେଖାଇଲା। ଜୀବନସାରା ଏମିତି ସେ ମିଛିମିଛିକା ବାହାଦୂରିର ପ୍ରହସନ କରିଆସିଛି। ମୋ ଆଗରେ ସିଏ କ'ଣ ବଡ଼େଇ ଦେଖେଇବ ? ତା'ର ସବୁ ଗୁମର କଥା ମୋତେ ଜଣା। ମୁଁ ଜଜ୍ ଥିଲାବେଳେ କେତେ ଅଡୁଆ ତଡୁଆ କେଶ୍‌ରୁ ମୁଁ ତାକୁ ମୁକାଳିଛି। ଯେତେହେଲେ ସାଙ୍ଗଟା ତ।"

ଜଣକର ଅନୁପସ୍ଥିତିରେ ତା' ବିଷୟରେ ଚର୍ଚ୍ଚା କରିବା ଯେ ଆଦୌ ଶିଷ୍ଟାଚାର ନୁହେଁ - ଏଇ ସଂଭ୍ରାନ୍ତ ମଣିଷମାନଙ୍କୁ ସେ କଥା କ'ଣ ଜଣା ନାହିଁ ? ସେ ଜଣକ ପୁଣି ଏମାନଙ୍କର ଅନ୍ତରଙ୍ଗ ବନ୍ଧୁ ! ନା - ଏମାନେ କେହି କାହାର ଅନ୍ତରଙ୍ଗ ନୁହଁନ୍ତି। ତାଙ୍କ ଭିତରୁ ଯେ କେହି ଅନୁପସ୍ଥିତ ରହେ, ତା' ବିଷୟରେ ଚର୍ଚ୍ଚା କରିବା ଏମାନଙ୍କର ଅନ୍ୟତମ ସଉକ। ଏଣିକି ସେମାନେ ଅନିମେଷକୁ ମଧ ଡାକନ୍ତି ପାଖକୁ। ତାକୁ ସାକ୍ଷୀ କରି ବିଭିନ୍ନ କଥା କହନ୍ତି।

"ଏଇ ଯୋଉ ଜଜ୍ ସାହେବ - ବିଚାରପତିର ଆସନରେ ଯେତିକି ନ୍ୟାୟ କରିଛି, ଅନ୍ୟାୟ କରିଛି ତା'ଠୁ ଢ଼େର ବେଶି। ତା'ର ଯୋଉ ପ୍ୟାଲେସ୍ ଭଳି ତ୍ରିତଳ ପ୍ରସାଦ - ସବୁ କ୍ରିମିନାଲ୍‌ଙ୍କ ବ୍ଲାକ୍‌ମନିରେ ତିଆରି। ତାହାଣୀ ହୋଇ ଲାଗିବ ଯିଏ - ପୁଣି ଗୁଣିଆ ହୋଇ ଝାଡ଼ିବ ସିଏ। କେହି ଜାଣନ୍ତୁ ବା ନଜାଣନ୍ତୁ, ଆମେ ତ ଜାଣିଛୁ। ଅନ୍ୟାୟ ଭାବରେ କେତେ ଲୋକଙ୍କୁ ସିଏ ବିଭିନ୍ନ କେଶ୍‌ରେ ଫସେଇଛି - ବିଚାରକ ଆସନରେ ବସି ସେମାନଙ୍କର ବିଚାର ମଧ କରିଛି ସିଏ। ଏତେ ପାପ କ'ଣ ଭଗବାନ ସହିବେ ? ବଡ଼ପୁଅଟା ବଦ୍ଧ ପାଗଳ ହୋଇ ମେଣ୍ଟାଲ୍ ହସ୍ପିଟାଲ୍‌ରେ। ସାନପୁଅଟାକୁ ନିଜର ଉତ୍ତରାଧିକାରୀ କରି ତିଆରି କରୁଥିଲା ଯେ ତାକୁ ବି କିଏ ମର୍ଡର କରିଦେଲା । ସେଇ ଦୁଃଖରେ ପତ୍ନୀ ଆତ୍ମହତ୍ୟା କରିଦେଲେ। ଶେଷ ଆଶା ଥିଲା ଝିଅକୁ ନେଇ। ଘରଜ୍ୱାଇଁ କରି ପାଖରେ ରଖିବା ପାଇଁ ବାପ ଯୋଗାଡଯନ୍ତ୍ର କରୁଥିବାବେଳେ ବାପାଙ୍କ ପସନ୍ଦର ବରକୁ ଛାଡ଼ି ଝିଅ ଅନ୍ୟ ସମ୍ପ୍ରଦାୟର ଗୋଟେ ପୁଅ ସହିତ ବାହାରକୁ ଚାଲିଗଲା। ଆମେରିକାରେ ସେମାନେ ବିବାହ ନକରି ଏକାଠି ରହୁଛନ୍ତି। ଜଜ୍ ଆସନରେ ବସି ସିଏ କେତେ କେତେ ଲୋକଙ୍କୁ ଦଣ୍ଡାଦେଶ ଶୁଣାଇଛି। ଆଜି ତା ନିଜକୁ ନିଜେ ସେ ଆତ୍ମ ନିର୍ବାସନର ଦଣ୍ଡ ଦେଇଛି। ସନ୍ଧ୍ୟାବେଳରେ ଏଇ କିଛି ସମୟ ବାଦ୍ ଦେଲେ ସିଏ ତା'ର ଦୁର୍ଗ ଭଳିର ବିରାଟ ପ୍ରାସାଦରେ ବନ୍ଦୀ ଜୀବନ ଯାପନ କରୁଛି ନା।"

ପ୍ରଫେସର୍ ସାମନ୍ତରାୟ କିଛି ଦିନ ଅନୁପସ୍ଥିତି ରହିଲେ ପାର୍କର ବନ୍ଧୁମାନଙ୍କ ଆସରରେ। ଅନ୍ୟ ଏକ ସହରରେ ଆୟୋଜିତ ହେଉଥିବା ସାହିତ୍ୟ ସଭାରେ ସଭାପତି

ଆସନ ଅଳଙ୍କୃତ କରିବା ପାଇଁ ନିମନ୍ତ୍ରିତ ହୋଇ ସେ ଯାଇଛନ୍ତି। ତାଙ୍କ ଅନୁପସ୍ଥିତିରେ ତାଙ୍କର ଗୁଣଗାନ କରନ୍ତି ବନ୍ଧୁମାନେ -

"ନିମନ୍ତ୍ରଣ ନା ଆଉ କିଛି। ଭାରି ଯୋଗାଡ଼ିଆ ଲୋକ ଏ ବ୍ୟୋମକେଶ ସାମନ୍ତରାୟ। ଗୁଡ଼ାଏ ଲୋକଙ୍କ ସହିତ ସମ୍ପର୍କ ତା'ର। ସାହିତ୍ୟ ଫାହିତ୍ୟ କରେ। ଚାକିରି କାଳତକ ସିଏ ପିଲାଙ୍କୁ ପାଠ ପଢ଼ାଏ କମ୍ ସମୟ; ସଭା ସମିତିରେ ଭାଷଣ ଦେବାକୁ ଯାଏ ଅଧିକ ସମୟ। କିଏ କହିବ ? ମୁଖ୍ୟମନ୍ତ୍ରୀଙ୍କଠାରୁ ଶିକ୍ଷାମନ୍ତ୍ରୀଙ୍କ ପର୍ଯ୍ୟନ୍ତ ସମସ୍ତଙ୍କୁ ସେ ତା'ର ତୋଷାମଦରେ ବଶୀଭୂତ କରି ରଖିଥାଏ। ଯୋଗାଡ଼ କରି କରି ରାଜ୍ୟରୁ କେନ୍ଦ୍ରଯାଏଁ କେତେ ନା କେତେ ପୁରସ୍କାର ସେ ହାତେଇ ନେଇଛି। ତଥାପି ସବୁବେଳେ ସେ ମୁଣ୍ଡ କୋଡ଼ି ହେଉଥାଏ। ତା' ପ୍ରତିଭାକୁ କେହି ଏଠି ଉପଯୁକ୍ତ ସମ୍ମାନ ଦେଲେ ନାହିଁ। ଆଉ କୋଉଠି ଜନ୍ମ ହୋଇଥିଲେ ସେ କାଳେ ନୋବେଲ୍ ପ୍ରାଇଜ୍ ପାଇସାରନ୍ତାଣି। ସୁନାମ ଯେତିକି ଦୁର୍ନାମ ମଧ୍ୟ ସେତିକି। ମହିଳା ସହକର୍ମୀଙ୍କଠାରୁ ଛାତ୍ରୀମାନଙ୍କ ପର୍ଯ୍ୟନ୍ତ କେତେ ତା' ରସିକପଣିଆର ଶିକାର ହୋଇଛନ୍ତି, ସେ କଥା ଆମକୁ ଜଣା। ଏବେକା ସମୟ ହୋଇଥିଲେ ଛାତ୍ରୀଙ୍କ ପ୍ରତି ଅସଦାଚରଣ କରିଥିବା ଅଭିଯୋଗରେ କ'ଣ ନା କ'ଣ ହୋଇଯାଆନ୍ତାଣି। ସେ ସମୟର ଝିଅମାନେ ଲୋକଲଜ୍ଜା ଭୟରେ ମୁହଁ ଖୋଲୁନଥିଲେ। ଏ ବୟସରେ ବି କ'ଣ ସେ ଗୁଣ ଛାଡ଼ିଲାଣି ? ତାଙ୍କର ପଡ଼ୋଶିନୀ ଅବିବାହିତା ରିଟାୟାର୍ ପ୍ରିନ୍ସିପାଲ୍ ସଙ୍ଗରେ ଲଟରପଟର ହେଉଛି ବୋଲି ତା' ସ୍ତ୍ରୀ ଦିନେ ଦି' ଦିନରେ ଶ୍ରୀମତୀ ସମାର୍ଜ୍ଜନୀ ଅବତାର ହେଉଛି।"

ପରଚର୍ଚ୍ଚା, ପରନିନ୍ଦା ଶୁଣିବାକୁ ଭଲପାଏନି ଅନିମେଷ। କିନ୍ତୁ ବାଧ୍ୟ ହୋଇ ତାକୁ ଶୁଣିବାକୁ ପଡ଼େ। ସମାଜର ଧନୀ, ମାନୀ ମଣିଷଗୁଡ଼ାକର ହୃଦୟର ସଂକୀର୍ଣ୍ଣତା, ଦୀନତା ତାକୁ କ୍ଷୁବ୍ଧ କରେ - ମର୍ମାହତ କରେ। ଜୀବନକାଳ ମଧ୍ୟରେ ସେମାନେ କେବଳ ନିଜ ଛଡ଼ା ଆଉ କାହାକୁ ବି ଭଲପାଇ ପାରିନାହାଁନ୍ତି। ସେଇଥିପାଇଁ ସେମାନଙ୍କ ମାନସିକତାରେ ଏଭଳି କାଙ୍ଗାଳପଣ ଘେରି ରହିଛି। ଆହା ବିଚରା ଦୁଃଖୀ ମଣିଷଗୁଡ଼ିକ ! ନିଜକୁ ବଡ଼ କରି ଦେଖେଇବା ପାଇଁ ଅନ୍ୟକୁ ଛୋଟ କରିଦେବାରେ ଏମାନଙ୍କର ଆଦୌ ଦ୍ୱିଧା ନଥାଏ। କେତେ ଅସହାୟ ଏମାନେ ସତରେ ! ନିଜକୁ ଆଉ ସେଇ ଲୋକମାନଙ୍କ ସହିତ ଯୋଡ଼ିବାକୁ ଚାହୁଁ ନଥିଲା ଅନିମେଷ। ସେଇଥିପାଇଁ ସେ ତା'ର ନିୟମିତ ବସିବା ସ୍ଥାନଟିର ମୋହ ଛାଡ଼ିଦେଇ ପାର୍କର ଆଉ ଗୋଟିଏ ସ୍ଥାନରେ ବସୁଥିଲା। ଘର ପାଇଁ ସେ ଚିନ୍ତିତ ଥିଲା। କିନ୍ତୁ ମନ ପସନ୍ଦର ଭଡ଼ାଘରଟିଏ ସେ ପାଇନଥିଲା ସେ ପର୍ଯ୍ୟନ୍ତ। ଗତ ସପ୍ତାହରେ ଗାଆଁକୁ ଯାଇ ଦେଖିଥିଲା ବୋଉର ଆଣ୍ଠୁଗଣ୍ଠି ବାତ ବାହାରିଛି। ବସିବା ଉଠିବା କଷ୍ଟ - ଚାଲିବା ଆହୁରି କଷ୍ଟ। ଗାଆଁରେ ଡାକ୍ତରଖାନା ନାହିଁ। ବୋଉକୁ ସହରକୁ ଆଣି ଚିକିତ୍ସା

କରିବା ଦରକାର । ବୋଉ ଆସିଲେ ଅନିନ୍ଦିତା ଆସିବ ସେବା ଯତ୍ନ କରିବାକୁ । ଅନିନ୍ଦିତା ଆସିଲେ ପିଲାମାନେ ମଧ୍ୟ ଆସିବେ । ସମସ୍ତେ ଚାଲିଆସିଲେ ବାପା ବି ଏକୁଟିଆ କାହିଁକି ରହିବେ ସେଠି ? ଭାଇ ଭାଇ ବୋଲି ବାପା ତାଙ୍କର ସାନ ଭାଇ ଦୁହିଁଙ୍କ ପାଇଁ ଯେତେ ଉଦାରତା ଦେଖେଇଲେ ମଧ୍ୟ ତାଙ୍କର ଦାୟିତ୍ୱ ସେମାନେ ଖୁସିରେ ନେବାକୁ ରାଜି ହେବେ ନାହିଁ । ଭିନେ ହେବା ପୂର୍ବରୁ ବି ବାପା ଯେତେବେଳେ ପିଲାଛୁଆ ଧରି ଛୁଟିଫୁଟିରେ ତାଙ୍କ ଚାକିରି ଜାଗାରୁ ଗାଆଁକୁ ଆସୁଥିଲେ, ସବୁ ଖର୍ଚ୍ଚବାର୍ଚ୍ଚ ତୁଲାଉଥିଲେ, ଦିନେ ଦି'ଦିନ ପରେ ଖୁଡ଼ୀମାନଙ୍କର ମୁହଁ ଅଲଗା ଦିଶୁଥିଲା । ସେତକ ବୁଝି ପାରୁଥିଲେ ବୋଲି ଅବସର ନେବା ପରେ ଗାଆଁକୁ ଆସି ରହିବାକୁ ସ୍ଥିର କରିବା ପରେ ପ୍ରଥମେ ଭାଇମାନଙ୍କୁ ଡାକି ସେମାନଙ୍କ ମନକଥା ବୁଝି ସେମାନଙ୍କର ଅଲଗା ରହିବାର ବ୍ୟବସ୍ଥା କରିଦେଲେ ବାପା । ଏକାଠି ରହି ନିଇତି ମହାଭାରତ ଯୁଦ୍ଧ ହେବା ଅପେକ୍ଷା ପାଖାପାଖି ଅଲଗା ରହିବା ତଥା ଶାନ୍ତିରେ ରହିବା ଭଲ । ଭାଇମାନେ ଯାହା ଚାହିଁଛନ୍ତି, ହୃଦୟବଲ୍ଲଭ ଉଦାର ହୃଦୟରେ ସବୁ ଦେଇଦେଇଛନ୍ତି । ବଡ଼ଭାଇଙ୍କର ସ୍ନେହ,ସୌହାର୍ଦ୍ଦ୍ୟ ଆଶୀର୍ବାଦ ହୁଏତ ତାଙ୍କର ଦରକାର ପଡ଼ିନାହିଁ । ତେଣୁ ତାଙ୍କୁ ଆଡ଼େଇ ଦେଇଛନ୍ତି ।

"ଆରେ ଅନିମେଷ ତୁମେ ଏଠି ? କେତେଦିନ ହେଲା ତୁମକୁ ନଦେଖି ଆମେ କେତେ କ'ଣ ଭାବୁଛୁ ? ଦେହ ପା' ଭଲ ଅଛି ତ ? ଘରେ ସମସ୍ତେ ଠିକ୍‌ଠାକ୍ ଅଛନ୍ତି ତ ? ତୁମେ ଆଉ ପାର୍କକୁ ଆସୁନଥିଲ ନା କ'ଣ ?" ଅନିମେଷକୁ ଚମକାଇଦେଲେ ତିନି ବନ୍ଧୁ ଜଜ୍ ସାହେବ, ପ୍ରଫେସର୍ ସାହେବ ଓ ଆଇଜି ସାହେବ । ଇଞ୍ଜିନିୟର୍ ସାହେବ ନାହାଁନ୍ତି । ଅନିମେଷ ଲଜ୍ଜିତ ହେଲା । ଭଲ ବି ଲାଗିଲା ଏମାନେ ତାକୁ ନଦେଖିଲେ ବ୍ୟାକୁଳ ହୁଅନ୍ତି ଜାଣି । ତା ବାପାଙ୍କର ସମବୟସ୍କ ଏଇ ମଣିଷମାନେ । ସମସ୍ତେ ପୁଅଝିଅଙ୍କର ବାପା ହୋଇଛନ୍ତି । ନିଜ ପିଲାମାନେ କେହି ପାଖରେ ନଥିବାରୁ ଅନିମେଷ ସହିତ ପରିଚୟ ହେବା ପରେ ତା' ପ୍ରତି ସେମାନଙ୍କର ଅପତ୍ୟ ସ୍ନେହ ଜାତ ହେବା କିଛି ଅସ୍ୱାଭାବିକ ନୁହେଁ । କିଛି କୈଫିୟତ୍ ଦେବାକୁ ପଡ଼ିବ ତାକୁ । ସିଏତ ଆଉ କହିପାରିବ ନାହିଁ ଯେ ସେମାନଙ୍କର ସଂସର୍ଗ ଏଡ଼ାଇବା ପାଇଁ ସେ ତା'ର ନିତିଦିନିଆ ଜାଗାଟିରେ ବସିବା ଛାଡ଼ିଦେଇଛି ।

"ମୁଁ ଟିକେ ବ୍ୟସ୍ତ ଥିଲି । ଘରଟେ ଖୋଜୁଛି । ଗାଆଁରୁ ବାପା ବୋଉ ଓ ମୋର ପିଲାମାନେ ଆସିବେ । ସମସ୍ତେ ରହିଲା ଭଳି ଘରଟେ ଦରକାର ।"

"ଆରେ, ସେଇଥିପାଇଁ ଏତେ ବ୍ୟସ୍ତ ହେବାର କ'ଣ ଅଛି ? କେତେ ରେଞ୍ଜ୍ ଭିତରେ ତୁମର ଘର ଦରକାର କୁହ । ମୋର ଚିହ୍ନା ରିଏଲ୍ ଇଷ୍ଟେଟ୍ ଏଜେଣ୍ଟ ଅଛନ୍ତି, ବିଲ୍ଡର୍ ଅଛନ୍ତି..." ଆଇଜି ସାହେବ କହିଲେ । ପିଲାମାନଙ୍କର ଘରତିଆରି କଥା ସିଏ

ବୁଝୁଛନ୍ତି ଏବେ। ସେଥିପାଇଁ ଘର ତିଆରି, ଘରକିଣା ସମ୍ବନ୍ଧୀୟ କଥା ତାଙ୍କୁ ବେଶ୍ ଜଣା।

"ନାଇଁ ଆଜ୍ଞା, ମୋର ଏବେ ଘର କିଣିବାର ନାହିଁ। ଭଡ଼ାଘରଟେ ଦରକାର।" ଅନିମେଷ କହିଲା।

"ଭଡ଼ାଘର କାହିଁକି ? ମୋର ଏତେ ବଡ଼ ଘର ଖାଲି ପଡ଼ିଛି। ଘରୁ ସମସ୍ତଙ୍କୁ ନେଇଆସ। ଯେତେଦିନ ଇଚ୍ଛା ସେତେଦିନ ରୁହ - ଭଡ଼ାଫଡ଼ା ଦେବାକୁ ପଡ଼ିବନି।" ଜଜ୍ ସାହେବ କହିଲେ।

"ଧେତ୍, ତୁମର ସେ ଭୂତକୋଠି ପରି ଘରେ ସେ କାହିଁକି ରହିବେ ? ବାବୁ ଅନିମେଷ - ତୁମେ ମୋର ଆଉଟ୍ ହାଉସ୍‌ରେ ଆସି ରୁହ। ସବୁ ସୁବିଧା ଅଛି। ଯେତେଦିନ ଇଚ୍ଛା ରୁହ - ଆମକୁ ବି ଭଲ ଲାଗିବ ଆମ ଆଖପାଖରେ କିଏ ଚଳପ୍ରଚଳ ହେଲେ।" ଏସ୍‌ପି ସାହେବ କହିଲେ।

"ଓଃ ତୁମେମାନେ ବୁଝୁନ କାହିଁକି ? ଅନିମେଷ ସ୍ୱାଭିମାନୀ ପିଲା - ସିଏ ହୁଏତ ମାଗଣାରେ କୋଉଠି ରହିବାକୁ ଚାହିଁବ ନାହିଁ। ଆମ ପଡ଼ିଶାଘର ଏବେ ଖାଲି ଅଛି। ଘର ମାଲିକାଣୀ ଏକୁଟିଆ ରହନ୍ତି। ବୟସ ହେଲାଣି। ସିଏ ଚାହୁଁଛନ୍ତି ଭରାପୂରା ପରିବାରଟିଏ ଭଡ଼ାଟିଆ ହୋଇ ତାଙ୍କ ଘରେ ରୁହନ୍ତୁ । ତୁମେ ସେଠି ରହିଲେ ଆମେ ବି କେତେବେଳେ ଚା' ପିଇବା ବାହାନାରେ ପହଞ୍ଚିଯିବୁ ।" ପ୍ରଫେସର୍ ନିଜ ରସିକତାରେ ନିଜେ ହସିଲେ । ଅନିମେଷ ଲକ୍ଷ୍ୟ କଲା, ଜଜ୍ ସାହେବ ଓ ଆଇଜି ସାହେବ ମଧ ପରସ୍ପର ଆଖିକୁ ଚାହିଁ ହସିଲେ ପ୍ରଫେସର୍‌ଙ୍କୁ ଇଙ୍ଗିତ କରି ।

"ନାଇଁ ଆଜ୍ଞା - ଘରଟିଏ ପ୍ରାୟ ଠିକ୍ ହୋଇଯାଇଛି । ଆପଣମାନଙ୍କୁ ବହୁତ ଧନ୍ୟବାଦ ମୋ ପାଇଁ ଭାବୁଥିବାରୁ ।" ତରବର ହୋଇ ଏକଥା କହି ପକେଇଲା ଅନିମେଷ । ହେ ଭଗବାନ୍, ପାର୍କ ଭଳି ଗହଳିପୂର୍ଣ୍ଣ ଜାଗାରେ ଏଇ ଲୋକମାନଙ୍କୁ ବେଶି ସମୟ ବରଦାସ୍ତ କରିବା ତା' ପାଇଁ କଷ୍ଟକର ହୋଇପଡୁଥିବା ବେଳେ ଏମାନଙ୍କ ମଧ୍ୟରୁ କାହାରି ଘରେ ବା ଏମାନଙ୍କ ପସନ୍ଦର ଘରେ ପରିବାର ଧରି ରହିବା କଥା ସେ ସ୍ୱପ୍ନରେ ମଧ ଭାବିପାରିବ ନାହିଁ । ତିନି ବନ୍ଧୁଙ୍କ ମୁହଁ ଥମ୍‌ଥମ୍ ଦିଶୁଥିଲା । କ୍ରୋଧ ନା ଅପମାନବୋଧରେ ? ଅନିମେଷ ସେମାନଙ୍କର ସମାସ୍କନ୍ଧ ନହେଲେ ମଧ ଚାଳିଶୋତ୍ତୀର୍ଣ୍ଣ ବୟସର ଜଣେ ଭଦ୍ରଲୋକ । ତାକୁ ତ ଆଉ ବାଦାମବିକାଳୀ ପିଲାଟି ପରି ମାରିବାକୁ ଗୋଡ଼େଇ ହେବନି । ହୁଏତ ଭାବୁଥିବେ - କି ଆସ୍ପର୍ଦ୍ଧା ଏ ଲୋକଟାର, ଆମ କଥାକୁ ଟାଳି ଦେଉଛି ! କୋଉ ଅବା ଲାଟ୍‌ସାହେବଟାଏ ମ !

"ଆଜି ଆପଣଙ୍କର ଆଉ ଜଣେ ବନ୍ଧୁ ଆସିନାହାଁନ୍ତି ଯେ ?" ପରିସ୍ଥିତିର

ଭାରିପଣକୁ ହାଲୁକା କରିବା ପାଇଁ ଅନିମେଷ କହିଲା ।

"ଓଃ, ଆମ ନାରାୟଣ କାହିଁକି ଆସିନି ବୋଲି ପଚାରୁଛ ? ସିଏ ଆଜି ଆସିବା ଅବସ୍ଥାରେ ନାହିଁ । ତା' ଘରେ ଆଜି ଇନ୍‌କମ୍ ଟ୍ୟାକ୍ସ ରେଡ୍ ହୋଇଛି । ଖାଲି ତା' ଘର ନୁହେଁ, ଦିଲ୍ଲୀ, ହାଇଦ୍ରାବାଦରେ ତା' ପୁଅ ଝିଅଙ୍କ ଘର, ଭୁବନେଶ୍ୱର, କଟକରେ ଥିବା ତା'ର ବନ୍ଧୁବାନ୍ଧବଙ୍କ ଘରେ ମଧ୍ୟ ଏକାବେଳକେ ରେଡ୍ ପଡ଼ିଛି । ଇନ୍‌କମ୍ ଟ୍ୟାକ୍ସ ଫାଙ୍କି ଯେତିକି ଆଇନ୍ ବହିର୍ଭୂତ ସମ୍ପତ୍ତି ଠୁଳ କରିଛି, ମଝିରେ ମଝିରେ ତା' ଘରେ ରେଡ୍ ପଡେ । ଆମ ଇଞ୍ଜିନିୟର୍ ସା'ବ୍‌ଙ୍କର ସେଥିରେ କିଛି ଯାଏ ଆସେ ନାହିଁ । ତା'ର ଉଭା ଯେତିକି, ପୋତା ସେତିକି । କୋଉଠି କେମିତି ଭାବରେ ସେ ସମ୍ପତ୍ତି ସାଇତିଛି କାହାରି ବି ସାଧ ନାହିଁ ତା'ର ପତ୍ତା ପାଇବାର ।"

ଜଣେ ଦାୟିତ୍ୱସମ୍ପନ୍ନ ସଚେତନ ବରିଷ୍ଠ ନାଗରିକ ସରକାରଙ୍କୁ ଆୟକର ଫାଙ୍କିବା ଯେମିତି ଖୁବ୍ ଗୌରବାବହ କାର୍ଯ୍ୟ ! ଏଇ ବନ୍ଧୁମାନେ ମଧ୍ୟ ସମାଜର ଉଚ୍ଚ ପଦସ୍ଥ ସଂଭ୍ରାନ୍ତ ନାଗରିକ । ବନ୍ଧୁଟିର ଅପକୀର୍ତ୍ତିକୁ ଏମାନେ ନିନ୍ଦା କରୁଛନ୍ତି ନା ସମର୍ଥନ ? ଦୀର୍ଘଶ୍ୱାସ ଛାଡ଼ି ଅନିମେଷ କହିଲା, "ମୁଁ ଆସୁଛି ଆଜ୍ଞା, ନମସ୍କାର ।"

ଉଠିପଡ଼ି ନମସ୍କାର କରି କାହାରି ମୁହଁକୁ ନଚାହିଁ ଚାଲିବାକୁ ଆରମ୍ଭ କଲା ସେ।

"ଆରେ ଅନିମେଷ ଶୁଣ, ଶୁଣ ।" ପ୍ରଫେସର ପଛରୁ ଡାକିଲେ ।

ଅନିମେଷ ଅଟକିଲା । ପଛକୁ ଫେରିଲା ନାହିଁ । ସେମାନେ ତିନିଜଣ ତା' ପାଖକୁ ଆସିଲେ ।

"ତୁମ ଗାଆଁଟା କୋଉଠି କହିଲ ?"

ଅନିମେଷ ଅନିଚ୍ଛା ସତ୍ତ୍ୱେ ଗାଆଁର ନାମଟି ପ୍ରକାଶ କରି କହିଲା ।

"ପୁରୀ ଜିଲ୍ଲା - ଭାର୍ଗବୀ ନଦୀ କୂଳରେ ତୁମ ଗାଆଁ ତ ?"

"ଆଜ୍ଞା ।"

"ତୁମ ବାପାଙ୍କ ନାଁ କହିଲ ?"

"ବାପାଙ୍କ ନାଁ ହୃଦୟବଲ୍ଲଭ ପଟ୍ଟନାୟକ ।"

"ଆରେ ତୁମେ ଆମ ହୃଦୟବଲ୍ଲଭର ପୁଅ ! ସେଇଥି କହୁନ - ସେଇଥିପାଇଁ ତୁମକୁ ଦେଖିଲା ଦିନରୁ ଚିହ୍ନା ଚିହ୍ନା ଲାଗୁଛ । ଆରେ ସେ ଏବେ ବି ସେଇ ଗାଆଁରେ ଅଛି ! ସେଇଟା ଆଉ ମଣିଷ ହେଲାନି । ସ୍କୁଲ୍‌ରେ ପଢ଼ିବା ଦିନରୁ ଦେଶପ୍ରେମର ଭୂତ ତା' ମୁଣ୍ଡରେ ସବାର୍ ହୋଇଥିଲା । ଆମେ ସମସ୍ତେ ଏକାଠି ପଢୁଥିଲୁ ସ୍କୁଲ୍‌ରେ । ତୁମ ଗାଆଁ ପାଖାପାଖି ଆମ ସମସ୍ତଙ୍କ ଗାଁ । ଆମ ଭିତରେ ସବୁଠୁ ଭଲ ପଢୁଥିଲା ହୃଦୟ । ପାଠ ଭଲ ପଢ଼ିଲେ କ'ଣ ହେବ ? ତା' ଭିତରେ କୌଣସି ଉଚ୍ଚ ଆକାଂକ୍ଷା ନଥିଲା ।

ସେଇଥିପାଇଁ ସେଇ ଗାଆଁର ମାଟି କାଦୁଅକୁ ଆବୋରି ଏଯାଏଁ ପଡ଼ିରହିଛି ।

"ବାପା ହେଡ୍‌ମାଷ୍ଟର୍ ଥିଲେ । ରିଟାୟାର୍ କରିବା ପରେ ଅଳ୍ପଦିନ ହେଲା ଗାଆଁକୁ ଫେରିଛନ୍ତି ।" ତା' ବାପାଙ୍କୁ କେହି ନୀଚ ଦୃଷ୍ଟିରେ ଦେଖିବ - ଏକଥା ବରଦାସ୍ତ କରିପାରୁନଥିଲା ଅନିମେଷ ।

"ସ୍କୁଲ୍ ମାଷ୍ଟର୍ ଛଡା ସେ ଆଉ କିଛି ବି ହୋଇପାରିନଥାନ୍ତା । ସିଏ ତ ଯେମିତି ଜନ୍ମରୁ ମାଷ୍ଟର୍ - ଆମ ସମସ୍ତଙ୍କୁ ସିଏ ପାଠ ବୁଝେଇ ଦେଉଥିଲା । ତା'ରି ଅଙ୍କଖାତା, ରଚନା ଖାତାରୁ ଆମେ କପି କରି କ୍ଲାସ୍‌ରେ ଦେଖାଉଥିଲୁ । ବିଚରା - ଘରର ଅସୁବିଧା ଯୋଗୁଁ ବେଶି ପଢ଼ିପାରିଲାନି । ତା' କଥା ଭାବିଲେ ଭାରି ଦୁଃଖ ଲାଗେ । ଶୁଣ ଅନିମେଷ, ତୁମ ବାପାଙ୍କୁ ଗାଆଁରୁ ଆଣିଲେ ଆମ କଥା କହିବ । ଖାଲି କହିବ କାହିଁକି, ତାକୁ ଥରେ ଏଇ ପାର୍କକୁ ନେଇଆସିବ । ପୁରୁଣାବନ୍ଧୁଙ୍କୁ ଦେଖିଲେ ସେ ଭାରି ଖୁସି ହେବ ।"

ଅନିମେଷ ଭିତରେ ଭିତରେ ଖୁବ୍ ରାଗି ଯାଇଥିଲେ ବି ଭଦ୍ରାମିରେ କିଛି କହିପାରୁନଥଲା । ବୟସ୍କ ମଣିଷଗୁଡାକ - ସେମାନେ ପୁଣି ତା' ବାପାଙ୍କର ସହପାଠୀ ବନ୍ଧୁ । ନା - ତା ବାପାଙ୍କ ଭଳି ମହାନ୍ ବ୍ୟକ୍ତିଙ୍କର ବନ୍ଧୁ ହେବାର ଯୋଗ୍ୟତା ଏମାନଙ୍କର କାହାରି ମଧ୍ୟ ନାହିଁ। ସଂସାରରେ ଥାଇ ମଧ୍ୟ ସନ୍ଥ ପରି ମଣିଷ ତା' ବାପା। ସିଦ୍ଧ ସାଧକଙ୍କ ଭଳି ବ୍ୟକ୍ତିତ୍ୱ ତାଙ୍କର।

ଖୁବ୍ ସଂକ୍ଷେପରେ ସମ୍ମତି ଜଣାଇ ସେମାନଙ୍କର ନିକଟରୁ ଚାଲି ଆସିଥିଲା ଅନିମେଷ। ଏଇ ଲୋକମାନଙ୍କ ସହିତ ବାପାଙ୍କର କେବେ ବି ଦେଖାନହେଉ। ନିଜର ବଡ଼ପଣ ଦେଖାଇବା ପାଇଁ ବାପାଙ୍କୁ ସେମାନେ ନଗଣ୍ୟ ପ୍ରତିପାଦନ କରିବାକୁ ଯଥାସାଧ୍ୟ ଚେଷ୍ଟା କରିବେ, ବିଦ୍ରୂପ କରିବେ, ଅପମାନିତ କରିବେ। ବାପାଙ୍କର ସ୍ୱଚ୍ଛ, ନିର୍ମଳ, ଉଦାର ବ୍ୟକ୍ତିତ୍ୱକୁ କଳନା କରି ଉପଯୁକ୍ତ ମର୍ଯ୍ୟାଦା ଦେବାର ବୋଧବୁଦ୍ଧି ଏଇ ବିଷୟାସକ୍ତ ଲୋକଗୁଡ଼ାକର ଯେ ତିଳେ ହେଲେ ନାହିଁ, ଏତେ ଦିନ ଧରି ସେମାନଙ୍କୁ ପର୍ଯ୍ୟବେକ୍ଷଣ କରି ସେ ଜାଣିପାରିଛି। ବନ୍ଧୁତାର ଉହାଡ଼ରେ ପରସ୍ପରର କୁତ୍ସାରଟନା କରିବାର ବିକଳ ମାନସିକତା ମଧ୍ୟ ଦେଖିଛି ଏମାନଙ୍କର। ବାପା ତାଙ୍କ ଜାଗାରେ ଭଲରେ ଥାଆନ୍ତୁ, ଶାନ୍ତିରେ ଥାଆନ୍ତୁ।

ତା'ପରେ ଅନେକ ଦିନ ପର୍ଯ୍ୟନ୍ତ ଆଉ ପାର୍କ୍‌କୁ ଯାଇନଥିଲା ଅନିମେଷ। ବୋଉଙ୍କର ଚିକିତ୍ସା ପାଇଁ ସହରକୁ ଆସିବାର ଥିଲା, କିନ୍ତୁ ବାପାଙ୍କ ଯୋଗୁଁ ହଠାତ୍ ସମସ୍ତଙ୍କୁ ଆସିବାକୁ ପଡ଼ିଲା। ହୃଦୟବଲ୍ଲଭ ବାରିପଟ ପୋଖରୀ ହୁଡ଼ାରୁ ପଡ଼ିଯାଇ ଗୋଡ଼ ଭାଙ୍ଗି ବସିଲେ। ଦାଦା ଦୁହେଁ ଗାଆଁ ଲୋକଙ୍କ ସହାୟତାରେ ତାଙ୍କୁ ଗାଆଁ ପାଖ ଡାକ୍ତରଖାନାରେ ଭର୍ତ୍ତି କଲେ। ନାଆଁକୁ ଡାକ୍ତରଖାନା - ନା ସେଠି ଡାକ୍ତର ଥାଆନ୍ତି ନା

ଚିକିତ୍ସା ସୁବିଧା । ଖବର ପାଇବା ମାତ୍ରେ ବାପାଙ୍କୁ ଗାଡ଼ିଭଡ଼ା କରି ସହରକୁ ନେଇଆସି ଗୋଟେ ପ୍ରାଇଭେଟ୍ ହସ୍ପିଟାଲ୍‌ରେ ଭର୍ତ୍ତିକଲା ଅନିମେଷ । ଯାହା ଖର୍ଚ୍ଚ ହେଉଛି ହେଉ - ବାପା ଖୁବ୍ ଶୀଘ୍ର ଠିକ୍‌ଠାକ୍ ଚାଲିପାରନ୍ତୁ । ଅଫିସ୍‌ରୁ ଛୁଟି ନେଇ ଅନିମେଷ ବାପାଙ୍କର ଚିକିତ୍ସା ଦାୟିତ୍ୱ ନେବା ସହିତ ଭଡ଼ାଘରଟିଏ ଠିକ୍ କରି ବୋଉ, ଅନିନ୍ଦିତା ଓ ପୁଅ ଝିଅ ଦୁହିଁଙ୍କୁ ଗାଆଁରୁ ନେଇ ଆସିଥିଲା । ବାପାଙ୍କର ସେବାଯତ୍ନ କରିବା ସହ ଶାଶୁବୋହୂ ଦୁହେଁ ମିଶି ଖୁବ୍ କମ୍ ଦିନରେ ଘରକରଣା ସଜାଡ଼ି ନେଲେ । ବୋଉର ଆଣ୍ଠୁଗଣ୍ଠି ବାତର ଚିକିତ୍ସା ମଧ୍ୟ ଆରମ୍ଭ ହୋଇଯାଇଥିଲା ।

ହସ୍ପିଟାଲ୍‌ରେ ସପ୍ତାହଟିଏ ରହିବା ପରେ ଅନିମେଷ ବାପାଙ୍କୁ ଘରକୁ ନେଇ ଆସିଥିଲା । ମଝିରେ ମଝିରେ ଆବଶ୍ୟକ ହେଲେ ବାପାଙ୍କୁ ହସ୍ପିଟାଲ୍ ନେଇ ଡାକ୍ତରଙ୍କୁ ଦେଖାଇ ଆଣେ । ବାପା ବ୍ୟସ୍ତ ହୁଅନ୍ତି ଯେ ତାଙ୍କ ଯୋଗୁଁ ସାରା ପରିବାର ହଇରାଣ ହେଉଛନ୍ତି । ଗୋଡ଼ ଭଲ ହୋଇଗଲେ ସେ ଗାଆଁକୁ ଫେରିଯିବେ ବୋଲି ବାରମ୍ବାର ମନେ ପକାଇଦିଅନ୍ତି ।ଗାଆଁରେ କେତେ କାମ ସେ ଅଧାପନ୍ତରିଆ କରି ଛାଡ଼ି ଆସିଛନ୍ତି । ବାପାଙ୍କୁ ଦେଖିବାକୁ ଗାଆଁରୁ ସବୁଦିନ ପ୍ରାୟ କେହି ନା କେହି ଆସନ୍ତି । ଗାଆଁ ଲୋକଙ୍କୁ ଦେଖିଲେ ବାପା ଖୁସି ହୁଅନ୍ତି । ସେମାନଙ୍କର ଚର୍ଚ୍ଚା କରିବାରେ ବୋଉ କି ଅନିନ୍ଦିତା ହେଳା କରନ୍ତି ନାହିଁ । ଦାଦାମାନେ କ୍ୱଚିତ୍ ଆସନ୍ତି । କିନ୍ତୁ ଗାଆଁଲୋକ ଯିଏ ମଧ୍ୟ ଆସନ୍ତି କେହି ଖାଲି ହାତରେ ଆସନ୍ତି ନାହିଁ । ବାଡ଼ିର ପନିପରିବାଠାରୁ ଆରମ୍ଭ କରି ଅରୁଆ ଚାଉଳ, ମୁଗଡ଼ାଲି, ଗୁଆଘିଅ, ବସାଦହି, ଛେନା, ମୁଢ଼ି, ଉଖୁଡ଼ା, ଆରିସା ପିଠା - ଆହୁରି କେତେ କ'ଣ ଧରି ଆସିଥାଆନ୍ତି । ହୃଦୟବଲ୍ଲଭ ଯେମିତି ସାରା ଗାଆଁର ସମସ୍ତଙ୍କ ପରିବାରର ଆପଣାଜନ ପାଲଟି ଯାଇଥିଲେ । ତାଙ୍କ ପାଇଁ ସ୍ନେହଶ୍ରଦ୍ଧା ବ୍ୟତୀତ ଆଉ କୌଣସି ଜିନିଷ ନ ଆଣିବାକୁ ବାରଣ କଲେ ମଧ୍ୟ କେହି ସେ କଥା ଶୁଣନ୍ତି ନାହିଁ ।

ବାପାଙ୍କର ଗୋଡ଼ର ପ୍ଲାଷ୍ଟର ଖୋଲା ହେବା  ପରେ କିଛି ଦିନ ଫିଜିଓ ଥେରାପି କରାଗଲା । ତା'ପରେ ଅବଶ୍ୟ ଅନିମେଷ ବାପାଙ୍କ ପାଇଁ ଗୋଟେ ୱାକର୍ ଆଣିଦେଲା ଚାଲିବା ଅଭ୍ୟାସ କରିବାକୁ ।

"ଛୋଟ ବେଳେ ତୋ ହାତ ଧଣି ତୋତେ ଚାଲିବା ଶିଖେଇଥିଲି । ଏବେ ତୁ ମୋତେ ଚାଲି ଶିଖେଇ ଋଣ ଶୁଝିଦେଲୁ ।" ବାପା କହିଲେ ।

ଅନିମେଷ ମନେମନେ କହିଲା, "ବାପାମାଆଙ୍କ ଋଣ କୋଉ ପିଲା ଶୁଝିପାରିଛି ନା, ସେ ଶୁଝିବ ?"

ଅନେକ ଦିନ ପରେ ବାପାଙ୍କୁ ନେଇ ସନ୍ଧ୍ୟାବେଳେ ପାର୍କକୁ ଯାଇଥିଲା ଅନିମେଷ । ଚାଲିବା ଅଭ୍ୟାସ ପାଇଁ ପାର୍କ୍ ହିଁ ଉପଯୁକ୍ତ ସ୍ଥାନ । ଗୋଟେ ହାତରେ ୱାକ୍‌ର  ଧରି ଅନ୍ୟ

ହାତଟି ଅନିମେଷର କାନ୍ଧ ଉପରେ ଭରାଦେଇ ବାପା ଗୋଟିଏ ଗୋଟିଏ ପାହୁଣ୍ଡ ଚାଲୁଥିଲେ।

"ଆରେ ଅନିମେଷ – ଶୁଣ ଶୁଣ।" ପଛରୁ ପରିଚିତ କଣ୍ଠସ୍ୱର ଶୁଣି ଅନିମେଷ ଠିଆ ହୋଇଗଲା। ତା' ଆଡ଼କୁ ଆଗେଇ ଆସୁଥିଲେ ଚାରି ବନ୍ଧୁ।

"ଇଏ ତୁମ ବାପା ତ ?" ସେମାନେ ପଚାରିଲେ।

"ଆଜ୍ଞା।" ଅନିମେଷ କହିଲା।

"ନମସ୍କାର ହେଡ୍‌ମାଷ୍ଟର ସାହେବ୍।" ସମ୍ମିଳିତ ଭାବରେ ସେମାନେ କହିଲେ। ହୃଦୟବଲ୍ଲଭ ବିସ୍ମିତ ଦୃଷ୍ଟିରେ ସେମାନଙ୍କୁ ଚାହିଁଲେ। ଆଖିରେ ପ୍ରଶ୍ନବାଚୀ।

"ଆମକୁ ଚିହ୍ନିପାରୁ ନାହାନ୍ତି ? ଚେଷ୍ଟା କରନ୍ତୁ।"

"ନା ଚିହ୍ନିପାରୁନି। ଆପଣମାନେ କିଏ କହନ୍ତୁ ତ।" ଏତିକି କହୁ କହୁ ଖୁସିରେ ଉଜ୍ଜ୍ୱଳ ଦିଶିଲା ତାଙ୍କ ମୁହଁ। ଆଗ ଦେବକୀନନ୍ଦନଙ୍କୁ ଚିହ୍ନିଲେ, "ଆରେ ହେ – ତୁ ପରା ଦେବକୀନନ୍ଦନ, ଯଶୋଦାର ଧନ। ତୋତେ ଚିହ୍ନିପାରିବି ନାହିଁ ? ଅବଶ୍ୟ ତୋର ଯୋଉ ଅବସ୍ଥା ହେଲାଣି ଏଇ ପ୍ରକାଣ୍ଡ 'ପିପା' ଭଳି ଶରୀର ଭିତରୁ ଆମ ସ୍କୁଲ୍‌ର ସ୍ପୋର୍ଟସ୍ ଚମ୍ପିଅନ୍‌କୁ ପାଇବା ଗୋଟେ ଦୁରୂହ ବ୍ୟାପାର। ଦେଖେ ଏମାନେ ସବୁ କିଏ ? ହଁ, ଏଇ ପୋଡ଼ାମୁହାଁ ହେଉଛି ନାରଣ ପାତ୍ର, କେଶବିହୀନ ଏଇ ବୃଦ୍ଧଜଣକ ବ୍ୟୋମକେଶ – ଏତେ ଦିନକେ ତୋ ନାଆଁର ସାର୍ଥକତା ଆସିଛି। ବ୍ୟୋମ ମାନେ ଆକାଶ – ଆକାଶ ତ ମହାଶୂନ୍ୟ – କେଶଶୂନ୍ୟ ତୋର ଏଇ ମହା ମୂଲ୍ୟବାନ୍ ମୁଣ୍ଡଟି ସେଇ କଥା ଘୋଷଣା କରୁଛି – ଆଉ ଏ ଜଣକ ରଘୁ ମିଶ୍ର – ସ୍କୁଲ୍ ପାଖ ବାବାଜି ଲେଙ୍କା ବାଡ଼ିରେ ପଶି ଯିଏ ଆମ୍ବ, ପିଜୁଳି, ଲଙ୍କା ଆମ୍ବ ଚୋରି କରୁଥିଲା – ଥରେ ବନ୍ଧା ମଧ ହୋଇଥିଲା।" ହୃଦୟବଲ୍ଲଭ ଖୁବ୍ ଉଲ୍ଲସିତ କଣ୍ଠରେ କହିଲେ।

ବନ୍ଧୁମାନେ ସଂକୁଚିତ ହୋଇଗଲେ। ପିଲାଦିନର ସାଙ୍ଗମାନଙ୍କୁ କୋଉ ଭାବରେ ମନେ ରଖିଛନ୍ତି ହୃଦୟବଲ୍ଲଭ। ଅନିମେଷ ଆଗରେ ସେମାନେ ଅପ୍ରସ୍ତୁତ ବୋଧ କରୁଥିଲେ। ପ୍ରଫେସର୍ ଆତ୍ମରକ୍ଷା କରିବା ଉଦ୍ଦେଶ୍ୟରେ କହିଲେ, "ସେଇ ପିଜୁଳି, ଆମ୍ବ ଚୋରି କରୁଥିବା ରଘୁ ଦିନେ ଜଷ୍ଟିସ୍ ରଘୁନାଥ ମିଶ୍ର ହୋଇଥିଲା ଜାଣିଛୁ ତ। ଏବେ ଅବସର ନେଇଛି।"

"ହଁ, ତୋ 'ଠୁ କପି କରି ପରୀକ୍ଷାରେ ଅଧିକ ନମ୍ବର ରଖୁଥିବା ବ୍ୟୋମକେଶ ବା କେଶୁ ଆଜି ପ୍ରଫେସର୍ ବ୍ୟୋମକେଶ ସାମନ୍ତରାୟ – ବିଖ୍ୟାତ ଲେଖକ, କେତେକେତେ ପୁରସ୍କାର ସେ ପାଇଲାଣି ଜାଣିଛୁ ?" ରଘୁନାଥ କହିଲେ।

"ଜାଣିବିନି କେମିତି ? ତମେ ସବୁ ହେଲ ସମାଜର ବିଶିଷ୍ଟ ନାଗରିକ। ତମର

ଭଲମନ୍ଦର ଖବର ସବୁ ସମ୍ବାଦପତ୍ର ପୃଷ୍ଠାରେ ଦେଖେ। ମୁଁ ତ ଯୋଉ ସାଧାରଣ ଥିଲି, ସେଇ ସାଧାରଣ ହୋଇ ରହିଗଲି ସବୁଦିନ ପାଇଁ। ଆମ ସ୍କୁଲର ସବୁତକ ଅଶିଷ୍ଟ ବିଶିଷ୍ଟରେ ପରିଣତ ହୋଇଗଲେ।" ହୃଦୟବଲ୍ଲଭ ପରିହାସ କରି କହିଲେ ବନ୍ଧୁମାନଙ୍କୁ।

"ଦେଖ୍ ହୃଦୟ -ଯେତିକି କହିଲୁଣି ଢେର୍ କହିଲୁଣି। ତୋ ପୁଅ ଆଗରେ ଆମ ସମସ୍ତଙ୍କର ମାନସମ୍ମାନର ବାର ବଜେଇ ଦେଲୁଣି । ତୁ ସିନା ଭାଇ ନିର୍ମଳ ଭାବମୂର୍ତ୍ତିର ପିଲା ଥିଲୁ- ଧୁଆ ତୁଳସୀପତ୍ର। ମାଛି କି ବି ମ' କହୁନଥିଲୁ। ହୁଏତ ସେମିତି ରହିଛୁ ଏ ପର୍ଯ୍ୟନ୍ତ। ତୋ ପୁଅଟି ବି ଭାରି ଭଲ ପିଲାଟିଏ। ତୋ ପୁଅ ବୋଲି ନଜାଣି ମଧ ଆମେ ସମସ୍ତେ ତାକୁ ଖୁବ୍ ଭଲପାଉ। କିନ୍ତୁ ତୋ ପୁଅ ଏ ବୁଢ଼ା ଦଳଙ୍କୁ ପସନ୍ଦ କରେ ନାହିଁ ବୋଧହୁଏ। ଆମଠୁ ଲୁଚିଲୁଚି ବୁଲେ। ଆମେ ବି ତାକୁ ଯୋଉଠି ଥିଲେ ମଧ ଖୋଜି ଖୋଜି ବାହାର କରୁ - ଯେମିତି ଆଜି ପାଇଗଲୁ।"

ଅନିମେଷ ସଲଜ ହସି କହିଲା, "ସେମିତି କୁହନ୍ତୁନି - ବିଶ୍ୱାସ କରନ୍ତୁ, ଘରେ କିଛିଦିନ ହେଲା ବିଭିନ୍ନ ପ୍ରକାର ଅସୁବିଧା ଲାଗି ରହିଥିଲା। ମୁଁ ସେଥିପାଇଁ ପାର୍କକୁ ଆସିପାରୁନଥିଲି। ଆଜି କେବଳ ବାପା ଚାଲିବେ ବୋଲି କହିବାରୁ ତାଙ୍କୁ ଧରିକି ଆସିବାକୁ ହେଲା।"

"ଏଇ ପାଖାପାଖି ଆମ ବସା - ତୁମେ ସମସ୍ତେ ଆସ - ଆମ ଘରେ ଚା' ପିଇବ।" ହୃଦୟବଲ୍ଲଭ ବନ୍ଧୁମାନଙ୍କୁ ନିମନ୍ତ୍ରଣ କଲେ। ସେମାନେ ତୁରନ୍ତ ରାଜି ହୋଇଯିବେ ବୋଲି ଅନିମେଷ ଆଶା କରିନଥିଲା। ବାପା ସବୁବେଳେ ଏମିତି। ଯାହାକୁ ତାହାକୁ ଘରକୁ ଡାକି ଆଣିବେ, ସମୟ ଅସମୟ ଦେଖିବେ ନାହିଁ। ଘରେ ପହଞ୍ଚି ଚା' ଜଳଖିଆ ବରାଦ କରିବେ କିମ୍ବା 'ଖାଇବାକୁ ବାଢ଼' ବୋଲି କହିବେ। ଚାକିରିକାଳ ମଧରେ ଯେମିତି, ଗାଆଁରେ ଥିଲାବେଳେ ଯେମିତି, ଏବେ ବି ସେମିତି। ବୋଉ ଆଉ ଅନିନ୍ଦିତା ବାପାଙ୍କ ଏଇ ଆବଦାରକୁ ସାଦରରେ ମାନି ଆସିଛନ୍ତି। ଘରର ଅସୁବିଧା ଜାଣିବାକୁ ଦେଇନାହାନ୍ତି କେବେ। ଏବେ ଯେଉଁ ବାଲ୍ୟବନ୍ଧୁମାନଙ୍କୁ ସେ ଚା' ପିଇବା ପାଇଁ ନିମନ୍ତ୍ରଣ କରିଦେଲେ, ସେମାନଙ୍କୁ ଚା' ଦେବା ପାଇଁ ଘରେ ସରଞ୍ଜାମ ଅଛି କି ନାହିଁ ସେ ଜାଣନ୍ତି ନାହିଁ। ଦୀର୍ଘଶ୍ୱାସ ଛାଡ଼ି ଅନିମେଷ ବାପାଙ୍କୁ ଧରି ବସାଘର ଦିଗରେ ଆଗେଇଲା। ଘରେ ପହଞ୍ଚି କିଛି ବ୍ୟବସ୍ଥା କରିବାକୁ ହେବ। ରାଜପ୍ରାସାଦ ଭଳି ଭବ୍ୟ ଅଟ୍ଟାଳିକାର ବାସିନ୍ଦା ଏମାନେ। ସବ୍‌ଲେଟ୍‌ରେ ନେଇଥିବା ଦି' ବଖୁରିଆ ସରକାରୀ କ୍ୱାର୍ଟର୍ସର ମଳିନ ପରିବେଶରେ କି ପ୍ରକାର ଚର୍ଚ୍ଚା ଏମାନଙ୍କୁ କରାଯାଇପାରେ। ଦେଖାଯାଉ କ'ଣ କରିହେଉଛି।

ଘରେ ନ ପହଞ୍ଚୁଣୁ ହୃଦୟବଲ୍ଲଭ ଉଲ୍ଲସିତ କଣ୍ଠରେ ପତ୍ନୀଙ୍କ ଉଦ୍ଦେଶ୍ୟରେ କହିଲେ, "ହେଇଟି ଶୁଣୁଛ - ଦେଖ, କୋଉମାନଙ୍କୁ ସାଙ୍ଗରେ ନେଇ ଆସିଛି।" ତାଙ୍କ

ପାଟି ଶୁଣି ବ୍ୟସ୍ତ ହୋଇ ପତ୍ନୀ ଉମା ବାହାରି ଆସିଲେ। ଅପରିଚିତ ଲୋକଗୁଡ଼ିକୁ ଦେଖି ମୁଣ୍ଡରେ ଓଢ଼ଣାଟା ସଜାଡ଼ି ଦେଇ ଠିଆ ହୋଇଗଲେ ବିସ୍ମିତ ଭାବରେ।

"ନମସ୍କାର ଭାଉଜ।" ସେମାନେ ସମସ୍ତେ ବନ୍ଧୁପତ୍ନୀଙ୍କୁ ନମସ୍କାର ଜଣେଇଲେ। ସୌମ୍ୟା, ଶ୍ରୀମୟୀ ମଧ୍ୟବୟସ୍କା ନାରୀଟିକୁ ଦେଖି ସେମାନଙ୍କ ମନରେ ସଂଭ୍ରମବୋଧ ସହିତ ଆଖିରେ ମୁଗ୍ଧତା ଫୁଟି ଉଠୁଥିଲା। ବାଃ, ଏ ବୟସରେ ବି ଭଦ୍ର ମହିଳା ବେଶ୍ ସୁନ୍ଦର ତ ! ପ୍ରତି ନମସ୍କାର ଜଣାଇ ଭିତରକୁ ଚାଲିଗଲେ ହୃଦୟବଲ୍ଲଭଙ୍କ ପତ୍ନୀ ଉମା। ବାପାଙ୍କୁ ଯତ୍ନର ସହିତ ଖଟ ଉପରେ ବସାଇ ଦେଇ ଅନିମେଷ ମଧ୍ୟ ଭିତରେ ଘରକୁ ଗଲା। ଏତେ ନାମୀଦାମୀ ମଣିଷମାନଙ୍କୁ ବସେଇବ କୋଉଠି ?

ଭିତର ଘରୁ ଗୋଟେ ଲମ୍ବା ବେଞ୍ଚ୍ ଓ ଦୁଇଟି ପ୍ଲାଷ୍ଟିକ୍ ଚେୟାର୍ ନେଇ ଦାଣ୍ଡଘରେ ପକାଇଲା।

"ଆପଣମାନେ ବସନ୍ତୁ।" ଅନୁରୋଧ କଲା ଅନିମେଷ। ସେମାନେ ପ୍ରଥମେ ସେମାନଙ୍କ ପାଇଁ ଉଦ୍ଦିଷ୍ଟ ଆସନ ପ୍ରତି ବିସ୍ମିତ ଦୃଷ୍ଟିରେ ଚାହିଁଲେ ଏବଂ ବନ୍ଧୁ ପ୍ରତି ଦୟାପରବଶ ହୋଇ ବସୁଛନ୍ତି - ସେଭଳି ଭାବରେ ବସିଲେ।

"ଜେଜେ - ଆପଣଙ୍କର ହର୍ଲିକ୍ସ।" ସୁକୁମାର କିଶୋରଟିଏ ଗୋଟେ ଗ୍ଲାସ୍‌ରେ ହର୍ଲିକ୍ସ ନେଇ ଆସିଲା। ଅନିମେଷର ପୁଅ ଅରିନ୍ଦମ।

"ଆରେ ଅରୁ - ଏମାନେ ସମସ୍ତେ ମୋର ପିଲାଦିନର ସାଙ୍ଗ। ପ୍ରଣାମ କର।" ହୃଦୟ ବଲ୍ଲଭ ନାତିକୁ ନିର୍ଦ୍ଦେଶ ଦେଲେ। ହର୍ଲିକ୍ସ ଗ୍ଲାସ୍‌ଟି ଟେବୁଲ୍ ଉପରେ ଥୋଇଦେଇ କିଶୋରଟି ସମସ୍ତଙ୍କର ପାଦଛୁଇଁ ପ୍ରଣାମ କଲା।

"ରୁମିକୁ ଡାକିବେ।" ହୃଦୟବଲ୍ଲଭ କହିଲେ। ରୁମି ତାଙ୍କ ନାତୁଣୀ। ଅରିନ୍ଦମ ଭିତରକୁ ଯାଇ ରୁମିକୁ ଧରି ଆଣିଲା। ଦଶ ବାର ବର୍ଷର ବାଳିକା - ରୁମି। ଅପରିଚିତ ଏତେ ଜଣ ବୟସ୍କ ଲୋକଙ୍କୁ ଦେଖି ସେ ଲାଜ କରୁଥିଲା।

"ମା ରୁମି - ମୋର ପିଲାଦିନର ସାଙ୍ଗ ଏମାନେ - ମୋ ପରି ଏମାନେ ବି ତୋର ଜେଜେ ହେବେ। ପ୍ରଣାମ କର।" ହୃଦୟବଲ୍ଲଭ କହିଲେ।

ରୁମି ସମସ୍ତଙ୍କ ପାଦ ଛୁଇଁ ପ୍ରଣାମ କରି ବିଜୁଳି ବେଗରେ ଭିତର ଘରକୁ ଚାଲିଗଲା। ଅନିମେଷ ବାରିପଟେ ଯାଇ ଜଳଖିଆ କିଣି ଆଣିଥିଲା। ବରା, ସିଙ୍ଗଡ଼ା, ମିଠା। ସେଗୁଡ଼ିକୁ ପ୍ଲେଟ୍‌ରେ ସଜାଇଦେଲା ଅନିନ୍ଦିତା। ଟ୍ରେ ନାହିଁ; ହାତରେ ନେଇ ଯିବାକୁ ହେବ। ଅନିମେଷ ସାଙ୍ଗରେ ଅନିନ୍ଦିତା ଗଲା ଜଳଖିଆ ପ୍ଲେଟ୍ ଧରି। ଲକ୍ଷ୍ମୀ ପ୍ରତିମା ପରି ବୋହୂଟିଏ ଅନିନ୍ଦିତା। ଜଳଖିଆ ପ୍ଲେଟ୍ ଟେବୁଲ୍ ଉପରେ ରଖି ସମସ୍ତଙ୍କୁ ମୁଣ୍ଡିଆ ମାରିଲା। ହୃଦୟବଲ୍ଲଭ କହିଲେ, "ମୋ ବୋହୂ ଅନିନ୍ଦିତା।"

"ଆରେ – ଏସବୁ କାହିଁକି ! ଖାଲି ଚା' ହୋଇଥିଲେ ଚଳିଥାନ୍ତା ।" ବନ୍ଧୁମାନେ କ୍ଷୀଣ ପ୍ରତିବାଦ କଲେ ।

"ଖାଲି ଚା'ଦିଅନ୍ତିନି ତ – ବାଧ୍ୟ କରିବିନି ଖାଇବାକୁ । ଇଚ୍ଛା ନହେଲେ ଖାଅନି ।"

ହୃଦୟବଲ୍ଲଭ କହିବାବେଳକୁ ସେମାନେ ଖାଇବା ଆରମ୍ଭ କରିଦେଇଥିଲେ । ସବୁଠୁ ଶେଷରେ ଆସିଲେ ଉମା – ଚା କପ୍ ଗୁଡ଼ିକୁ ଗୋଟେ ବଡ଼ ଷ୍ଟିଲ୍ ଥାଳିରେ ସଜାଇ ଆଣିଥିଲେ । ଚାରିବନ୍ଧୁଙ୍କୁ ଚା କପ୍ ଦେଲାବେଳକୁ ଟିକେ ସଙ୍କୋଚ ଥିଲା ମନରେ । ଘରେ ଯୋଉ ଚା' ପତି ଥିଲା ସେଥିରେ ଚା' ହୋଇଛି । କପ୍ ଗୁଡ଼ିକ ଅତି ସାଧାରଣ । ପ୍ଲେଟ୍ ନାହିଁ । ଚା'ର ବାସ୍ନା କିନ୍ତୁ ଅପୂର୍ବ । ସେ ବାସ୍ନା ଆନ୍ତରିକତାର, ଶ୍ରଦ୍ଧାର, ଭଲ ପାଇବାର । ବନ୍ଧୁପତ୍ନୀଙ୍କ ପାଖରୁ ଚା' କପ୍‌ଗୁଡ଼ିକ ନେଲାବେଳକୁ ଚାରିବନ୍ଧୁଙ୍କର ମନେ ହେଉଥିଲାଯେମିତି କେଉଁ ମହାମାନ୍ୟ ଅତିଥିଙ୍କ ନିକଟରୁ ଟ୍ରଫି ଗ୍ରହଣ କରୁଛନ୍ତି ।

ସୁଦୂର ଅତୀତରେ ସ୍କୁଲ୍ ଜୀବନରେ ଯେତେବେଳେ ଖେଳକୁଦ ପ୍ରତିଯୋଗିତା ହେଉଥିଲା, ଦୁର୍ବଳ ସ୍ୱାସ୍ଥ୍ୟର ହୃଦୟବଲ୍ଲଭ କୌଣସି ଖେଳରେ କୃତିତ୍ୱ ଅର୍ଜନ କରିପାରୁନଥିଲେ । ତାଙ୍କ ବନ୍ଧୁମାନେ ଯେତେବେଳେ ଭିକ୍ଟ୍ରିଷ୍ଟାଣ୍ଡରେ ଠିଆହୋଇ ପୁରସ୍କାର ନେଉଥିଲେ, ହୃଦୟବଲ୍ଲଭ ଦୂରରେ ଠିଆ ହୋଇ କରତାଳି ଦେଇ ବନ୍ଧୁମାନଙ୍କୁ ଉତ୍ସାହିତ କରୁଥିଲେ । ଆଜି କିନ୍ତୁ ଚାରିବନ୍ଧୁ ଭାବୁଥିଲେ ହୃଦୟବଲ୍ଲଭ ଜୀବନର ଭିକ୍ଟ୍ରିଷ୍ଟାଣ୍ଡରେ ଏତେ ଉପରେ ଯାଇ ଠିଆ ହୋଇଛି – ସେ ପର୍ଯ୍ୟନ୍ତ ସେମାନଙ୍କର ଆଖି ପାଉନି । ତା' ହାତରେ ଅନେକ ଟ୍ରଫି ଓ ମେଡ଼ାଲ । ଶୂନ୍ୟହସ୍ତରେ ତଳେ ଠିଆ ହୋଇ ତାକୁ କେବଳ ଈର୍ଷ୍ୟୁକ ଦୃଷ୍ଟିରେ ଚାହିଁ ରହିଛନ୍ତି ସେମାନେ – କରତାଳି ଦେବା କଥା ସେମାନେ ପାସୋରି ଦେଇଛନ୍ତି ।

# ଅସ୍ତରାଗ

"ତୁମକୁ ଉଲ୍ ବୁଣିଆସେ ଜେଜେ ମା ?" ବଣ୍ଟି ପଚାରିଲା ଅନୁରାଧାଙ୍କୁ । "କାହିଁକିରେ ଧନ ?" ବହିରୁ ମୁହଁ ଉଠାଇ ଆଦରର ନାତିଟିକୁ ପ୍ରଶ୍ନକଲେ ଅନୁରାଧା ।

- "ଆଗ କୁହନା - ତୁମକୁ ଉଲ୍ ବୁଣି ଆସେ ?" ପୁଣି ପଚାରିଲା ବଣ୍ଟି ।

- "କେବେ ଶିଖିଥିଲି - ଆଉ କ'ଣ ମନେ ଅଛି ସେ ସବୁ ?" ଅନୁରାଧା କହିଲେ ।

"ତୁମକୁ ମନେ ପକାଇବାକୁ ହେବ । ଭୁଲିଗଲେ ଚଳିବନି ।" ବଣ୍ଟି କହିଲା ।

- "କାହିଁକି କହନି ?" ପଢୁଥିବା ବହିଟିକୁ ବନ୍ଦ କରିଦେଇ ଅନୁରାଧା କହିଲେ ।

- "ତୁମେ ମୋ ପାଇଁ ଗୋଟେ ସ୍ୱେଟର୍ ବୁଣିଦେବ ।" ବଣ୍ଟିର ଏଇ ଅପୂର୍ବ ଦାବି ଅନୁରାଧାଙ୍କୁ ବିସ୍ମିତ କଲା । "ତୋର ତ କେତେ ନା କେତେ ସ୍ୱେଟର୍, ଟୋପି, କୋଟ୍, ଜ୍ୟାକେଟ୍ ରହିଛି ବାବା - ଏଇ ବୁଢ଼ୀ ଜେଜେମା'କୁ କାହିଁକି ସ୍ୱେଟର୍ ବୁଣିବାକୁ ବରାଦ କରୁଛୁ କହିଲୁ ?"

ବଣ୍ଟି ମୁହଁ ଛାଟି କହିଲା, "ସେଗୁଡ଼ା ତ ସବୁ ବଜାରରୁ କିଣା ଯାଇଥିବା ସ୍ୱେଟର୍ - ମୋର ଗୋଟେ ହାତ ବୁଣା ସ୍ୱେଟର୍ ଦରକାର । ନିଜ ଘରେ ବୁଣା ହୋଇଥିବା ସ୍ୱେଟର୍‌ଟେ ଦରକାର ନିହାତି ।"

- "ହାତବୁଣା ସ୍ୱେଟର୍ କ'ଣ କିଣା ସ୍ୱେଟର୍ ପରି ସୁନ୍ଦର ହେବରେ ଧନ ?" ଦୁର୍ବଳ ଶୁଭିଲା ଅନୁରାଧାଙ୍କ କଣ୍ଠ । ବଣ୍ଟି କିନ୍ତୁ ଜୋର୍ କଣ୍ଠରେ କହିଲା, "କିଏ କହିଲା ? ହାତବୁଣା ସ୍ୱେଟର୍ ଯେମିତି ହେଲେ ବି ସବୁଠୁ ଭଲ । ପୁଣି ମାଆ ବୁଣିଥିଲେ ଆହୁରି ଭଲ । ମୋ ମମ୍ମିକୁ ତ ବେଳ ନାହିଁ - ତୁମେ ବୁଣିଦିଅ ।"

- "ଆଚ୍ଛା - କୋଉଠୁ ଜାଣିଲୁ ମ ଏତେ କଥା ?" ଅନୁରାଧାଙ୍କ ଛାତି ଭିତରଟା କେମିତି ଟହଲିଗଲା ଅଦ୍ଭୁତ ଏକ ଭାବାବେଗରେ । ବଣ୍ଟି ତାଙ୍କ କୋଳରେ ଆଉଜି ପଡ଼ି କହିଲା, "ଆମ କ୍ଲାସ୍‌ରେ ପୀୟୂଷ ବୋଲି ଗୋଟେ ପିଲା ଅଛି । ତା'ର ଗୋଟିଏ ମାତ୍ର

ସ୍ୱେଟର୍‌। ସବୁଦିନ ସେଇ ଗୋଟିକ ପିନ୍ଧିକି ଆସେ ବୋଲି ସାଂଗମାନେ ଥଟ୍ଟା କରନ୍ତି। ମୁଁ ତାକୁ ପଚାରିଲି, ତୋର କ'ଣ ଆଉ ସ୍ୱେଟର୍ ନାହିଁ?" ସେ କହିଲା, "ଆଉ ସ୍ୱେଟର ମୋର କ'ଣ ହେବ? ଏଇ ଗୋଟିକ ସ୍ୱେଟର୍ ମୋର ଯଥେଷ୍ଟ। ଏଇଟା ମୋ ମାଆ ବୁଣିଛି। ଏ ସ୍ୱେଟର୍ ବୁଣିଲା ବେଳେ ମୋ ମାଆ ଖାଲି ମୋ କଥା ଭାବି ବୁଣିଛି ତ। ସେଇଥିପାଇଁ ଏଇଟାକୁ ପିନ୍ଧିଲେ ମୋ ମାଆ ମୋତେ କୋଳରେ ଧରିଥିବା ପରି ଲାଗେ। କେବେ ଲାଗେନି ଯେ ମୋ ମାଆ ଆଉ ନାହିଁ ବୋଲି।"

– "ମାଆ ନାହିଁ ମାନେ? କୁଆଡ଼େ ଯାଇଛନ୍ତି କି ତା' ମାଆ?" ଅନ୍ୟମନସ୍କ ହୋଇ ପଚାରିଦେଲେ ଅନୁରାଧା। "ମରିଯାଇଛନ୍ତି – ବାପା ମାଆ ଦି'ଜଣ ଯାକ। ସେ ମାମୁଁଘରେ ରହି ପାଠ ପଢୁଛି।" ବଣ୍ଟିର ସ୍ୱର ବିଷଣ୍ଣ ମନେହେଲା। ତାକୁ କୋଳକୁ ଟାଣିଆଣି ଆଦର କରି ଅନୁରାଧା କହିଲେ, "ତୋର ତ ସମସ୍ତେ ବଞ୍ଚିଛନ୍ତିରେ ଧନ – ତୋର ଚିନ୍ତା କ'ଣ? ଠିକ୍ ଅଛି – ତୋ ପାଇଁ ମୁଁ ନିଶ୍ଚେ ସ୍ୱେଟରଟିଏ ବୁଣିଦେବି।" ନାତିର ଶୁଖିଲା ମୁହଁ ଦେଖି ବରଦାସ୍ତ କରି ପାରିଲେ ନାହିଁ ଅନୁରାଧା – ତୁରନ୍ତ ପ୍ରତିଶ୍ରୁତି ଦେଇଦେଲେ। ବଣ୍ଟି ଖୁସି ହୋଇ ଜେଜେମାଙ୍କୁ 'ପପି' ଦେଇ "ଥ୍ୟାଙ୍କ୍ ୟୁ" କହି ଚାଲିଗଲା ଖେଳିବା ପାଇଁ। ନିଜ ଅଜାଣତରେ କିନ୍ତୁ ଅବୋଧ ଶିଶୁଟି ଅନୁରାଧାଙ୍କୁ ବିଷଣ୍ଣତାର ଗହ୍ୱର ମଧ୍ୟକୁ ଠେଲି ଦେଇଗଲା। ସୁଦୂର ଅତୀତର କଥା- ସେଇ ମର୍ମାନ୍ତିକ ସ୍ମୃତିକୁ ଉଜାଗର କରିଦେଇଗଲା ତାଙ୍କ ମନରେ।

ଉଲ୍ ବୁଣିବା ଯେମିତି ପ୍ରବଳ ନିଶା ଥିଲା ଅନୁରାଧାଙ୍କର। ଝିଅଦିନରୁ ଯେବେଠାରୁ ଉଲ୍‌କଣ୍ଟା ଧରି ଶିଖିଲେ, ଗଦା ଗଦା ସ୍ୱେଟର୍, ମଫ୍‌ଲର, ଟୋପି, ହେଡ୍ ସ୍କାର୍ଫ, ମୋଜା ଇତ୍ୟାଦି ବୁଣୁଥିଲେ ସେ। ନିଜ ଘର ଲୋକମାନଙ୍କ ସହିତ ସାହିପଡ଼ିଶା, ବନ୍ଧୁବାନ୍ଧବ, ସମସ୍ତଙ୍କ ପାଇଁ ବୁଣିବାରେ ପ୍ରଚୁର ଆନନ୍ଦ ପାଉଥିଲେ ସେ। ସାନପିଲାଙ୍କର ଏକୋଇଶା କି ଜନ୍ମଦିନରେ ସେ ଉଲେନ୍ ସେଟ୍‌ଟିଏ ନିଶ୍ଚୟ ନିଜେ ବୁଣି ଉପହାର ଦେଉଥିଲେ। ମନରୁ ଭାବି ସେ ଏତେ ସୁନ୍ଦର ସୁନ୍ଦର ଡିଜାଇନ୍ ବାହାର କରୁଥିଲେ – ସେସବୁ ଦେଖି ଲୋକଙ୍କର ଆଖି ଲାଖି ଯାଉଥିଲା। ଏହା ବ୍ୟତୀତ ବିଭିନ୍ନ ପତ୍ର ପତ୍ରିକା ତଥା ବହି ଦେଖି ନୂଆ ନୂଆ ଡିଜାଇନ୍ ସଂଗ୍ରହ କରୁଥିଲେ। ଯେତେବେଳେ ଦେଖିବ, ଅନୁରାଧାଙ୍କ ହାତରେ ଉଲ୍ କଣ୍ଟା ଏବଂ କୋଳରେ ଉଲ୍ ଗୋଲାଟିଏ। ଗପସପ କଲାବେଳେ, ଟି.ଭି. ଦେଖିବା ବେଳେ କି ଗାଡ଼ି ମଟରରେ ଗଲାବେଳେ ବି ତାଙ୍କର ହାତ ସ୍ଥିର ହୋଇ ରହୁ ନଥିଲା। ତାଙ୍କର ଏଇ ନିଶା ଦେଖି ତାଙ୍କ ବୋଉ ଭୀଷଣ ବିରକ୍ତ ହେଉଥିଲେ – ଏମିତି ଦିନରାତି ଉଲ୍ ବୁଣି ବୁଣି ଆଖି ଦି' ଟାକୁ ନଷ୍ଟ କରିଦେବ ଏ ଝିଅ। ଆଖି ଖରାପ ହୋଇଗଲେ ତା ପାଇଁ ମନଲାଖୀ ବରଟିଏ ବି ଯୋଗାଡ଼ ହୋଇ ପାରିବ ନାହିଁ।

ଅନୁରାଧାଙ୍କ ପାଇଁ ବର ଖୋଜିବାରେ ସେମିତି କିଛି ଅସୁବିଧା ହୋଇନଥିଲା। କହିବାକୁ ଗଲେ ବରଘର ତରଫରୁ ହିଁ ବହୁତ ଆଗ୍ରହ ପ୍ରକାଶ ପାଇଥିଲା ତାଙ୍କୁ ବୋହୂ କରିନେବା ପାଇଁ। ମଧ୍ୟସ୍ଥିର ସହାୟତାରେ ପ୍ରସ୍ତାବ ପଡ଼ିଥିଲେ ହେଁ କନ୍ୟାଦେଖା ପରେ ଅନୁରାଧାଙ୍କର ବାପା ବୋଉଙ୍କୁ ଆଉ ତର ଦେଇ ନଥିଲେ ବରପକ୍ଷ। ଅନୁରାଧାଙ୍କ ପରି ଅପୂର୍ବ ସୁନ୍ଦରୀ ଝିଅଟେ କାଳେ ହାତଛଡ଼ା ହୋଇଯିବ - ସେଥିପାଇଁ ଯେତେ ଶୀଘ୍ର ସମ୍ଭବ ବାହାଘର କରି ଦେଇଥିଲେ। ରୂପସୀ ଝିଅଟିଏ ବ୍ୟତୀତ ଆଉ କିଛି ଡିମାଣ୍ଡ ନଥିଲା ସେମାନଙ୍କର। ତେଣୁ ଅନୁରାଧାଙ୍କର ବାପାବୋଉ ମଧ୍ୟ ଖୁସି ହୋଇଥିଲେ। ସେମାନଙ୍କର କ୍ଷମତା ମୁତାବକ ଯାହା ଯାହା ସମ୍ଭବ ହୋଇଥିଲା, ଝିଅ ପାଇଁ ସଜାଡ଼ି ଦେଇଥିଲେ। ତା' ସହିତ ହସ୍ତକର୍ମନିପୁଣା କନ୍ୟାର କିଛି କଳାନୈପୁଣ୍ୟର ସନ୍ତକ ମଧ୍ୟ ସଜାଡ଼ି ଦେଇଥିଲେ ଗୋଟିଏ ସୁଟ୍‌କେଶ୍‌ରେ। ହାତ ବୁଣା କୁଶ୍‌ନ ଟେବୁଲ୍ କଭର, ଟିପୟ କଭର, ଗ୍ଲାସ କଭର, ଏମ୍ବ୍ରୋଡରୀ ବେଡ୍ କଭର୍, ଡ୍ରେସିଂ ମିରର୍‌ର ଝାଲର୍, ଉଲ୍ ତିଆରି କଣ୍ଢେଇ, ଶାଲ୍, କାର୍ଡ଼ିଗନ୍ ଏମିତି କେତେ କ'ଣ। ତାଙ୍କ ଘରୁ ସେ କ'ଣ ଆଣିଥିଲେ - ନ ଆଣିଥିଲେ ସେ କଥା ନେଇ ଶାଶୁଘରେ କେହି ମୁଣ୍ଡ ଖେଳାଉ ନଥିଲେ କି ପଚାରୁ ନଥିଲେ। ବରଂ ତାଙ୍କର ଯାହା ଯାହା ଦରକାର - ଅନାୟାସରେ ସେସବୁ ଆସି ପହଞ୍ଚି ଯାଉଥିଲା ତାଙ୍କ ହାତ ପାଖରେ। ଅନୁରାଧାଙ୍କର ସୌନ୍ଦର୍ଯ୍ୟ ବ୍ୟତୀତ ଆଉ କିଛି ଆବଶ୍ୟକତା ନଥିଲା ସେମାନଙ୍କର। ସାହିପଡ଼ିଶା, ବନ୍ଧୁବାନ୍ଧବ, ଜ୍ଞାତି କୁଟୁମ୍ବ ସମସ୍ତେ ଭୁରି ଭୁରି ପ୍ରଶଂସା କରୁଥିଲେ ସୁନ୍ଦରୀ ବୋହୂଟିକୁ ଦେଖି। ଘର ଆଲୁଅ କରିଦେବା ପରି ବୋହୂ ବୋଲି ସମସ୍ତେ କହୁଥିଲେ। କେବଳ ଭଲ ଭଲ ଶାଢ଼ି ପିନ୍ଧି, ଗହଣାରେ ମଣ୍ଡିହୋଇ, ସଜବାଜ ହୋଇ ବସିବା ଛଡ଼ା ଆଉ କିଛି ବୋଲି କିଛି କାମ ନଥିଲା ଅନୁରାଧାଙ୍କର। ଏତେସବୁ ପ୍ରଶଂସା ଭିତରେ ଖୁବ୍ ଅସ୍ୱସ୍ତି ଅନୁଭବ କରୁଥିଲେ ଅନୁରାଧା। ଅନବରତ କଣ୍ଟାଟିଏ ଯେମିତି ଫୋଡ଼ି ହୋଇଯାଉଥିଲା ତାଙ୍କ ଛାତି ଭିତରେ - ତାଙ୍କୁ ରକ୍ତାକ୍ତ କରି ଦେଉଥିଲା ଅବ୍ୟକ୍ତ ଯନ୍ତଣାରେ । ସୁନ୍ଦର ଶରୀରଟିଏର ଅଧିକାରିଣୀ ବ୍ୟତୀତ ନିଜର ଆଉ କିଛି ଅସ୍ତିତ୍ୱ ଥିବା ଭଳି ମନେ ହେଉ ନଥିଲା ତାଙ୍କର।

ଅନୁରାଧାଙ୍କୁ ଖୁବ୍ ଭଲ ରାନ୍ଧି ଆସେ। କିନ୍ତୁ ରୋଷେଇ ଘରକୁ ଯିବା ନିଷେଧ ଥିଲା ତାଙ୍କ ପାଇଁ। କେବଳ ତାଙ୍କ ପାଇଁ ନୁହେଁ - ପରିବାରର ଝିଅ, ବୋହୂ କେହି ହେଲେ ରୋଷେଇ ଘରକୁ ଯିବା ମନା ଥିଲା। ରାନ୍ଧିବା ପାଇଁ ଲୋକ ଥିଲେ - କେବଳ ଘରର କର୍ତ୍ତ୍ରୀ ହିସାବରେ ଅନୁରାଧାଙ୍କ ଶାଶୁ ପ୍ରତିଦିନର ଖାଦ୍ୟ ତାଲିକା ଦେଇ ଦେଉଥିଲେ ପୂଜାରୀଙ୍କୁ। ବାସ୍ - ସେତିକିରେ ତାଙ୍କର କାମ ଶେଷ। ତେଣିକି ପୂଜାରୀ ଯାହା ବି ରାନ୍ଧିବ - ସେଇଆ ଖାଇବାକୁ ସମସ୍ତେ ବାଧ୍ୟ। ନୂଆ ନୂଆ ବାହାହୋଇ ଆସିବା ପରେ ଅନୁରାଧା ଥରଟିଏ

ଭୋଅରରୁ ଉଠି ସମସ୍ତଙ୍କ ପାଇଁ ଚା' କରିବେ ବୋଲି ରୋଷେଇଘରକୁ ଯାଇଥିଲେ। ସସ୍‌ପେନ୍‌ଟିକୁ ଚୁଲିରେ ବସେଇଛନ୍ତି କି ନାହିଁ ପୂଜାରୀ ଆସି ବ୍ୟସ୍ତ ହୋଇ କହିଲା, "ସାନ ମା, ଏଇ ବୁଢ଼ାଦିନରେ ମୋର ଚାକିରି ଖଣ୍ଡିକ ଚାଲିଯିବ। ମାଆ କି ବାବୁ ଯଦି ଜାଣିବେ ତୁମେ ରୋଷେଇ ଘରେ ଆସି କାମ କରିଛ, ସାଂଗେ ସାଂଗେ ବିଦା କରିଦେବେ ମୋତେ।"

– "ବିଦା କରିଦେବେ ?" ଅସ୍ଫୁଟ ଭାବରେ ବିସ୍ମୟ ପ୍ରକାଶ କରିଥିଲେ ଅନୁରାଧା। "ତୁମକୁ କାମ କରିବାକୁ ଛାଡ଼ିଦେଇଛି ବୋଲି।" ପୂଜାରୀ କହିଥିଲା।

–"ଚା' କରିବା କ'ଣ ଗୋଟେ କାମ ନା କ'ଣ ? ହେଲେ ବି – ନିଜ ଘରେ କାମ କଲେ ଦୋଷ କ'ଣ ଯେ ?" ଅନୁରାଧା ଅବୁଝା କଣ୍ଠରେ ପଚାରିଥିଲେ ବୁଢ଼ା ପୂଜାରୀଟିକୁ। "କୋଉ ଦୁଃଖରେ ତୁମେ କାମ କରିବ ସାନ ମା' ? ଏ ଘରେ ଏତେ ଚାକର ବାକର ରହିଛନ୍ତି, କ'ଣ ପାଇଁ ? ନିଆଁ ଧାସ ବାଜିଲେ ତୁମେ ରଂଗ ଖରାପ ହୋଇଯିବ। କାମ କଲେ ହାତ ଟାଣ ହୋଇଯିବନି ?" ପୂଜାରୀ ଚା' କରୁ କରୁ କହିଥିଲା।

ଦୀର୍ଘଶ୍ୱାସ ପକେଇ ଅନୁରାଧା ଲେଉଟି ଆସିଥିଲେ ନିଜ ରୁମ୍‌କୁ। ବାପଘରେ ଥିଲାବେଳେ ସେ କେତେକାମ କରୁଥିଲେ – ଏମାନେ କ'ଣ ଜାଣନ୍ତି ? ନୂଆ ନୂଆ ରାନ୍ଧଣା କରି ଅନ୍ୟକୁ ଖୁଆଇ ସେ ପରିତୃପ୍ତ ହେଉଥିଲେ। ତା' ବ୍ୟତୀତ ଘର ସଫା, ଘର ସଜଡ଼ା, ବଗିଚା କାମ ସବୁ ତ ସେ ଅନ୍ୟ ଭଉଣୀ ଦୁହିଁଙ୍କ ସହିତ ମିଳିମିଶି କରୁଥିଲେ। ଏମାନଙ୍କ ଘରକୁ ଆସି ଲହୁଣୀ ପିତୁଳା ପାଲଟି ଯିବାର କୌଣସି କାରଣ ନାହିଁ। କିନ୍ତୁ ଯେତେହେଲେ ନୂଆବୋହୂ ସେ; ପାଟିଖୋଲି କାହାକୁ କିଛି କହିବାକୁ ବା ବୁଝାଇବାକୁ ସଙ୍କୋଚ ଲାଗୁଥିଲା ତାଙ୍କୁ, ମାତ୍ର ଅନବରତ କିଛି ନା କିଛି କାମ ନେଇ ମାତି ରହୁଥିବା ହାତ ଦୁଇଟିକୁ ନିଷ୍କର୍ମା କରି ରଖିବାକୁ ଭଲ ଲାଗୁନଥିଲା। ସମୟ ଦେଖି ନିଜର ହସ୍ତକର୍ମ ଜିନିଷ ଥିବା ସୁଟ୍‌କେଶ୍‌ଟିକୁ ଖୋଲିଥିଲେ ସେ। ଭାରି ଇଚ୍ଛା ହେଉଥିଲା ଶାଶୁଘରର ଲୋକମାନଙ୍କୁ ନିଜର କଳାକୁଶଳତାର ନମୁନା ଗୁଡ଼ିକ ଦେଖାନ୍ତେ। ଏମାନଙ୍କ ଘରେ ସିଲେଇ ବା ବୁଣାବୁଣି ପ୍ରତି କାହାରି ଆଗ୍ରହ ନାହିଁ। ଯେତେବେଳେ ଦେଖିବ ସମସ୍ତଙ୍କ ହାତରେ ବହି ଖଣ୍ଡେ ନହେଲେ ପତ୍ରିକାଟିଏ। ଘର ଲୋକଙ୍କ ଦେଖାଦେଖି ଚାକର ପିଲାଟି ମଧ୍ୟ ଅବସର ମିଳିଲେ ଗପବହି ବା ପତ୍ରିକାଟିଏ ଲେଉଟାଇ ଦେଖୁଥିଲା। ଶାଶୁ, ଶ୍ୱଶୁର, ସ୍ୱାମୀ, ନଣନ୍ଦ – ସମସ୍ତଙ୍କର ପସନ୍ଦ ମୁତାବକ ଗୁଡ଼ାଏ ପତ୍ର ପତ୍ରିକା କିଣା ହେଉଥିଲା ପ୍ରତି ମାସରେ। ବହି ପଢ଼ାରେ ଆଦୌ ଆଗ୍ରହ ନଥିଲା ଅନୁରାଧାଙ୍କର। କେବଳ ମହିଳା ପତ୍ରିକା ଗୁଡ଼ିକ ଖେଳାଇ ସେଥିରୁ ସିଲେଇ, ବୁଣାବୁଣି ଅଥବା ରନ୍ଧନ ସମ୍ପର୍କୀୟ ଲେଖାଗୁଡ଼ିକ ଦେଖୁଥିଲେ।

ସୁଟ୍‌କେଶ୍‌ରୁ ଉଲ୍ କିଛି ପାଇଥିଲେ ଖୁସି ହୋଇଥାଆନ୍ତେ ସେ। ମାତ୍ର ନୂଆ ଉଲ୍

ବା କୋଉଠୁ ଆସିବ ତା' ଭିତରେ। କୃଶ୍ କଣ୍ଟାଟିଏ ଏବଂ ସୂତା ବିଡାଟିଏ ପାଇ ନିଜକୁ ବ୍ୟସ୍ତ ରଖିବାର ସାମାନ୍ୟ ଉପାୟଟିଏ ପାଇଗଲେ। ଆଙ୍ଗୁଠିରେ ସୂତା ଗୁଡେଇ କୃଶ୍‌ରେ ଫୁଲଟିଏ ବୁଣିବା ଆରମ୍ଭ କରିଦେଲେ ସେ। ଅନୁରାଧାଙ୍କ ସ୍ୱାମୀ ଅଂଶୁମାନ ସେଦିନ ଅଫିସ୍‌ରୁ ଫେରି ତାଙ୍କ ହାତରେ କୃଶ୍ ବୁଣା ଦେଖି ଭୀଷଣ ରାଗି ଯାଇଥିଲେ। ଆଙ୍ଗୁଠିରେ ସୂତାଗୁଡ଼ା ଯାଇଥିବା ସ୍ଥାନଟି ସାମାନ୍ୟ ଦବି ଯାଇ ଚିହ୍ନ ହୋଇ ଯାଇଥିଲା। ଅଂଶୁମାନ୍ ତାଙ୍କ ହାତରୁ କୃଶ୍, ସୂତା ଇତ୍ୟାଦି ଟାଣି ଫୋପାଡ଼ି ଦେଇଥିଲେ ଏବଂ ସେଇ ଆଙ୍ଗୁଠି ଉପରେ ଓଠ ରଖି କେତେ ନା କେତେ ଆଦର କରିଥିଲେ। ସ୍ୱାମୀଙ୍କର ତାଙ୍କ ପ୍ରତି ରହିଥିବା ଗଭୀର ଆକର୍ଷଣ ଅନୁରାଧାଙ୍କୁ କିଛି ସମୟ ପାଇଁ ଅଭିଭୂତ କରିଥିଲା । କିନ୍ତୁ ତାଙ୍କର ବକ୍ତବ୍ୟ ତାଙ୍କୁ ମର୍ମାହତ କରିଥିଲା, "ଏଇ ସୁନ୍ଦର ଆଙ୍ଗୁଳି ଗୁଡ଼ିକୁ କଷ୍ଟ ଦେବାର ଅଧିକାର ତୁମକୁ କିଏ ଦେଲା କହିଲ ? ଏ ଆଙ୍ଗୁଠି ମୋର, ଏଇ ଦେହଟା ମୋର। ଏଇ ସୁନ୍ଦର ଦେହର କୋଉଠି ବି ଏତେଟିକେ ଦାଗ ଲାଗିଲେ, ଆଘାତ ଲାଗିଲେ ମୁଁ ଆଦୌ ବରଦାସ୍ତ କରିବି ନାହିଁ କି ତୁମକୁ କ୍ଷମା କରିବିନି। ଏକଥା ମନେ ରଖିଥିବ।"

ଆଉ ମନ ? ଅନୁରାଧାଙ୍କ ମନରେ ଦାଗ ଲାଗିଲେ, ଆଘାତ ଲାଗିଲେ ତାଙ୍କର କିଛି ଯାଏ ଆସେ ନାହିଁ ? ? କ୍ରମେ ଏଇ ଧାରଣା ହିଁ ସୁଦୃଢ଼ ହେଉଥିଲା ଅନୁରାଧାଙ୍କ ମନରେ। ଅଂଶୁମାନ୍ ତାଙ୍କୁ ଖୁବ୍ ଭଲ ପାଉଥିଲେ, ଦୃଷ୍ଟି ଆଢୁଆଳ କରିବା ପାଇଁ ଚାହୁଁନଥିଲେ। କିନ୍ତୁ ଅନୁରାଧାଙ୍କର ମନେ ହେଉଥିଲା ସେମାନଙ୍କର ସମ୍ପର୍କ ଯେମିତି ଖାଦ୍ୟ ଆଉ ଖାଦକର ସମ୍ପର୍କ ଭଳି। ତାଙ୍କର ସ୍ୱାମୀଙ୍କ ପାଇଁ ସେ ଲୋଭନୀୟ ଭୋଜ୍ୟ ପଦାର୍ଥଟିଏ ହୋଇ ରହିଥିଲେ ଏବଂ ସେଇଭଳି ହିଁ ତାଙ୍କୁ ରଖିବା ପାଇଁ ଚାହୁଁଥିଲେ ଅଂଶୁମାନ୍। ନିୟମିତ ଭାବରେ ବିୟୁଟି ପାର୍ଲର୍ ନେବା, ଯେତେ ପ୍ରକାର ଏବଂ ଯେତେ ମୂଲ୍ୟବାନ୍ ପ୍ରସାଧନ ସାମଗ୍ରୀ ଅନୁରାଧାଙ୍କର ସୌନ୍ଦର୍ଯ୍ୟକୁ ବିକଶିତ କରିବ - ସେସବୁ ଆଣି ଦେବାରେ ଆଦୌ କାର୍ପଣ୍ୟ ଦେଖାଉନଥିଲେ ସେ। ନିଜର ପ୍ରକୃତିଦତ୍ତ ସୌନ୍ଦର୍ଯ୍ୟକୁ ନେଇ ସରଳ ଏବଂ ନିରାଡ଼ମ୍ବର ଜୀବନ କାଟିବାକୁ ଚାହୁଁଥିବା ଅନୁରାଧା କିନ୍ତୁ ବ୍ୟତିବ୍ୟସ୍ତ ହୋଇ ଯାଉଥିଲେ ସ୍ୱାମୀଙ୍କର ଇଚ୍ଛା ଏବଂ ଦାବିମାନଙ୍କୁ ବାଧ ହୋଇ ପୂରଣ କରିବାକୁ ପଡୁଥିବା ଯୋଗୁଁ। ଅଂଶୁମାନଙ୍କର ପ୍ରଚଣ୍ଡ କ୍ରୋଧୀ ସ୍ୱଭାବ ସମ୍ପର୍କରେ ଜାଣିଯିବା ପରେ ସେ ପ୍ରତିବାଦ କରିବାର ସାହସ ଠୁଳ କରି ପାରୁନଥିଲେ।

ବର୍ଷଟିଏ ବିତି ଯାଇଥିଲା ଯା' ମଧ୍ୟରେ। ଅଂଶୁମାନ୍ ଏବଂ ଅନୁରାଧାଙ୍କର ପ୍ରଥମ ବିବାହ ବାର୍ଷିକୀ ପାଖେଇ ଆସୁଥିଲା। ଡିସେମ୍ବରର ହାଡ଼ଥରା ଶୀତରେ ସେମାନଙ୍କର ବାହାଘର ହୋଇଥିଲା। ବିବାହ ବାର୍ଷିକୀ କଥା ଭାବି ଅନୁରାଧା ଟିକେ ରୋମାଣ୍ଟିକ୍ ହୋଇଯାଇଥିଲେ। ସ୍ୱାମୀଙ୍କୁ ଉପହାର ଦେବାପାଇଁ ସେ ସ୍ୱେଟରଟିଏ ବୁଣୁଥିଲେ ଲୁଚାଇ

ଲୁଚାଇ। ଅଂଶୁମାନଙ୍କୁ ଆଶ୍ଚର୍ଯ୍ୟ କରିଦେବେ ବୋଲି ତାଙ୍କ ଉପସ୍ଥିତିରେ ନିଜର ବୁଣା ସାମଗ୍ରୀ ସେ ବାହାର କରୁ ନଥିଲେ। ଖୁବ୍ ସୁନ୍ଦର ରଂଗର ଉଲ୍ ସେ ବାଛିଥିଲେ ଏବଂ ନିଜର ସମସ୍ତ କଳା - ନିପୁଣତାକୁ ଏକତ୍ର କରି ଚମତ୍କାର ଡିଜାଇନ୍‌ର ସ୍ୱେଟର୍‌ଟିଏ ବୁଣୁଥିଲେ।

ଅବଶେଷରେ, ସେହି ପ୍ରତୀକ୍ଷିତ ଦିନଟି ଆସିଗଲା। ଅଂଶୁମାନ୍ ଅଫିସ୍ ବାହାରିଲା ବେଳକୁ ଆଲ୍‌ମିରାରୁ ବାହାର କରି ଅନୁରାଧା ସ୍ୱାମୀଙ୍କ ହାତରେ ଧରାଇଦେଲେ ତାଙ୍କର ପ୍ରୀତ୍ୟୁପହାରଟି।

- "କ'ଣ ଏଇଟା ?"

- "ଦେଖ ତ।"

- "ଦେଖୁଛି ତ। କ'ଣ ହେବ ?"

- "କ'ଣ ହେବ ମାନେ ? ତୁମେ ପିନ୍ଧିବ।"

- "ଛି - ଏଇ ବୁଣା ସ୍ୱେଟର୍‌ଟା ପିନ୍ଧି ମୁଁ ଅଫିସ୍ ଯିବି। ତୁମ ମୁଣ୍ଡ ଖରାପ ନା କ'ଣ ?"

- "ମୁଁ ଏଇଟା ନିଜେ ବୁଣିଛି ତୁମ ପାଇଁ।" ଅନୁରାଧା କାନ୍ଦ କାନ୍ଦ ହୋଇଗଲେ।

- "କାମ ନଥିଲା କି ତୁମର କିଛି। ସମୟର ଅଯଥା ଅପବ୍ୟୟ। କେବେ ଦେଖିଛ - ହାତବୁଣା ସ୍ୱେଟର୍ ମୁଁ ପିନ୍ଧିବାର ? ମୋତେ ଭଲ ଲାଗେନି। ଆମ ଘରେ କାହାକୁ ବି ପସନ୍ଦ ନୁହେଁ। ତୁମକୁ ମୁଁ ମନା କରିଥିଲି ନା ସେସବୁ ବାଜେ କାମ କରି ହାତ ଖରାପ କରିବନି ବୋଲି ? ଆଖି ଉପରେ ବି ପ୍ରେସର୍ ପଡ଼ିବ। ଖାତିର୍ ନାହିଁ ଜମା ମୋ କଥାକୁ ?" ସ୍ୱେଟେର୍‌ଟାକୁ ଖଟ ଉପରକୁ ଫୋପାଡ଼ି ଦେଇ ଚାଲିଗଲେ ଅଂଶୁମାନ। ଲୁହ ଆଉ କୋହରେ ଏକାକାର ହୋଇ ଅନୁରାଧା ସେଇ ସ୍ୱେଟର୍‌ଟିକୁ ଛାତିରେ ଧରି ଲୋଟି ପଡ଼ିଲେ ବିଛଣାରେ। ଅଂଶୁମାନ କେମିତି କହିପାରିଲେ ଏମିତି କଥା - ପୁଣି ଆଜି ଦିନରେ ? ଏଇ ସ୍ୱେଟେର୍ ପାଇଁ ଉଲ୍ କିଣିବା ଠାରୁ ପ୍ରତ୍ୟେକ ଫାଶ ବାନ୍ଧିବା ଯାଏ - ପ୍ରତ୍ୟେକ ଘର ଉଠେଇବା ବେଳେ ସେ କେବଳ ଅଂଶୁମାନଙ୍କ କଥା ଭାବିଛନ୍ତି। ସ୍ୱାମୀଙ୍କ ପ୍ରତି ଅଜସ୍ର ଭଲପାଇବାକୁ ସେ ଗୋଟି ଗୋଟି କରି ସଜାଡ଼ି ଗୁନ୍ଥି ଦେଇଥିଲେ ସେଇ ସ୍ୱେଟେର୍ ଭିତରେ। ସ୍ୱେଟେର୍‌ଟିକୁ ଅଂଶୁମାନ୍ ଫୋପାଡ଼ି ଦେଲେନି ଯେ ଫୋପାଡ଼ି ଦେଲେ ଅନୁରାଧାଙ୍କର ଅନାବିଳ ପ୍ରେମାନୁରାଗକୁ - ଯାହା ତାଙ୍କ ପାଇଁ ମୂଲ୍ୟହୀନ, ଅବାନ୍ତର। ଅଫିସକୁ ପିନ୍ଧି ନ ଯାଇଥିଲେ ବି ଅନୁରାଧାଙ୍କ ମନ ରଖିବା ପାଇଁ ଥରକ ପାଇଁ ତ ଦେହରେ ଗଳାଇ ପାରିଥାଆନ୍ତେ- ନଚେତ୍ 'ଏବେ ସମୟ ନାହିଁ - ପରେ ପିନ୍ଧିବି' ବୋଲି କହି ପାରିଥାଆନ୍ତେ। କେତେ ନିଷ୍ଠୁର ଭାବରେ ଫିଙ୍ଗିଦେଇ ଚାଲିଗଲେ ସେ।

ଆଖି ଲୁହରେ ତକିଆ ତିନ୍ତିଯାଇଥିଲା। କିଛି ସମୟ କାନ୍ଦିବା ପରେ ବିଛଣାରୁ ଉଠି ପଡ଼ିଲେ ସେ। କବାଟ ଖୋଲା ଅଛି। କିଏ ଚାଲି ଆସିବ ଭିତରକୁ। ତାଙ୍କ ଆଖି ଲୁହର କୈଫିୟତ୍ କାହା ପାଖରେ ଦେବାକୁ ଲଜ୍ଜା ଲାଗିବ ତାଙ୍କୁ। ଲୁହ ପୋଛି ସେ ସ୍ୱେଟର୍‌ଟିକୁ ନିରୀକ୍ଷଣ କଲେ। ଭୀଷଣ ଅଭିମାନରେ ସ୍ୱେଟର୍‌ଟିକୁ ଟିକ୍ ଟିକ୍ କରି କାଟି ଦେବେ କି  ଖୋଲି ଭିଣିଭିଣା କରିଦେବେ ବୋଲି ଭାବୁଛନ୍ତି- ଚାକର ପିଲାଟି ଆସି ଡାକିଲା, "ସାନ ମା - ଖାଇବ ଆସ। ବଡ଼ ମା ଡାକୁଛନ୍ତି।" ଚଉଦ, ପନ୍ଦର ବର୍ଷର କିଶୋରଟି ଡିସେମ୍ବର କୋହଲା ପାଗ ଦିନଟିରେ ଶୀତରେ କୁଙ୍କୁରି କାଙ୍କୁରି ହୋଇ ଠିଆ ହୋଇଥିଲା। କ'ଣ ଭାବି ଅନୁରାଧା ସ୍ୱେଟର୍‌ଟି ତାକୁ ବଢ଼ାଇଦେଇ କହିଥିଲେ, "ଏଇଟା ନେଇ ପିନ୍ଧିପକା- ଶୀତରେ ଥରୁଛୁ କାହିଁକି ?"

ଅନାହୂତ ଖୁସିରେ ଉଜ୍ଜ୍ୱଳ ଦିଶିଥିଲା କିଶୋରଟିର ମୁହଁ। ତରବର ହୋଇ ସ୍ୱେଟର୍‌ଟି ପିନ୍ଧିପକାଇଥିଲା ସେ। ସମସ୍ତଙ୍କୁ ଦେଖାଇ ଥିଲା। ଯିଏ ଦେଖିଲେ, ପ୍ରଶଂସା ନ କରି ରହି ପାରିନଥିଲେ। "ବାଃ - ଭାରି ସୁନ୍ଦର ହୋଇଛି - କିଏ ଦେଲାରେ ?"

"ସାନ ମା' ଦେଇଛନ୍ତି।" ପିଲାଟି ଖୁସିହୋଇ କହିଥିଲା।

"ହଁ, ପାଖରେ ଥିଲା ତ - ଦେଇଦେଲି।" ନିଜେ ବୁଣିଛି ବୋଲି କହି ନଥିଲା ଅନୁରାଧା।

ଅଂଶୁମାନ ସେଦିନ ଅଫିସ୍‌ରୁ ଶୀଘ୍ର ଫେରିଥିଲେ। ହାତରେ ତାଙ୍କର ପ୍ୟାକେଟ୍‌ଟିଏ ଥିଲା। ବିବାହ ବାର୍ଷିକୀ କଥା ମନେ ପଡ଼ି ଯାଇଥିବାରୁ ଅନୁରାଧାଙ୍କ  ପାଇଁ ସୁନ୍ଦର ଶାଢ଼ିଟିଏ ଆଣିଥିଲେ ସେ। ସକାଳର ବ୍ୟବହାର ପାଇଁ ସେ ଲଜ୍ଜିତ ହୋଇଥିଲେ। ଅଭିମାନିନୀ ପତ୍ନୀର ମାନଭଞ୍ଜନ କରି କୁଆଡ଼େ ଟିକେ ବୁଲାଇ ନେଇଯିବେ କି ସିନେମା ଫିନେମା ଗୋଟେ ଦେଖାଇବେ ବୋଲି ଠିକ୍ କରି ସେ ଘରକୁ ସଅଳ ଆସିଥିଲେ। କିନ୍ତୁ ଘରେ ପହଞ୍ଚୁ ପହଞ୍ଚୁ ତାଙ୍କର ମୁଡ୍ ଖରାପ ହୋଇଗଲା ଚାକର ପିଲା ଦେହରେ ତାଙ୍କ ପାଇଁ ବୁଣା  ହୋଇଥିବା ସ୍ୱେଟର୍‌ଟି ଦେଖି। ସିଏ ନ ପିନ୍ଧିଲେ ବୋଲି ତାଙ୍କର ପ୍ରିୟତମାର ଚମ୍ପକ ଆଙ୍ଗୁଳିର ସହାୟତାରେ ବୁଣା ଯାଇଥିବା ସ୍ୱେଟର୍‌ଟିର ଅଧିକାରୀ ହୋଇଯିବ ସାମାନ୍ୟ ଚାକର ପିଲାଟା। ଈର୍ଷାରେ ନୀଳ ପଡ଼ିଯାଇଥିଲା ତାଙ୍କ ମୁହଁ। ଶାଢ଼ି ପ୍ୟାକେଟ୍‌ଟିକୁ ଟେବୁଲ୍ ଉପରେ ଫୋପାଡ଼ି ଦେଇ ଗୁମ୍‌ସୁମ୍ ହୋଇ ବସି ରହିଥିଲେ ସେ। ଅନୁରାଧା ବୁଝି ପାରୁଥିଲେ ତାଙ୍କ ବିରକ୍ତିର ହେତୁ । ବିବାହବାର୍ଷିକୀ ପରି ଦିନଟାରେ ଏମିତି ମୁହଁ ଭାରି କରି ରହିଲେ ଅଂଶୁମାନ୍। ଅନୁରାଧାଙ୍କୁ ଖରାପ ଲାଗିଲେ ବି ଉପରେ ପଡ଼ି ତାଙ୍କୁ କିଛି କହିବାକୁ ସାହସ କରିନଥିଲେ ସେ। ପରେ ଅବଶ୍ୟ ରାଗ ଥଣ୍ଡା ହେବାପରେ ଅଂଶୁମାନ କହିଥିଲେ - ଚାକର ପିଲାଟି ଦେହରେ ଅନୁରାଧାଙ୍କର ହାତବୁଣା ସ୍ୱେଟର୍‌ଟି

ଦେଖି ତାଙ୍କର ମନେ ହୋଇଥିଲା ନିଜେ ଅନୁରାଧା ଯେମିତି ଜୀବୃତ୍ତି ଧରିଛନ୍ତି ସେଇ ଚାକର ପିଲାଟିକୁ । ଛି ! ଏମିତି ମନ ଅଂଶୁମାନ୍‌ଙ୍କର ! ଏଭଳି ଖରାପ କଥା ସେ ଭାବି ପାରନ୍ତି ଅନୁରାଧାଙ୍କୁ ନେଇ ! ବିତୃଷ୍ଣାରେ ମନ ଭରିଯାଇଥିଲା ଅନୁରାଧାଙ୍କର । ଅନେକ ଦିନ ପର୍ଯ୍ୟନ୍ତ ସେମାନଙ୍କ ମଧ୍ୟରେ ଭଲରେ କଥାବାର୍ତ୍ତା ହୋଇ ନଥିଲା । ଚାକର ପିଲାଟିକୁ ଦେଖିଲେ ଅକାରଣରେ ଅଂଶୁମାନ୍ ଚିଡ଼ିଚିଡ଼ି ହେଉଥିଲେ । ବିଶେଷକରି ଅନୁରାଧାଙ୍କର ହାତବୁଣା ସ୍ୱେଟର୍‌ଟି ସେ ପିନ୍ଧିଥିବାର ଦେଖିଲେ ତାଙ୍କର ରାଗ ପଞ୍ଚମକୁ ଉଠିଯାଉଥିଲା । ବିନା ଦୋଷରେ ବିଚରାଟି ଚଡ଼ା ଖାଇଲା ଅଂଶୁମାନଙ୍କର ଅସନ୍ତୋଷ ହେତୁ ।

ଚାକର ପିଲାଟି ବିଦା ହୋଇଯିବା ପରେ ଅଂଶୁମାନ୍ ପୁଣି ସହଜ ହୋଇଯିବେ ବୋଲି ଅନୁରାଧା ଭାବିଥିଲେ । ମାତ୍ର ଅଂଶୁମାନଙ୍କର ଚରିତ୍ର ଥିଲା ଭିନ୍ନ ପ୍ରକାରର । ଅସମ୍ଭବ ଭାବରେ ସନ୍ଦେହୀ ଏବଂ ସ୍ୱାର୍ଥପର ଥିଲେ ସେ । ଅନୁରାଧାଙ୍କର ଆଉ କାହାପ୍ରତି ସାମାନ୍ୟ ସହାନୁଭୂତି ବରଦାସ୍ତ କରିପାରୁନଥିଲେ ସେ । ଅନୁରାଧା କେବଳ ତାଙ୍କରି ହୋଇ ରହନ୍ତୁ ବୋଲି ସେ ଚାହୁଁଥିଲେ । ଅଂଶୁମାନଙ୍କର ଯେ କିଛି ପରିମାଣରେ ମୁଣ୍ଡଦୋଷ ଥିଲା ଏବଂ ମାନସିକ ଚିକିତ୍ସକଙ୍କର ପରାମର୍ଶ କ୍ରମେ 'ସୁନ୍ଦରୀ ଝିଅଟିଏ ଦେଖି ବାହା କରିଦେଲେ ସବୁ ଠିକ୍ ହୋଇଯିବ,' ଏ କଥା ଅନୁରାଧା ଜାଣିଲା ବେଳକୁ ଅନେକ୍ ଡେରି ହୋଇ ଯାଇଥିଲା । ସେ ମାଆ ହୋଇ ସାରିଥିଲେ । ଅଂଶୁମାନଙ୍କର ଏବଂ ତାଙ୍କ ସମଗ୍ର ପରିବାରର ମର୍ଯ୍ୟାଦାକୁ ମନରେ ରଖି ଅନୁରାଧା କାହାକୁ କିଛି କହି ନଥିଲେ । ବାହାର ଲୋକେ ଜାଣିବାକୁ ରୂପବାନ୍, ପ୍ରେମମୟ ଏବଂ ବିତ୍ତବାନ୍ ଅଂଶୁମାନଙ୍କୁ ବିବାହ କରି ଅନୁରାଧା ଖୁବ୍ ସୁଖରେ ସଂସାର କରୁଥିଲେ । ହଁ – କେବେ କେବେ ଅଂଶୁମାନଙ୍କର ପୁରୁଣା ରୋଗଟି ଆତ୍ମପ୍ରକାଶ କରେ । ପ୍ରଥମେ ପ୍ରଥମେ ଅନୁରାଧାଙ୍କୁ ଲୁଚାଇ ଏବଂ ପରେ ସବୁ କଥା ଜାଣିଯିବା ପରେ ତାଙ୍କ ଜାଣତରେ ଚିକିତ୍ସିତ ହୁଅନ୍ତି ଅଂଶୁମାନ୍ । ନିଜର ଭବିତବ୍ୟକୁ ମାନିନେବା ବ୍ୟତୀତ ଆଉ କିଛି ଉପାୟ ନଥିଲା ତାଙ୍କ ପାଇଁ । କନ୍ୟାଦାନ କରି ନିଶ୍ଚିତ ହୋଇ ସାରିଥିବା ବାପା, ବୋଉଙ୍କର ବୋଝ ହୋଇ ବାପଘରକୁ ଫେରିବାକୁ ଇଚ୍ଛା କରି ନଥିଲେ । ନିଜ ଜନ୍ମିତ ସନ୍ତାନଟି ସହିତ ଅଂଶୁମାନଙ୍କୁ ମଧ୍ୟ ଆଉ ଗୋଟିଏ ଅବୁଝା ସନ୍ତାନ ଭାବରେ ଗ୍ରହଣ କରି ନେଇଥିଲେ ଅନୁରାଧା । ନିଚ୍ଛନ୍ଦ ଭଲପାଇବା ଦ୍ୱାରା, ଅନାବିଳ ପ୍ରେମ ଦ୍ୱାରା ବଣର ପଶୁପକ୍ଷୀ ବଶ ହେଉଛନ୍ତି । ମଣିଷଟିକୁ ବଦଳାଇ ପାରିବେନି ସେ ! କିନ୍ତୁ ଅଂଶୁମାନଙ୍କ ପରି ମଣିଷକୁ ବଦଳାଇବା କିଛି ସହଜ କଥା ନଥିଲା । ତାଙ୍କର ଇଚ୍ଛା ବିରୁଦ୍ଧରେ କିଛି ହେଉଛି ଜାଣିବା ମାତ୍ରେ ସେ ଏମିତି ପ୍ରଳୟ କରୁଥିଲେ ଯେ ଅନୁରାଧା ବାଧ୍ୟ ହେଉଥିଲେ ସେ ଯେମିତି ଚାହୁଁଥିଲେ ସେହିଭଳି ଭାବରେ ଚଳିବାକୁ । ତାଙ୍କର ସମସ୍ତ ବ୍ୟକ୍ତିତ୍ୱ, ତାଙ୍କର ନିଜସ୍ୱ ଦୃଷ୍ଟିଭଙ୍ଗୀ, ଜୀବନ ଦର୍ଶନ ବିସର୍ଜି

ଦେଉଥିଲେ ପରିବାରର ଶାନ୍ତି ପାଇଁ ।

ଅନୁରାଧାଙ୍କ ପୁଅ ଧୀରେ ଧୀରେ ବଡ଼ ହେଉଥିଲା । ଅଂଶୁମାନଙ୍କର ଉପସ୍ଥିତିରେ ପୁଅକୁ ଆଦର କରିବାକୁ ସାହସ କରି ପାରନ୍ତି ନାହିଁ ଅନୁରାଧା । ସ୍ୱାମୀଙ୍କ ଆଖିରେ ଅସହିଷ୍ଣୁ ଭାବ ତାଙ୍କୁ ଶଙ୍କିତ କରେ । କେଜାଣି – ରାଗିଯାଇ ଯଦି ପୁଅର କିଛି କ୍ଷତି କରିଦିଅନ୍ତି ସେ ! ଅଂଶୁମାନଙ୍କର ଇଚ୍ଛାରେ ସବୁ ହୁଏ । ତାଙ୍କ ପୁଅକୁ କେତିକି ସ୍ନେହ ଆଦର କରାଯିବ – ସେ କହିବେ । ପୁଅର ନାଁ ବାଛିବାଠାରୁ ବୋହୂ ବାଛିବା ଯାଏ କୋଉଥିରେ ବି ନାକ ଗଳେଇବାକୁ ଦିଆଯାଇନାହିଁ ଅନୁରାଧାଙ୍କୁ । ଏ ଘର, ସଂସାର, ପରିବାର, ପୁଅ, ବୋହୂ , ନାତି ସବୁ ଅଂଶୁମାନଙ୍କର । ଅନୁରାଧା କେବଳ ଏହାର ଦେଖାଶୁଣା ଦାୟିତ୍ୱରେ ଅଛନ୍ତି ।

ପୁଅ ଆଦିତ୍ୟ ଅବିକଳ ବାପର ପ୍ରତିରୂପ । ସେମିତି ଜିଦିଖୋର୍, ରାଗୀ, ଏକଶିଙ୍ଗିଆ । କେବଳ ଅଂଶୁମାନ୍‌ଙ୍କୁ ଯାହା ଟିକେ ଖାତିର୍ କରେ । ବୋହୂ 'ନେହା' ମଧ୍ୟ ଅଂଶୁମାନଙ୍କୁ ସମ୍ମାନ କରେ । ଅନୁରାଧାଙ୍କ ପ୍ରତି ପୁଅ ବୋହୂଙ୍କର ଅନାଦାର ନଥିଲେ ବି ସମ୍ମାନବୋଧ ଥିବାର ମଧ୍ୟ ଜାଣନ୍ତି ନାହିଁ ସେ । ନେହା ଉଚ୍ଚ ଶିକ୍ଷିତା, ଅତ୍ୟାଧୁନିକା ଝିଅ । ଘରେ ଅର୍ଥର ଅଭାବ ନଥିଲେ ବି ସଉକିରେ ସେ ଚାକିରି କରିବାକୁ ଯାଏ । ଘର ଭିତରେ ଶୋଇବସି, ଟି.ଭି ଦେଖି ବହିପଢ଼ି କି ଗପ କରି ସମୟର ଅପବ୍ୟୟ କରିବା ମନୋବୃତ୍ତି ତା'ର ନାହିଁ । ଘର, ପରିବାର, ସ୍ୱାମୀ, ସନ୍ତାନଙ୍କ ପ୍ରତି ତା'ର ଯେ କିଛି ଦାୟିତ୍ୱବୋଧ ରହିବା ଉଚିତ୍, ଏକଥା ସେ ଭାବେ ନାହିଁ । ମୁଣ୍ଡର କେଶକୁ ଛୋଟ ଛୋଟ କରି କାଟିଥିବା, ଜିନ୍‌ସ୍, ଜୋତାପିନ୍ଧା 'ନେହା'କୁ ବୋହୂ ବୋଲି ଭାବିବାକୁ ସଂକୋଚ ହୁଏ ଅନୁରାଧାଙ୍କର । ଜୀବନ ପ୍ରତି ଆଶଙ୍କା ରହିଛି ବୋଲି ଡାକ୍ତର କହି ନଥିଲେ ଥରକୁଥର ଗର୍ଭ ନଷ୍ଟ କରୁଥିବା ନେହା 'ବଣ୍ଟି'ର ମାଆ ହେବାକୁ ବାଧ୍ୟ ହୋଇନଥାନ୍ତା । ଆଶ୍ଚର୍ଯ୍ୟ ହୁଅନ୍ତି ଅନୁରାଧା । ଏଇ ଝିଅକୁ ପସନ୍ଦ କରି ଘରକୁ ଆଣିଛନ୍ତି ଅଂଶୁମାନ ! ଆଦିତ୍ୟ ପରି ପିଲା ବି କେମିତି ବରଦାସ୍ତ କରେ ଏମିତି ଝିଅକୁ ?

ନାତିଟିକୁ ତାଙ୍କ କୋଳକୁ ଏକ ପ୍ରକାର ଫୋପାଡ଼ି ଦେଇଥିବାରୁ ଅନୁରାଧା କୃତଜ୍ଞ ବୋଧ କରନ୍ତି ବୋହୂ ପାଖରେ । ସମୟ କାଟିବା ପାଇଁ ସୁନ୍ଦର ଅବଲମ୍ବନଟିଏ ମିଳିଯାଇଛି ତାଙ୍କୁ । ଅଂଶୁମାନ୍ ଚାକିରୁରୁ ଅବସର ନେବାପରେ ଅଧିକାଂଶ ସମୟ ଲାଇବ୍ରେରୀରେ ବସନ୍ତି । ପୂର୍ବଭଳି ଆଉ ବିଶେଷ ପାଟିତୁଣ୍ଡ, ରଗାରଗି କରନ୍ତିନି । ନାତିକୁ ଦୁଇବର୍ଷ ହେଉ ନହେଉଣୁ ତାକୁ ପ୍ରି- ନର୍ସରୀରେ ଭର୍ତ୍ତି କରିଦେଲା ଆଦିତ୍ୟ । ପୁଅ ତା'ର ବ୍ୟବହାର ଶିଖିବ, ଭଦ୍ରାମି ଶିଖିବ, ସାମଜିକ ହେବାର ଚଳଣିରେ ଅଭ୍ୟସ୍ତ ହେବାକୁ ତାକୁ ବାଧ୍ୟ କରାଯିବ ।

ବଣ୍ଟି କିନ୍ତୁ ବଢ଼ିଆ ପିଲାଟିଏ। ଭାରି ସୁନ୍ଦର କଥା କହୁଛି ସେ। ତା'ର ଦରୋଟି କଣ୍ଠରେ ମଧୁର ଆଳାପ ଶୁଣିଲେ ଅନୁରାଧାଙ୍କର ଅବଶୋଷ ହୁଏ ତା'ର ବାପା ମାଆଙ୍କ ପାଇଁ - ଏମିତି ଏକ ଅପୂର୍ବ ଅନୁଭବରୁ ନିଜକୁ ବଞ୍ଚିତ କରି ରଖିଛନ୍ତି ସେମାନେ। କୋଉ ମୋହ ସେମାନଙ୍କୁ ପ୍ରଲୁବ୍ଧ କରି ରଖିଛି ସତେ!

ବଣ୍ଟି ଏବେ ସ୍କୁଲ୍ ଯାଉଛି। ତା'ର ସମସ୍ତ ଅନୁଭବ ଓ ବିସ୍ମୟକୁ ସେ ଜେଜେମା ସହିତ ବାଣ୍ଟିଥାଏ। ତା'ର ସମସ୍ତ ଦାବି ମଧ୍ୟ ଜେଜେମା ପାଖରେ। ଅଂଶୁମାନ୍‌ଙ୍କର ନାଲି ଆଖିକୁ ଆଜି କାଲି ଭୟ କରନ୍ତି ନାହିଁ ଅନୁରାଧା। ଦିନେ ସେ ବ୍ୟାକୁଳ ହୋଇ ଭଗବାନଙ୍କୁ ପ୍ରାର୍ଥନା କରୁଥିଲେ, "ହେ ପ୍ରଭୁ, ମୋତେ ଜଲ୍‌ଦି ବୁଢ଼ୀ କରିଦିଅ। ମୋ ଦେହର ସୁନ୍ଦରପଣକୁ ନଷ୍ଟ କରିଦିଅ। ମୋତେ ନେଇ ମୋ ସ୍ୱାମୀଙ୍କ ମନରେ କୌଣସି ସନ୍ଦେହ ନରହୁ, ଈର୍ଷା ନରହୁ, ମୋ ପାଇଁ କୌଣସି ପ୍ରକାର ମାନସିକ କଷ୍ଟ ସେ ନଭୋଗନ୍ତୁ।" ଏବେ ତାଙ୍କ ମୁଣ୍ଡର କେଶରେ ରୂପେଲୀ ଆଭା ସ୍ପଷ୍ଟ ଦିଶୁଛି। କେଶ ରଂଗକଲେ ଆଲର୍ଜି ହେଉଛି କହି ସେ କରୁନାହାନ୍ତି। ଅଂଶୁମାନ୍ ମଧ୍ୟ ଆଜି କାଲି ତାଙ୍କୁ ବାଧ୍ୟ କରୁନାହାନ୍ତି କିଛି କରିବାକୁ। ଗୁମ୍‌ସୁମ୍ ହୋଇ କ'ଣ ଏତେ ଭାବୁଛନ୍ତି କେଜାଣି। ଅଭ୍ୟାସହୀନତା ଯୋଗୁଁ ଅନୁରାଧା ସ୍ୱାମୀଙ୍କର ଭାବନାର ନିକଟବର୍ତ୍ତୀ ହେବାକୁ ଚାହୁଁ ନାହାନ୍ତି। ଅଖାଡୁଆ ମଣିଷ ଅଂଶୁମାନ୍ - କ'ଣ କହିଦେବେ ଯଦି ପିଲାଙ୍କ ଆଗରେ ଅନୁରାଧା ଅକାରଣରେ ଲଜ୍ଜିତ ହେବେ। ବରଂ ବଣ୍ଟି ସହିତ କଥାବାର୍ତ୍ତା କଲେ ମନରେ ଆନନ୍ଦ ଆସେ - ଶାନ୍ତି ଆସେ। ତା'ପାଇଁ ମଧ୍ୟ ତା'ର ଜେଜେମା ସବୁଠୁ ପ୍ରିୟ ମଣିଷ - ଅନ୍ତରଂଗ ମଣିଷ। ଦୀର୍ଘଶ୍ୱାସ ଛାଡ଼ିଲେ ଅନୁରାଧା। ହିଁ - ଏ ସଂସାରରେ କେହି ତ ଜଣେ ଅଛି - ଯାହା ପାଖରେ ତାଙ୍କର କାଣି କଉଡ଼ିଟିର ମୂଲ୍ୟ ରହିଛି।

ଅନେକ ବର୍ଷପରେ ନିଜେ ବଜାରକୁ ଯାଇ ପସନ୍ଦ କରି ଉଲ୍ କିଣିଲେ ଅନୁରାଧା। ନାତିଟୋକା ପାଇଁ ଚମତ୍କାର ସ୍ୱେଟରଟିଏ ବୁଣିଦେବେ ସେ। ତାଙ୍କ ହୃଦୟର ସମସ୍ତ ମମତାର ନିର୍ଯ୍ୟାସ ଢ଼ାଳିଦେବେ ସେ ଏଇ ବୁଣିବାରେ। ପ୍ରତ୍ୟେକଟି ଫାଶ ସେ ଗୁନ୍ଥିବେ ତା'ରି ନାମରେ। ମମତାର କୋମଳ ଉଷ୍ମତାରେ ଭରିଯିବ ସେଇ ସ୍ୱେଟରଟି। ସେ ନ ରହିବା ପରେ ମଧ୍ୟ ତାଙ୍କର ସ୍ନେହାନୁଭବ ସଞ୍ଚିତ ହୋଇ ରହିଥିବ ସେଇ ହାତବୁଣା ସ୍ୱେଟର୍‌ଟିରେ।

"କ'ଣ ହେଉଛି ?" ଅଂଶୁମାନ୍‌ଙ୍କର ପ୍ରଶ୍ନରେ ଚମକି ପଡ଼ି ଚାହିଁଲେ ଅନୁରାଧା। ମୁଣ୍ଡର ସମସ୍ତ କେଶ ପାଚିଗଲାଣି, ନିଶ ମଧ୍ୟ। ଦୁଇବର୍ଷ ହେବ ରିଟାୟର କଲେଣି ସେ। ନିଜର ପ୍ରକୃତ ବୟସଠାରୁ ଯଥେଷ୍ଟ ବୁଢ଼ା ଦିଶୁଛନ୍ତି ଅଂଶୁମାନ। ଅନୁରାଧା ଅନେକ ଦିନ

ହେଲା ଭଲ ଭାବରେ ଦର୍ପଣରେ ନିଜକୁ ଦେଖି ନାହାନ୍ତି। ସିଏ ମଧ ଏହି ଅନୁପାତରେ ବୁଢ଼ୀ ହୋଇ ଯିବେଣି।

"ଆମ ବଣ୍ଟି ପାଇଁ ସ୍ୱେଟର୍‌ଟିଏ ବୁଣୁଛି। ବରାଦ କରିଛି ସେ।" ଅନୁରାଧା କହିଲେ।

"ମୋ ପାଇଁ ଗୋଟେ ବୁଣିଦେବ ?" ଅଂଶୁମାନ୍ ଗମ୍ଭୀର କଣ୍ଠରେ କହିଲେ। ଅନୁରାଧା ପୁଣିଥରେ ଚମକି ଚାହିଁଲେ ଅଂଶୁମାନଙ୍କୁ। ନାତି ସାଂଗରେ ବି ବାଦ! ନା - ଅଂଶୁମାନ୍ ହସୁଥିଲେ ପରିଚ୍ଛନ୍ନ ହସ। ତା'ପରେ ଅନୁରାଧାଙ୍କ କାନ୍ଧରେ ହାତ ରଖି ଆବେଗାପ୍ଲୁତ କଣ୍ଠରେ କହିଲେ, "ତୁମକୁ ଏତେ ସୁନ୍ଦର ବୁଣିଆସେ ବୋଲି ମୁଁ ଜାଣି ନଥିଲି।"

"ଏତେ ଡେରିରେ ଜାଣିଲ ?" ଅନୁରାଧାଙ୍କର ଆଖି କୋଣ ଶିର୍ଶିରେଇ ଉଠିଲା। ଏଇ ପଦିଏ କଥା ଯଦି ପଇଁତିରିଶ୍ ବର୍ଷ ତଳେ କହିଥାଆନ୍ତ, ମୋର ବଞ୍ଚିବାର ପ୍ରତିଟି ମୁହୂର୍ତ୍ତ କେତେ ସାର୍ଥକତାରେ ଭରିଯାଇଥାଆନ୍ତା ସତେ ?

# ଅତୃପ୍ତ ଈଶ୍ୱର

"ମୁଁ ତୋ ଉପରେ ବହୁତ ରାଗିଛି।"

"କାହିଁକି ?"

"ତୁ କାଲି ତାଙ୍କ ଘରେ ଯାହା କଲୁ ମୋତେ ବହୁତ ଲାଜ ଲାଗିଲା।"

"ମୁଁ ତ କିଛି କରିନି।"

"ସେ ଅଙ୍କଲଙ୍କୁ କାହିଁକି 'ମାଙ୍କଡ଼' ବୋଲି କହିଲୁ ?"

"ଆରେ ମୁଁ 'ମାଙ୍କଡ଼' କହିନିରେ – 'ବନ୍ଦର୍' କହିଲି ନା ?"

"ଏମିତି କହନ୍ତି ? ସୁନାପିଲାମାନେ କାହାଘରକୁ ଯାଇ ଖୋଦ୍ ଘରମାଲିକଙ୍କୁ 'ବନ୍ଦର୍' କହନ୍ତି ? କ'ଣ ଭାବିଥିବେ ସେମାନେ ? ତୋତେ ଆମେ ଏଇଆ ଶିଖଉଛୁ ବୋଲି ଭାବିବେ ନା ?"

"ମାମା – ତମେ ମୋତେ ରାଗୁଛ ! ତୁମେ ସେ ଅଙ୍କଲଙ୍କୁ ମନା କଲନି ମୋ ସାଙ୍ଗେ ଲାଗିବାକୁ ? ତୁମେ ତ ଦେଖିଛ ନା – ସେ କେମିତି ମୋତେ ବିରକ୍ତ କରୁଥିଲେ। ମୋ ଗାଲରେ ହାତ ମାରୁଥିଲେ ମୁଣ୍ଡରେ ଟିପା ମାରୁଥିଲେ – ହାତକୁ ଟାଣୁଥିଲେ। ମୋତେ ଅନାଇ କେମିତି କେମିତି ମୁହଁ କରୁଥିଲେ !"

"ଆରେ ବାବା ସେ ତୋତେ ଗେହ୍ଲା କରିବାକୁ ଚାହୁଁଥିଲେ। ଏଡ଼େ ବଡ଼ ମଣିଷ ସେ। ତାଙ୍କ ପାଖରେ ଠିଆ ହେବାକୁ ଲୋକ ଡରନ୍ତି। ସେ ଚାହିଁଦେଲେ ଲୋକ ଧନ୍ୟ ହୋଇଯାଆନ୍ତି – ତୁ ତାଙ୍କୁ 'ମାଙ୍କଡ଼' କହିଲୁ ?"

"ପୁଣି ଭୁଲ୍ କଥା କହିଲ – ମୁଁ କହିଲି ନା ତାଙ୍କୁ ମାଙ୍କଡ଼ କହିନି – 'ବନ୍ଦର୍' କହିଛି। ତାଙ୍କ ଘରକୁ ଗଲାଠୁ ଆସିଲା ଯାଏଁ ସେ 'ବନ୍ଦର୍' ମୋ ପିଛା ଛାଡ଼ିଲାନି। ମୋତେ ରାଗ ଲାଗିବନି ?"

"ଆଉ ସିଏ ରାଗିଗଲେ କ'ଣ କରିବେ ଜାଣିଛୁ ? ତୋ ବାପାଙ୍କୁ ଚାକିରିରୁ ବାହାର କରିଦେବେ।"

"ମୁଁ ବି ତାଙ୍କୁ ଚାକିରିରୁ ବାହାର କରିଦେବି।"

"ଆରେ ବୋକାପିଲା – ସିଏ ତୋ ପାପାଙ୍କ ବସ୍।"

"ସିଏ ବସ୍ ହେଲେ ମୁଁ 'ଏରୋପ୍ଲେନ୍'। ତୁମେ କୁହ – ଏରୋପ୍ଲେନ୍ ବଡ଼ ନା ବସ୍ ବଡ଼?"

ଓହୋ – ଏ ପିଲାକୁ କ'ଣ କରିବ? ଏମିତି ଏକବାଗିଆ ହୋଇଛି ଯେ ଯାହା ବୁଝିଥିବ ସେଇଆ ହିଁ କରିବ। ସିଏ ଯେତେ କହିଲେ ବୋଲିଲେ ସେ ସହଜରେ ବୁଝିବନି। ଏତେ ବି ଛୋଟପିଲା ନୁହଁ ଯେ ତା'ର ସବୁ କଥାକୁ ଲୋକମାନେ ଖୁସିଖୁସି ବରଦାସ୍ତ କରିବେ। ପାଞ୍ଚ ବର୍ଷ ପୂରି ଛଅ ବର୍ଷ ଚାଲିଲାଣି ତାଙ୍କୁ। ତା' ବୟସର ପିଲାମାନେ କେତେ ବାଧ୍ୟ, ଅନୁଗତ – ସେ କଥା ଦେଖିଲେ ବେଳେବେଳେ ସୁଲଗ୍ନାର ମନ ଖରାପ ହୋଇଯାଏ। ସ୍କୁଲରେ ଟିଚର ଯାହା କହିବେ, କରିବେ; ଘରେ ନିର୍ଦ୍ଦିଷ୍ଟ ସମୟରେ ପାଠ ପଢ଼ିବାକୁ ବସିଯିବେ ହୋମୱାର୍କ କିଛି ଦିଆଯାଇ ନଥିଲେ ମଧ୍ୟ। ସୁଲଗ୍ନାର ପୁଅ ସୋହମ୍ କିନ୍ତୁ ସମସ୍ତଙ୍କଠୁ ଅଲଗା। ଜୋର୍ ଜବରଦସ୍ତ ତା'ଠାରୁ କୌଣସି କାମ ଆଦାୟ କରିହେବନି। ଯୋଉ ପାଠ ତାକୁ ଭଲ ଲାଗିବନି ସେ ଆଦୌ ଚାହିଁବନି ସେ ପାଠ ପଢ଼ିବାକୁ। ସେଥର କ୍ଲାସ୍‌ରେ ପୃଷ୍ଠା ଭର୍ତ୍ତିକରି ହସ୍ତାକ୍ଷର ଲେଖିବାକୁ ଟିଚର୍ କହିଥିଲେ। କେବଳ ଆଲଫାବେଟ୍‌ଟିକ ହିଁ ଶିଖା ହୋଇଥିଲା ସେତେବେଳେ। ପୃଷ୍ଠ ପୃଷ୍ଠା ଧରି ଗୋଟିଏ ମାତ୍ର ଅକ୍ଷର ଲେଖିବାକୁ ଇଚ୍ଛା କରିନଥିଲା ସୋହମ୍। ଗୋଟିଏ ପୃଷ୍ଠାରେ ଗୋଟିଏ ହିଁ ଆଲଫାବେଟ୍ ପୃଷ୍ଠା ଭର୍ତ୍ତି କରି ଲେଖିଥିଲା। ସବୁତକ ଆଲ୍‌ଫାବେଟ୍ ଏଇଭଳି ଲେଖିବାରେ ଖାତାଟି ସରିଯାଇଥିଲା। ଇଂରାଜୀ 'ଫୋର୍' (4) ସଂଖ୍ୟାଟିର ମାତ୍ର ଗୋଟିଏ ଗୋଡ଼ – ସେ କେମିତି ଠିଆହେବ ବୋଲି ତା'ର ଆଉ ଗୋଟେ ଗୋଡ଼ ସେ କରିବ ହିଁ କରିବ। ତା'ର ମନ ହେଲେ ଅକ୍ଷରମାନଙ୍କର, ସଂଖ୍ୟାମାନଙ୍କର ହାତ, ଗୋଡ଼, ଆଖି, କାନ ସବୁ ସେ ବନେଇଦେବ। 'ଏମିତି ଲେଖା ହୁଏନି' କହିଲେ ସେ ମାନେ ନାହିଁ। 'ମୁଁ ଏମିତି ହିଁ ଲେଖିବି' – ସେ ଜିଦ୍ କରି କହେ।

ଖାଇବା ବିଷୟରେ ବି ସେ ଏମିତି ଜିଦ୍‌ଖୋର। ତା' ବୟସର ପିଲା କେତେ ପ୍ରକାରର ଖାଦ୍ୟ ଆନନ୍ଦରେ ଖାଆନ୍ତି। ସୋହମ୍ ତା'ର ନିଜ ପସନ୍ଦର ତାଲିକାଭୁକ୍ତ ଖାଦ୍ୟ ବ୍ୟତୀତ ଅମୃତ ଦେଲେ ବି ଛୁଇଁବ ନାହିଁ। ଅବଶ୍ୟ ତା' ପସନ୍ଦର ଖାଦ୍ୟ ମଧ୍ୟରୁ ଅଧିକାଂଶ ତା' ମାଆର ହାତରନ୍ଧା ଖାଦ୍ୟ। ଖୁବ୍ ସାଦାସିଧା ସେ ଖାଦ୍ୟ : ଭାତ, ଡାଲି, ଭେଣ୍ଡିଭଜା, ଫୁଲକୋବି ଭଜା, ଅଣ୍ଡା ଆମ୍‌ଲେଟ୍, ଚକୁଳି, ପୁରି, ସାଦା ଚାଉମିନ୍, ମାଗି ନୁଡୁଲ୍‌ସ ଏଇଭଳି କିଛି। ମିଠା ଭିତରେ ଗୋଲାପଜାମୁ, ଛେନାଗଜା ଆଉ ଷ୍ଟ୍ରେଟ୍ ଲାଇନ୍ କ୍ଷୀରି (ସିମେଇ କ୍ଷୀରି) ତା'ର ପସନ୍ଦ। ଯେ କୌଣସି ପାର୍ଟି, ପିକ୍‌ନିକ୍, ଭୋଜି

ଇତ୍ୟାଦିକୁ ଗଲେ ସୁଲଗ୍ନା ତରବର ହେଉଥାଏ ଫେରିବାକୁ। କାରଣ ରାତି ଦୁଇଟାରେ ଫେରିଲେ ବି ତାକୁ ପୁଅ ପାଇଁ କିଛି ରାନ୍ଧିବାକୁ ହୁଏ। ନ ହେଲେ ପିଲାଟା ଭୋକରେ ରହିଯିବ ଯେ! ଆଗରୁ ତା' ପାଇଁ ରାନ୍ଧିକି ଫ୍ରିଜ୍‌ରେ ରଖିଦେଇ ଗଲେ ବି ହେବ ନାହିଁ। ସାଙ୍ଗେ ସାଙ୍ଗେ ତିଆରି ହେବ – ସେ ଖାଇବ। ଅବଶ୍ୟ ମାଆର କାମକୁ ସହଜ କରିଦେବା ପାଇଁ ସେ କହିଦିଏ, 'କର୍ଣ୍ଣଫ୍ଲେକ୍‌ସ ଦୁଧ ଖାଇଦେବି।' କି 'ବ୍ରେଡ୍-ଜାମ୍ ଖାଇଦେବି।' ଏଣୁତେଣୁ ଖାଇବା କଥା କହି ସୋହମ୍ କେବେ ବି ହଇରାଣ କରେନି ତା' ପାପା ମାମାଙ୍କୁ; ତା'ର ନ ଖାଇବା ଗୁଣ ହିଁ ସେମାନଙ୍କ ପାଇଁ ମୁଣ୍ଡବ୍ୟଥାର କାରଣ ହୋଇଥାଏ ସବୁବେଳେ। ତେଣୁ ଘରଛାଡ଼ି ଦି' ଚାରିଦିନ କୁଆଡ଼େ ବୁଲିଯିବା ତ ଦୂରର କଥା, ସାଙ୍ଗସାଥୀ, ବନ୍ଧୁବାନ୍ଧବଙ୍କ ଘରକୁ ଯିବାକୁ ବି କୁଣ୍ଠିତ ହୁଏ ସୁଲଗ୍ନା।

ଅନ୍ୟମାନଙ୍କର ଖାଇବା ଦେଖିଲେ କିନ୍ତୁ ସୋହମ ଭାରି ଖୁସି ହୁଏ। କୌଣସି ସାମାଜିକ ବନ୍ଧୁ ମିଳନକୁ ଗଲେ ସେ ବୁଲି ବୁଲି ଲୋକମାନଙ୍କର ଖାଇବା ଦେଖେ। ସେଇ ପିଲାଟି ଦିନରୁ, ସାତ ଆଠମାସ ହେବା ବେଳୁ ଅନ୍ୟମାନେ ଖାଉଛନ୍ତି ଦେଖିଲେ ସୋହମ ଗୋଡ଼ହାତ ଛାଟି କିଲ୍‌କାରୀ ମାରେ। ସେଇଥିପାଇଁ ତା' ପରିବାରର ଲୋକମାନେ ନିଜ ନିଜ ପ୍ଲେଟ୍ ଧରି ତା' ବିଛଣା ପାଖରେ ବସିକି ଖାଆନ୍ତି। ସୁଲଗ୍ନାର ଶ୍ୱଶୁର କହନ୍ତି, "ସୋହମ ପୂର୍ବ ଜନ୍ମରେ ବହୁତ ବଡ଼ ଦାନୀ ମଣିଷଟିଏ ଥିଲା ନିଶ୍ଚୟ। ଲୋକମାନଙ୍କୁ ଖୁଆଇ ପିଆଇ ଖୁସି ହେଉଥିବ ସେତେବେଳେ। ନିଜେ କିନ୍ତୁ କିଛି ଖାଇବାରେ ଆଗ୍ରହ ସେତେବେଳେ ନଥିଲା କି ଏବେ ମଧ୍ୟ ନାହିଁ ସୋହମର। ସେଇଥିପାଇଁ ତ ଏମିତି ପତଳା ନକ୍‌ନକ୍ ଚେହେରା। ଶଙ୍ଖ କଣ୍ଢେଇ ପରି ଗୋରା ରଙ୍ଗ ତା'ର, ଅତ୍ୟନ୍ତ ନରମ ଆଉ ସୁକୁମାର ଲାଗେ ଦେଖିଲେ। କଥାବାର୍ତ୍ତା, ବ୍ୟବହାରରେ କିନ୍ତୁ ସେଇ ସୁକୁମାରପଣ ବଦଳରେ ବେଶ୍ ଟାଣପଣ ଝଲକି ଉଠେ। ଯୋଉ କଥାଟି କରିବ ବୋଲି ଭାବିଥିବ, ସେକଥା କରିବ ହିଁ କରିବ ସେ। ପଛେ ଆଦୌ ନ ଖାଇବ – ତା' ବରାଦର ଜିନିଷ ନ ଦେଲେ ସେ ପାଟିରେ ପୂରାଇବ ନାହିଁ। ଯୋଉ ପୋଷାକ ସେ ପିନ୍ଧିବାକୁ ବାଛିଥିବ – ତା'ଛଡ଼ା ଆଉ କିଛି ସେ ପିନ୍ଧିବାକୁ ରାଜି ହେବ ନାହିଁ। ସୁଲଗ୍ନାର ବେଳେବେଳେ ମନ ହୁଏ ପିଟି ପକାନ୍ତା ଜିଦିଆ ପିଲାଟାକୁ। କିନ୍ତୁ କାହାକୁ ସେ ପିଟିବ? ପାଞ୍ଚ ବର୍ଷର ପିଲା ନୁହେଁ ତ ପଚାଶ ବର୍ଷର ଲୋକଟେ ଯେମିତି ସେ। ତା' ଆଖିକୁ ଚାହିଁଲେ ନିଜେ ସଂକୁଚିତ ହୋଇଯାଏ। ହାତ ଉଠେ ନାହିଁ।

ଶୁଭଜିତ୍ ସେଦିନ ଅଫିସ୍‌ରୁ ଫେରି ଭାରି ଖୁସିରେ କହିଥିଲେ, "କାଜୋଲ୍ ସାକ୍‌ସେନା ତାଙ୍କ ଘରକୁ ଆମକୁ ନିମନ୍ତ୍ରଣ କରିଛନ୍ତି ଡିନରରେ। କାଲି ସନ୍ଧ୍ୟାରେ ଆମେ ଯାଉଛେ।" କିଛି ଦିନ ତଳେ 'କାଜୋଲ୍ ସାକ୍‌ସେନା' ନାଆଁ ଶୁଣିଲେ ସୁଲଗ୍ନା ନିଆଁ

ହୋଇଯାଉଥିଲା ପ୍ରଚଣ୍ଡ ରାଗ ଆଉ ଈର୍ଷାରେ । କିଏ ସେ ଏଇ କାଜୋଲ୍ ସାକ୍‌ସେନା - ଯିଏ ହାତ ଧୋଇକି ତା' ସ୍ୱାମୀ ପଛରେ ପଡ଼ିଯାଇଛି ! ଅଫିସ୍ ସମୟ ପରେ ବି ଯେତେବେଳେ ଦେଖ ଫୋନ୍ । ଛୁଟିଦିନରେ ମଧ୍ୟ ଅଫିସ୍ ଯିବାକୁ ତାଗିଦା । ଶୁଭଜିତ୍ ବିରକ୍ତ ହୁଅନ୍ତି, "ଏ ବୁଢ଼ୀ ମୋତେ ଟିକିଏ ଶାନ୍ତିରେ ରହିବାକୁ ଦେବନି ।" ସୁଲଗ୍ନା କହେ, "କିଏ ଜାଣେ, ବୁଢ଼ୀ କି ଟୋକୀ ! ତୁମକୁ ନ ଦେଖି ଛୁଟିଦିନରେ ବି ରହିପାରୁନି । ତା'ର କ'ଣ ଘର ପରିବାର ନାହିଁ ? ଚାକିରି କରିଛ ବୋଲି ମୁଣ୍ଡ ବିକି ଦେଇଛ ନା କ'ଣ ! ତାଙ୍କୁ ମନା କରିପାରୁନ - ଛୁଟିଦିନରେ ତୁମେ ଅଫିସ୍ ଯାଇ ପାରିବନି ବୋଲି !" ଶୁଭଜିତ୍ ସୁଲଗ୍ନାର ଅଭିଯୋଗ ଶୁଣି ହସନ୍ତି । ବାଜେ କଥା ଭାବି ମୁଣ୍ଡ ଗରମ କରୁଛ ବୋଲି କହନ୍ତି । ଶୁଭଜିତ୍ ଗାଡ଼ି ଧରି ଅଫିସ୍ ବାହାରିଗଲା ପରେ ସୁଲଗ୍ନା ଆଖିରୁ ଲୁହ ପୋଛେ । ଶୁଭଜିତ୍ ଓ ତା' ସମ୍ପର୍କ ଭିତରକୁ କେବେ ଯେ ଜଣେ ସ୍ତ୍ରୀଲୋକ ଜବରଦସ୍ତ ପଶିଆସିବ - ସେ କଥା ସେ ସ୍ୱପ୍ନରେ ବି ଭାବି ନଥିଲା । ଅଭିମାନରେ ଛାତି ଭିତର ରୁନ୍ଧି ହୋଇ ଆସେ । କାଜୋଲ୍ ସାକ୍‌ସେନା ଶୁଭଜିତ୍‌ଙ୍କର ବସ୍ ଇନ୍ଦ୍ରଜିତ୍ ସାକ୍‌ସେନାଙ୍କର ପତ୍ନୀ ତଥା କମ୍ପାନୀର ସିଇଓ । ତାଙ୍କ କଥା ନ ଶୁଣିଲେ କମ୍ପାନୀରେ ଟିକ୍ତି ରହିବା ଅସମ୍ଭବ ବୋଲି ଶୁଭଜିତ୍ କହନ୍ତି । 'ବୁଢ଼ୀ ଭାରି 'ଖଡୁସ୍' ଭାରି ଡୋମିନେଟିଂ, ଓଭର୍ ଡିସିପ୍ଲିନ୍‌ଡ' - ଏମିତି କେତେ କ'ଣ ସେ କହନ୍ତି କାଜୋଲ୍ ସାକ୍‌ସେନା ନାଆଁରେ । କେଜାଣି - ସତରେ ସେ କେମିତିକା ହୋଇଥିବେ । ଏତେ ବଡ଼ କମ୍ପାନୀର ଏମ୍‌ଡିଙ୍କର ପତ୍ନୀ ବୋଲି କମ୍ପାନୀର ସମସ୍ତ କର୍ମଚାରୀଙ୍କୁ ତାଙ୍କ ଗୋଲାମ୍ ବୋଲି ଭାବୁଥିବେ ସେ । ଇନ୍ଦ୍ରଜିତ୍ ସାକ୍‌ସେନାଙ୍କଠାରୁ କାଜୋଲ୍ ସାକ୍‌ସେନାଙ୍କର ହିଁ ପ୍ରଭାବ ଓ ପ୍ରତିପତ୍ତି ଅଧିକ ଅଫିସ୍‌ରେ । ତାଙ୍କୁ ଅବଜ୍ଞା କରିବା ଅର୍ଥ ଚାକିରିର ମାୟା ଛାଡ଼ିବା । ବଡ଼ ବଡ଼ କମ୍ପାନୀମାନେ ତିନି ବର୍ଷ ତଳେ ଯୋଉ ହାରରେ କର୍ମଚାରୀମାନଙ୍କୁ ଛଟେଇ କରିଥିଲେ ସମସ୍ତଙ୍କ ମନରେ ଛାନିଆ ପଶିଯାଇଛି, ସେ ଅବସ୍ଥା ତାଙ୍କର ନ ହେଉ ବୋଲି ।

ଶୁଭଜିତ୍‌ଙ୍କ ତତ୍ତ୍ୱାବଧାନରେ ଆରମ୍ଭ କରାଯାଇଥିବା ପ୍ରୋଜେକ୍ଟଟିର ଆଶାତୀତ ସଫଳତା ପାଇଁ ଅଫିସ୍‌ରେ ପାର୍ଟି ରଖିଥିଲେ କାଜୋଲ୍ ସାକ୍‌ସେନା । ପ୍ରୋଜେକ୍ଟ ସହିତ ସମ୍ପୃକ୍ତ ଥିବା ସମସ୍ତ କର୍ମଚାରୀଙ୍କୁ ସପରିବାର ପାର୍ଟିକୁ ନିମନ୍ତ୍ରଣ ଥିଲା । କେବେ କୌଣସି ପାର୍ଟିକୁ ଯିବାକୁ ଚାହୁଁନଥିବା ସୁଲଗ୍ନା ଖୁବ୍ ଆଗ୍ରହର ସହିତ ବାହାରି ପଡ଼ିଥିଲା ପୁଅକୁ ନେଇ । ତା'ର ଗୋଟିଏ ମାତ୍ର ଉଦ୍ଦେଶ୍ୟ ଥିଲା 'କାଜୋଲ୍ ସାକ୍‌ସେନା' ନାମକ ମହିଳାଙ୍କୁ ଦେଖିବ ପ୍ରତ୍ୟକ୍ଷରେ ଏବଂ ସମ୍ଭବ ହେଲେ ଭଲ କି ଦି' ପଦ ଶୁଣାଇଦେବ ତାଙ୍କୁ । ତାଙ୍କରି ପାଇଁ ସୁଲଗ୍ନା ଜୀବନର ଭୋକ, ଶୋଷ, ନିଦ ହଜିଗଲାଣି । ତା'ର ସୁନ୍ଦର ଚିତ୍ରପଟ ଭଳି ସଜଡ଼ା ସାଇତା ସଂସାରକୁ ବିପର୍ଯ୍ୟସ୍ତ କରିଦେବାକୁ କାହାରିକୁ ମଧ୍ୟ

ଅନୁମତି ଦେଇପାରିବନି ସୁଲଗ୍ନା।

ସୁନ୍ଦର ଆୟୋଜନ ହୋଇଥିଲା ପାର୍ଟିରେ। ସପରିବାର ନିମନ୍ତ୍ରଣ କରାଯାଇଥିବାରୁ ପିଲାମାନଙ୍କ ପାଇଁ ବିଭିନ୍ନ ପ୍ରକାର ମଜା ମଜା ଖେଳ, କୁଇଜ୍ ସହିତ ସବୁ ପିଲାଙ୍କ ପାଇଁ ଗିଫ୍ଟ ରଖାଯାଇଥିଲା। ମହିଳାମାନେ ନିଜକୁ ଯଥା ସମ୍ଭବ ଆକର୍ଷଣୀୟ ଭାବରେ ସଜାଇ ପାର୍ଟିକୁ ଆସିଥିଲେ। ନିଜ ନିଜ ସ୍ୱାମୀଙ୍କର କର୍ମନିଷ୍ଠା ଏବଂ ନିଜ ପିଲାଙ୍କର ଅସାଧାରଣ ବୁଦ୍ଧିମତ୍ତା ତଥା ପ୍ରତିଭା ହିଁ ଥିଲା ସେମାନଙ୍କର ଆଳାପର ମୁଖ୍ୟ ଆଲୋଚନା ପ୍ରସଙ୍ଗ। ସେସବୁ ପ୍ରତି ପ୍ରାୟ ନିସ୍ପୃହ ଥିଲା ସୁଲଗ୍ନା। ତା' ସ୍ୱାମୀଙ୍କର ପ୍ରତିଭା ତଥା ଯୋଗ୍ୟତା ବିଷୟରେ ଏଠି କିଛି କହିବା ବାହୁଲ୍ୟ ହେବ। ଆଉ ଏଡ଼ିକି ବଳକେ ପିଲା ସୋହମ୍; ତା' ବିଷୟରେ ବଢ଼େଇ କରି କହିବା ଭଳି କୌଣସି କଥା ନାହିଁ ସୁଲଗ୍ନା ପାଖରେ। ଥିଲେ ବି ଏଠି କାହିଁକି ସେସବୁ ସେ ପ୍ରଚାର କରିବ ? କ'ଣ ମିଳିବ ସେ ଆତ୍ମ ପ୍ରଚାରରୁ ! ଚୁପ୍‌ଚାପ୍ ଗୋଟିଏ କଣରେ ବସିଥିଲା ସେ। ଉତ୍କଣ୍ଠାର ସହିତ ଅପେକ୍ଷା କରିଥିଲା କାରୋଲ୍ ସାକ୍‌ସେନାଙ୍କୁ ଦେଖିବ ବୋଲି। ପ୍ରଗାଢ଼ ପ୍ରସାଧନର ସହଯୋଗ ନେଇ ମୁହଁଗୁଡ଼ିକୁ ସୁନ୍ଦର ସୁନ୍ଦର ମୁଖାରେ ପରିଣତ କରିଥିବା ଅତ୍ୟାଧୁନିକା ସୁନ୍ଦରୀ ମହିଳାମାନଙ୍କ ମଧ୍ୟରୁ କୋଉ ଜଣକ କାରୋଲ୍ ସାକ୍‌ସେନା ସେ ନିର୍ଣ୍ଣୟ କରିପାରୁନଥିଲା। ଶୁଭଜିତ୍ ତାଙ୍କର ସହକର୍ମୀ ବନ୍ଧୁମାନଙ୍କ ସହିତ ସୁଲଗ୍ନାକୁ ପରିଚୟ କରେଇ ଦେବା ପରେ ସେଇମାନଙ୍କ ସହ ଖୁସିଗପରେ ମାତି ଯାଇଥିଲେ। ସୋହମ୍ ମଧ୍ୟ ତା'ର ସମବୟସୀ ପିଲାମାନଙ୍କ ସହିତ ଖେଳରେ ଯୋଗ ଦେଇଥିଲା। ଭିଡ଼ ଭିତରେ ନିଜକୁ ଖୁବ୍ ଏକୁଟିଆ ମଣୁଥିଲା ସୁଲଗ୍ନା। ହଠାତ୍ ଲକ୍ଷ୍ୟ କଲା ଶୁଭଜିତ୍ ତା' ଆଡ଼କୁ ଆସୁଛନ୍ତି ଜଣେ ମଧ୍ୟବୟସ୍କା ମହିଳାଙ୍କ ସହିତ।

"ସୁଲୁ - ଇଏ ମିସେସ୍ କାରୋଲ୍ ସାକ୍‌ସେନା - ମାମ୍ - ଇଏ ମୋ ମିସେସ୍ ସୁଲଗ୍ନା।" ଶୁଭଜିତ୍ ପରିଚୟ କରେଇଦେଲେ। ସୁଲଗ୍ନା ହାତଯୋଡ଼ି 'ନମସ୍ତେ' କହିଲା। ଖୁବ୍ ଉଚ୍ଛ୍ୱସିତ କଣ୍ଠରେ କାରୋଲ୍ ଇଂରାଜୀରେ କହିଲେ, "ଶୁଭଜିତ୍, ତୁମ ସ୍ତ୍ରୀ ବହୁତ ସୁନ୍ଦର। ଖୁବ୍ ସୁନ୍ଦର ଯୋଡ଼ି ତୁମ ଦୁହିଁଙ୍କର। ଏଇ ତା'ହେଲେ ତମର ସମସ୍ତ ପ୍ରେରଣାର ଉତ୍ସ। ତୁମେ ପ୍ରକୃତରେ ଭାଗ୍ୟବାନ। ତୁମର ପୁଅଟି କାହିଁ ? ଖେଳୁଛି ପରା ! ହଉ - ତୁମେ ଦୁହେଁ ପାର୍ଟି ଏନ୍‌ଜୟ କର। ଜାଣ ତୁମ ଅନରରେ ହିଁ ଏ ପାର୍ଟି। ମୁଁ ଆସୁଛି।" କାରୋଲ ସାକ୍‌ସେନା ଅନ୍ୟମାନଙ୍କ ପାଖକୁ ଯିବା ପରେ ସୁଲଗ୍ନା ପ୍ରକୃତିସ୍ଥ ହେଲା। ଏଇ ତା'ହେଲେ କାରୋଲ୍ ସାକ୍‌ସେନା ! ତା' ସ୍ୱାମୀଙ୍କର ଇମିଡିଏଟ୍ ବସ୍। ଧୂର୍ତ୍ତ - ଏଭଳି ଜଣେ ମହିଳାଙ୍କୁ ନେଇ ସୁଲଗ୍ନାର ଆତଙ୍କିତ ହେବାର କୌଣସି କାରଣ ନାହିଁ। ରୂପର ଦେବତା ବା ଦେବୀ ତାଙ୍କ ପ୍ରତି ସାମାନ୍ୟ ହେଲେ ସଦୟ ଦୃଷ୍ଟିପାତ କରିନାହାନ୍ତି।

ଏକଥା ତାଙ୍କୁ ଦେଖିଲେ ଯେ କେହି କହିଦେବ। ବଳିଷ୍ଠ ପୁରୁଷାଳି ଚେହେରା, ରଙ୍ଗ ବେଶ୍ କଳା, ମୋଟା ଓଠ, କର୍କଶ କେଶ; ନାରୀସୁଲଭ ରୂପ ଲାବଣ୍ୟ ଟିକିଏ ବି ନାହିଁ। ସେ ବିଷୟରେ ସେ ନିଜେ ମଧ୍ୟ ସଚେତନ ହୁଏତ। ଅଯଥାରେ ଗୁଡ଼ାଏ ପ୍ରସାଧନ ସାମଗ୍ରୀ ବ୍ୟବହାର କରି ନିଜକୁ ସୁନ୍ଦର କରିବାର ଅପଚେଷ୍ଟା କରିନାହାନ୍ତି। କିନ୍ତୁ ତାଙ୍କର ପରିଧାନ ଅତ୍ୟନ୍ତ ମାର୍ଜିତ ତଥା ରୁଚିସମ୍ପନ୍ନ। କଥା କହିବାର ଢଙ୍ଗ ଖୁବ୍ ସମ୍ଭ୍ରାନ୍ତ - କଣ୍ଠସ୍ୱର ବେଶ୍ ପ୍ରଭାବଶାଳୀ - ଯାହାକୁ କହନ୍ତି କମାଣ୍ଡିଂ ଭଏସ୍।

"କାଜୋଲ୍ ସାକ୍ସେନା ତ ଖୁବ୍ ମେଳାପି ଲୋକ। ଦେଖ - ସେ କେମିତି ସମସ୍ତଙ୍କ ପାଖକୁ ଯାଇ ପରିଚିତ ହେଉଛନ୍ତି। କେତେ ଭଲରେ କଥାବାର୍ତ୍ତା କରୁଛନ୍ତି ହସି ହସି। ତୁମେ ସବୁ ତାଙ୍କୁ ମିଛରେ ବଦନାମ୍ କର।" ସୁଲଗ୍ନା କହିଲା ଶୁଭଜିତ୍‌ଙ୍କୁ। ତା' ମୁଣ୍ଡ ଭିତରେ ଏତେ ଦିନ ହେଲା ଚାପି ହୋଇ ରହିଥିବା ଗୋପନ ଯନ୍ତ୍ରଣାର ବୋଝଟି ଓହ୍ଲେଇ ଯାଇଥିଲା।

"ତୁମେ ବୁଝିପାରିବନି। ଏଇ ପାର୍ଟି, ଏଇ ହସଖୁସି, ଆତ୍ମୀୟତାପୂର୍ଣ୍ଣ ବ୍ୟବହାର ମଧ୍ୟ ତାଙ୍କ ବିଜିନେସ୍ କୌଶଳର ଅଂଶ। ଆମମାନଙ୍କୁ ଆହୁରି ଅଧିକ ଖଟେଇ ତାଙ୍କର କାମ ହାସଲ କରିବାର ଚାଲ୍। ତାଙ୍କ ସ୍ୱାମୀଙ୍କୁ ଦେଖିଲେ ସେ କେତେ ପାରିବାର ମହିଳା ତୁମେ ଜାଣିପାରିବ।" ଶୁଭଜିତ୍ କହିଲେ।

"କାହାନ୍ତି ତାଙ୍କ ସ୍ୱାମୀ ?" କୌତୂହଳ ପ୍ରକାଶ କରିଥିଲା ସୁଲଗ୍ନା।

"ତାଙ୍କୁ ଆଜି ଦର୍ଶନ କରିବା ତୁମ ଭାଗ୍ୟରେ ନାହିଁ। ଗୋଟେ ବିଜିନେସ୍ ଟୁର୍‌ରେ ସେ ସିଙ୍ଗାପୁର ଯାଇଛନ୍ତି। ଭଦ୍ର ମହିଳାଙ୍କର ଏକଦମ୍ ବିପରୀତ ସେ। ଆକାର ପ୍ରକାର, ରଙ୍ଗରୂପ, କଥାବାର୍ତ୍ତା, ଢଙ୍ଗଢାଙ୍ଗ ସବୁଥିରେ। ଶୁଣିଛି ତାଙ୍କର କୁଆଡ଼େ ପ୍ରେମ ବିବାହ ହୋଇଥିଲା। ଏମିତି ବେଯୋଡ଼ ବେଖାପ ଯୋଡ଼ି କୋଉଠି ସହଜରେ ମିଳିବେ ନାହିଁ।" ଶୁଭଜିତ୍ କହିଥିଲେ।

"ତୁମେ ସବୁ ବାହାରର ରଙ୍ଗରୂପ ଦେଖି ଏମିତି କହୁଛ। ତୁମର ସାକ୍ସେନା ସାହେବ ହୁଏତ ତାଙ୍କଠି ଆଉ କିଛି ଦେଖିଥିବେ - ଯାହା ତୁମ ମାନଙ୍କର ବୋଧବୁଦ୍ଧି ବାହାରେ।" ସୁଲଗ୍ନା କହିଲା।

"ବୋଧବୁଦ୍ଧିର ବାହାରେ କାହିଁକି ହେବ ? ସାକ୍ସେନା ରହୁଥିବା ସୁଦୃଶ୍ୟ ବଂଲୋର ନାଁ 'ଲୋହାନୀ ହାଉସ୍'। 'ସାକ୍ସେନା ହାଉସ୍' ନୁହେଁ। ମୁମ୍ବାଇର ପ୍ରମୁଖ ଅଞ୍ଚଳରେ 'ଲୋହାନୀ ହାଉସ୍' ଭଳି ବଂଲୋର ଅଧିକାରୀ ହେବାର ସୁଯୋଗ ପାଇବାର ସମ୍ଭାବନାରେ କାଜୋଲ୍ ଲୋହାନୀ ତାଙ୍କୁ ବିଶ୍ୱସୁନ୍ଦରୀ ଭଳି ମନେ ହୋଇନଥିବେ କାହିଁକି ଯେ।" ଶୁଭଜିତ୍ କହିଥିଲେ।

"କାଜୋଲ୍ ସାକ୍‌ସେନା କ'ଣ ବାହାଘର ପୂର୍ବରୁ କାଜୋଲ୍ ଲୋହାନୀ ଥିଲେ ?" ସୁଲଗ୍ନା ପଚାରିଲା।

"ଠିକ୍ ଭାବରେ କହିପାରିବିନି – କିନ୍ତୁ ହୋଇଥିବେ ବୋଲି ବିଶ୍ୱାସ। ନହେଲେ ତାଙ୍କ ବଂଲୋର ନାଁ 'ଲୋହାନୀ ହାଉସ୍' କାହିଁକି ହୋଇଥାଆନ୍ତା ?" ଶୁଭଜିତ୍ କହିଥିଲେ।

"ଆରେ ତୁମେ ବି' ଜଣ କ'ଣ କେବଳ ନିଜ ନିଜ ଭିତରେ କଥାବାର୍ତ୍ତା କରିବାକୁ ଆସିଥିଲ ନା କ'ଣ ? ଫ୍ୟାମିଲି ପାର୍ଟି ଭାଇ – ଅନ୍ୟମାନଙ୍କ ସହିତ ମଧ୍ୟ ମିଶିବା ଦରକାର।" ଶୁଭଜିତ୍‌ଙ୍କର ଜଣେ ସହକର୍ମୀ ବନ୍ଧୁ ପରିହାସ କରି କହିଥିଲେ। ଶୁଭଜିତ୍ ଓ ସୁଲଗ୍ନାଙ୍କୁ ସେ ଅନ୍ୟମାନଙ୍କ ପାଖକୁ ଟାଣି ନେଇ ଯାଇଥିଲେ। ଖାଇବା ପିଇବା, ନାଚଗୀତ, ଥଟ୍ଟାମଜା ବେଶ୍ ଜମିଥିଲା। ପିଲାମାନେ ମଧ୍ୟ ନିଜ ନିଜର ପ୍ରାଇଜ୍ ତଥା ଗିଫ୍ଟକୁ ନେଇ ଉଲ୍ଲସିତ ହେଉଥିଲେ।

ପାର୍ଟିରୁ ଫେରିବା ପରେ କିଛି ଦିନ ପର୍ଯ୍ୟନ୍ତ ସୁଲଗ୍ନା ମିଷ୍ଟର ଇନ୍ଦ୍ରଜିତ୍ ସାକ୍‌ସେନା ଓ କାଜୋଲ୍ ସାକ୍‌ସେନା ତଥା ସେମାନଙ୍କର 'ଲୋହାନୀ ହାଉସ୍' କଥା ଭାବୁଥିଲା। କେମିତି ହୋଇଥିବ ତାଙ୍କର ଦାମ୍ପତ୍ୟ ଜୀବନ ! କେମିତି ହୋଇଥିବ ତାଙ୍କର ଲୋହାନୀ ହାଉସ୍ – ଯାହାର ମାୟାରେ ପଡ଼ି ଇନ୍ଦ୍ରଜିତ୍ ସାକ୍‌ସେନାଙ୍କ ପରି ଲୋକ ବାହା ହୋଇପଡ଼ିଲେ କାଜୋଲ୍‌ଙ୍କୁ ! ଖୁବ୍ ଶୀଘ୍ର ସୁଲଗ୍ନାର କୌତୂହଳ ପରିପୂର୍ତ୍ତି ହେବାର ସୁଯୋଗ ମିଳିଗଲା। ଶୁଭଜିତ୍‌ଙ୍କୁ ସପରିବାର ଡିନର୍ ପାଇଁ ନିମନ୍ତ୍ରଣ କରିଥିଲେ ମିସେସ୍ କାଜୋଲ୍ ସାକ୍‌ସେନା ତାଙ୍କ ଘରକୁ – ମାନେ ଲୋହାନୀ ହାଉସ୍‌କୁ। ସୁଲଗ୍ନା ପ୍ରଥମେ କୁଣ୍ଠିତ ହୋଇଥିଲା ଯିବା ପାଇଁ। ତା' ପୁଅଟି ଯେମିତିକା – ତାକୁ ନେଇ ସାକ୍‌ସେନାଙ୍କ ଘରକୁ ଯିବାକୁ ସେ ଚାହୁଁ ନଥିଲା। ଶୁଭଜିତ କହିଲେ, "ଆମକୁ ଯିବାକୁ ହେବ। ମି. ସାକ୍‌ସେନା ଜାଣନ୍ତି ନାହିଁ ମୁଁ ଖୁବ୍ ଶୀଘ୍ର ତାଙ୍କ କମ୍ପାନୀ ଛାଡ଼ିଦେଉଛି। ଯିବା ପୂର୍ବରୁ ସେମାନଙ୍କ ସହିତ ସଦିଚ୍ଛାପୂର୍ଣ୍ଣ ସମ୍ପର୍କ ରଖିକି ଯିବାକୁ ମୁଁ ଚାହେଁ। ସେ ଲୋକ ସହଜରେ କାହାକୁ ତାଙ୍କ ଘରକୁ ଡାକନ୍ତି ନାହିଁ। ତୁମେ ରେଡ଼ି ହୁଅ – ଆମେ ଯାଉଛେ ତାଙ୍କ ଘରକୁ।"

"ଆମେ କୁଆଡ଼େ ଯାଉଛେ ?" ସୋହମ୍ ପଚାରିଲା।

"ପାପାଙ୍କ ସାଙ୍ଗ ଘରକୁ।" ସୁଲଗ୍ନା କହିଲା।

"ତାଙ୍କର କ'ଣ ହାପି ବାର୍ଥ ଡେ ?" ସୋହମ୍‌ର ପ୍ରଶ୍ନ।

"ନାଇଁ। ସେମିତି ଖାଇବାକୁ ଡାକିଛନ୍ତି ରାତିରେ।" ସୁଲଗ୍ନା କହିଲା।

"ମୋର କିନ୍ତୁ ସେଠି ଖାଇବାର ନାହିଁ।" ସୋହମ୍ ଘୋଷଣା କରିଦେଲା।

"ନ ଖାଇଲେ ନାହିଁ – ବୁଲିବାକୁ ତ ଯିବା। ତାଙ୍କ ଘର ବହୁତ ବଡ଼ – ବଢ଼ିଆ ଗାର୍ଡେନ୍ ଅଛି। ଭଲ ଲାଗିବ ତୋତେ।"

"ବୁଲିବାକୁ ଯିବା ଯଦି ପାର୍କକୁ ଚାଲନା – ସେଠି ମୋର ସାଙ୍ଗମାନଙ୍କ ସହିତ ଖେଳିବି ମୁଁ।"

"ବେଶି ବକ୍‌ବକ୍ କରନା। ଚୁପ୍‌ଚାପ୍ ଡ୍ରେସ୍ ପିନ୍ଧି ବାହାରିପଡ଼।" ସୁଲଗ୍ନା ଧମକାଇ କହିଲା।

ସବୁଥର ପରି ସୋହମ୍ ନିଜ ପାଇଁ ପୋଷାକ ପସନ୍ଦ କରି ପିନ୍ଧିଲା। ଜିନ୍‌ସ ପ୍ୟାଣ୍ଟ, ଚେକ୍ ସାର୍ଟ ଓ ସ୍ୟାଣ୍ଡାଲ୍। ସୁଲଗ୍ନା ଫିକା ଗୋଲାପୀ ରଙ୍ଗର ସାଲଓ୍ୱାର୍ ସୁଟ୍ ପିନ୍ଧିଲା। ଶୁଭଜିତ୍ ମଧ୍ୟ ବେଶ୍ ଫିଟ୍‌ଫାଟ ହୋଇ ବାହାରିଲେ। ତାଙ୍କ ଘରଠାରୁ ଲୋହନୀ ହାଉସ୍ ଅନେକ ଦୂର। ସେଠାରେ ପହଞ୍ଚିଲା ବେଳକୁ ସୋହମ୍ ଶୋଇଯାଇଥିଲା ଗାଡ଼ିରେ। ଶୁଭଜିତ୍ ତାକୁ କାନ୍ଧରେ ପକାଇ ଲୋହାନୀ ହାଉସ୍‌ରେ ପାଦ ରଖିଲେ। ଅଫିସ୍‌ରେ ଅତିରିକ୍ତ କଡ଼ା ବସ୍ ସାକ୍‌ସେନା ଦମ୍ପତିଙ୍କର ରୂପ ଘରେ କିନ୍ତୁ ଅଲଗା। ସେମାନଙ୍କୁ ସାଦର ସ୍ୱାଗତ ଜଣାଇ ଘର ଭିତରକୁ ନେଇ ଆସିଲେ। ସୋହମ୍ ଶୋଇଯାଇଛି ଦେଖି ମିସେସ୍ ସାକ୍‌ସେନା ତାକୁ ନେଇ ନିଜ ବେଡ୍‌ରୁମ୍‌ରେ ଶୁଆଇଦେଲେ। ସୋହମ୍‌ର ନିଦ୍ରିତ ନିରୀହ ମୁହଁକୁ ଚାହିଁ କହିଲେ – "ହ୍ୱାଟ୍ ଏ ସୁଇଟ୍ ଆଣ୍ଡ୍ ଇନୋସେଣ୍ଟ ଫେସ୍।" ଆହା – କି ମଧୁର ଆଉ ନିରୀହ ମୁହଁଟେ ସତେ! ତା'ପରେ ଆଖିରୁ କଜ୍ଜ୍ୱଳ ନେଇ ଘରୁଆ ସ୍ତ୍ରୀଲୋକଟେ ପରି ସୋହମ୍‌ର ଗାଲରେ ଲଗାଇଦେଲେ ଦୃଷ୍ଟି ନ ପଡ଼ିବା ପାଇଁ। ସେ ଛୁଇଁବା ମାତ୍ରେ ସୋହମ୍‌ର ନିଦ ଭାଙ୍ଗିଗଲା। ଧଡ଼୍‌କରି ଉଠି ବସି ଚାରିଆଡ଼କୁ ଚାହିଁଲା। ଅପରିଚିତ ପରିବେଶରେ ନିଜକୁ ଦେଖି ପଚାରିଲା ତା' ମାଆକୁ "ଆମେ କୋଉଠିକୁ ଆସିଛେ ?"

ସୁଲଗ୍ନା ଚୁପ୍‌ଚୁପ୍ କରି କହିଲା, "କହିଥିଲି ନା, ପାପାଙ୍କ ସାଙ୍ଗ ଘରକୁ ଆସିଛେ।"

"କେତେବେଳେ ଯିବା ?"

"ଏଇନେ ଆସିଲେ ପରା – ସାଙ୍ଗେ ସାଙ୍ଗେ କେମିତି ଯିବା ? ଅଙ୍କଲ୍ ଆଣ୍ଟିକୁ ନମସ୍ତେ କୁହ।" ସୁଲଗ୍ନା କହିଲା।

ସୋହମ୍ କହିଲା, "ଆମେ ଘରକୁ ଯିବା।"

"ସିଏ କ'ଣ କହୁଛି ?" ମିସେସ୍ ସାକ୍‌ସେନା ପଚାରିଲେ।

"ଘରକୁ ଯିବ ବୋଲି କହୁଛି।" ଲଜ୍ଜିତ ହୋଇ ସୁଲଗ୍ନା କହିଲା।

"ଆମ ଘର କ'ଣ ତୁମର ପସନ୍ଦ ହେଉନି ବେବି ?" ମିସେସ୍ ସାକ୍‌ସେନା ସୋହମ୍‌କୁ ପଚାରିଲେ।

"ନା – ମୋତେ ଆମ ଘର ପସନ୍ଦ।" ସୋହମ୍ କହିଲା ହିନ୍ଦୀରେ।

"ବହୁତ ବଢ଼ିଆ କଥା। ନିଜ ଘରକୁ ସମସ୍ତେ ଭଲପାଇବା ସବୁଠୁ ବଢ଼ିଆ

କଥା। କିନ୍ତୁ ତୁମେ ଏବେ ଆମ ଘରକୁ ଆସିଛ ନା – ଚାଲ ମୁଁ ତୁମକୁ ଆମ ଘର ଦେଖେଇବି। ଆମ ଘର ବି ତୁମକୁ ଭଲ ଲାଗିବ।" ମିସେସ୍ ସାକ୍‌ସେନା କହିଲେ।

ସୋହମ୍ ବିଛଣାରୁ ଓହ୍ଲାଇ ପର୍ଯ୍ୟବେକ୍ଷଣରେ ଲାଗିଗଲା। ସୁଲଗ୍ନା ଡାକୁଥିଲା, "ନା ବେବି – ତୁମେ କୌଣସି ଜିନିଷରେ ହାତ ଲଗେଇବ ନାହିଁ। ଶୁଣ – ସିଆଡ଼େ ଯାଅନି।"

"ସେ ଯାଉ ତ– ତାକୁ କାହିଁକି ମନା କରୁଛ ?" ଚାଲ ଆମେ ସମସ୍ତେ ଯିବା ତା' ସାଙ୍ଗରେ। ଆମ ଘର ବି ଦେଖା ହୋଇଯିବ ତୁମମାନଙ୍କର।" ମି. ସାକ୍‌ସେନା କହିଲେ ଗମ୍ଭୀର କଣ୍ଠରେ। ଦ୍ରୁତ ପଦପାତରେ ସିଏ ଚାଲିଲେ ସୋହମ୍ ପଛେ ପଛେ। ସୁଲଗ୍ନା ସଂକୁଚିତ ହେଉଥିଲା। ତା'ର ଭାବନାଠାରୁ ମଧ୍ୟ ଆହୁରି ସୁନ୍ଦର ଭାବରେ ସୁସଜ୍ଜିତ ଲୋହାନୀ ହାଉସ୍‌ର କୋଣ ଅନୁକୋଣ। ଚମତ୍କାର ପେଣ୍ଟିଙ୍ଗ୍‌ସମାନ ଲାଗିଛି କାନ୍ଥରେ। ଡେକୋରେସନ୍ ପିସ୍‌ମାନ ବିଭିନ୍ନ ସ୍ଥାନରେ କଳାତ୍ମକ ଭାବରେ ରଖା ହୋଇଛି। ଫୁଲକୁଣ୍ଡମାନଙ୍କରେ ଇନ୍‌ଡୋର ପ୍ଲାଣ୍ଟଗୁଡ଼ିକ ସତେଜ ସୁନ୍ଦର ଦିଶୁଛନ୍ତି। ସୋହମ୍ ଆକ୍ୱାରିୟମ୍ ପାଖରେ ଯାଇ ଠିଆ ହେଲା। ବେଶ୍ ବଡ଼ ଆକାରର ଆକ୍ୱାରିୟମ୍‌ରେ ରଙ୍ଗ ବେରଙ୍ଗର ଅଦ୍ଭୁତ ସୁନ୍ଦର ମାଛମାନେ ଏପାଖରୁ ସେପାଖକୁ ପହଁରୁଥିଲେ। ନିଜ ନିଜ ମଧ୍ୟରେ ଗୋଡ଼ାଗୋଡ଼ି ହେଉଥିଲେ। ଆକ୍ୱାରିୟମ୍‌ର କାଚ କାନ୍ଥ ଉପରେ ହାତ ରଖି ମାଛମାନଙ୍କୁ ଛୁଇଁବାକୁ ଚେଷ୍ଟା କଲା ସୋହମ୍।

"ବେବି – ସେଥିରେ ଲାଗ ନାହିଁ।" ସୁଲଗ୍ନା ମନାକଲା ପୁଅକୁ – କାଳେ କିଛି ଭାଙ୍ଗି ପକେଇବ। କୌଣସି ଜିନିଷକୁ ସ୍ଥାନଚ୍ୟୁତ କରିଦେବ କୌତୂହଳରେ, ସେଥିପାଇଁ ସତର୍କ ଦୃଷ୍ଟି ରଖିଥିଲା ସେ।

"ମାମା ଦେଖ। ମାଛମାନଙ୍କର ପାର୍କ। ସେମାନେ କେମିତି ମଜାରେ ଖେଳୁଛନ୍ତି।" ସୋହମ୍ କହିଲା।

"ତୁମେ ଖାଲି ଦେଖ। ହାତ ଲଗାଅନି।"

ସମସ୍ତେ ଆସି ବସିଲେ ସିଟିଂରୁମ୍‌ରେ। ପରିଚାରକ ଆସି କଫି ଦେଇଗଲା ସମସ୍ତଙ୍କୁ।

"ବେବି, ତୁମେ କ'ଣ ଖାଇବାକୁ ପସନ୍ଦ କରିବ ? ଆଇସ୍‌କ୍ରିମ୍ ନା କୁଲ୍‌ଫି ?" ମିସେସ୍ ସାକ୍‌ସେନା ପଚାରିଲେ।"

"ମୁଁ ଥଣ୍ଡା ଖାଏନି। ଡକ୍ଟର ମନା କରିଛନ୍ତି। କାଶ ହେବ ଥଣ୍ଡା ଖାଇଲେ।" ସୋହମ୍ କହିଲା।

"ଆରେ ବାପ୍‌ରେ। କେତେ ହୁସିଆର ପିଲା। ଭେରିଗୁଡ୍। ଠିକ୍ ଅଛି – ମୁଁ ତୁମ

ପାଇଁ ଫ୍ରୁଟ୍‌ସ ଆଣୁଛି।" ମିସେସ୍ ସାକ୍‌ସେନା କିଛି ସମୟ ପରେ ଗୋଟେ ପ୍ଲେଟ୍‌ରେ ସୁନ୍ଦର ଭାବରେ କଟା ହୋଇଥିବା କିଛି ଆମ୍ବ ନେଇ ଆସିଲେ।

"ବେବି - ତୁମେ ଆମ୍ବ ଖାଇବାକୁ ପସନ୍ଦ କର ତ ?"

"ହଁ - ମୋର ପସନ୍ଦ - କିନ୍ତୁ ଇଏ ତ ବିଲ୍‌କୁଲ ଥଣ୍ଡା। ମୁଁ କହିଲି ନା - ଥଣ୍ଡା ଜିନିଷ ଖାଏନି।"

"ସରି ବେବି - ମୁଁ ଆଉ କିଛି ଆଣୁଛି।"

"ମୋ ନା ସୋହମ୍ - ମୁଁ ବେବି ନୁହେଁ।" ଗମ୍ଭୀର କଣ୍ଠରେ କହିଲା ସୋହମ୍।

"ଓ - ତୁମେ ତ ଏକଦମ୍ ହ୍ୟାଣ୍ଡସମ୍ ଯଙ୍ଗମ୍ୟାନ୍ - ଭେରିଗୁଡ୍ ନେମ୍। ଏବେ କୁହ ସୋହମ୍ ବାବା ତୁମ ପାଇଁ ମୁଁ କେତେ ପ୍ରକାରର ଖାନା ବନେଇଛି। କ'ଣ ଖାଇବ ?"

"କ'ଣ କ'ଣ ଅଛି ?" ସୋହମ୍ ପଚାରିଲା - ସତେ ଯେମିତି ହୋଟେଲ୍ ପରିଚାରକଙ୍କୁ ମେନୁ ପଚାରୁଛି।

"ବଢ଼ିଆ ବଢ଼ିଆ ଖାଇବା ବନା ହୋଇଛି। ମିଠା ପଲାଉ, ପୁରନ୍‌ପୁରି, ଭେଜିଟେବୁଲ୍ କୋଫ୍‌ତା, ଦହିବରା..." ମିସେସ୍ ସାକ୍‌ସେନା ଲମ୍ବା ତାଲିକା ଦେଇଥିଲେ ଖାଦ୍ୟମାନଙ୍କର।

ସେସବୁକୁ ନାକଚ କରିଦେଇ ସୋହମ୍ କହିଲା "ଆରେ - ଏସବୁ ମୁଁ କେବେ ବି ଖାଏନି। ମୋ ଖାଇବା ଭଳି ଚିଜ ତୁମ ଘରେ କିଛି ବି ନାହିଁ।"

ମିସେସ୍ ସାକ୍‌ସେନାଙ୍କ ମୁହଁ ଶୁଖିଗଲା। ସୁଲଗ୍ନା ବ୍ୟସ୍ତ ହେଇ କହିଲା, "ପ୍ଲିଜ୍ ମ୍ୟାଡାମ୍, ମୋ ପିଲାଟା ଖୁବ୍ ଏକବାଗିଆ। କିଛି ଖରାପ ଭାବିବେ ନାହିଁ। ବାହାରେ କାହା ଘରେ ସେ କିଛି ବି ଖାଏ ନାହିଁ। ସେଇଥିପାଇଁ ମୁଁ ତାକୁ କୁଆଡ଼କୁ ନେଇକି ଯାଏ ନାହିଁ। କେବଳ ଆପଣ ଡାକିଥିଲେ ବୋଲି ଶୁଭଜିତ କହିବାରୁ ମୁଁ ଆସିଲି। ସେ ଆପଣ ଦୁହିଁଙ୍କୁ ଖୁବ୍ ଶ୍ରଦ୍ଧା କରନ୍ତି।"

"ମୁଁ ଜାଣେ ସେ କଥା। ଶୁଭଜିତ୍ ବହୁତ ଭଲ ପିଲା। ତା' କାମରେ ସେ ଏକଦମ୍ ପର୍‌ଫେକ୍ଟ। ତା' ଉପରେ ମୋର ପୂରା ଭରସା ଅଛି। କିନ୍ତୁ ମୋ ଉପରେ ବି ସେ ରାଗିଯାଏ ବେଳେବେଳେ। ରୋକ୍‌ଠୋକ୍ ଭାବରେ କହିଦେବ ତା' ମନକୁ ଯାହା ଆସିବ ସେଇ କଥା। ତା'ର ଫଳାଫଳ କ'ଣ ହେବ - ସେ କଥା ତା'ର ସେତେବେଳେ ମନରେ ନଥାଏ।" ମିସେସ୍ ସାକ୍‌ସେନା କହିଲେ।

"ପୁଅଟା ମଧ୍ୟ ପୂରା ତା' ବାପାଙ୍କ ପରି ହେଇଛି। ତା' ମନକୁ ନ ଯିବ ଯଦି କୌଣସି କଥା ସେ କରିବନି। ଜୋର୍ କରି ତାକୁ କିଛି କଥା କରେଇ ହୁଏନି। କିଏ କ'ଣ ଭାବିବ ସେ କଥା ସିଏ ଭାବେ ନାହିଁ। ଦେଖନ୍ତୁ ନା - ଏତେ ବଡ଼ ହେଲାଣି -

କାହାକୁ ନମସ୍ତେ, ହ୍ୟାଲୋ, ହାଏ କହିବା ବି ଶିଖିଲାନି। ଲୋକମାନେ ଭାବୁଥିବେ ତା' ବାପା ମାଆ ସାଧାରଣ ଶିଷ୍ଟାଚାର ଟିକକ ମଧ ତାକୁ ଶିଖାଇ ନାହାନ୍ତି।" ସୁଲଗ୍ନା କ୍ଷୋଭ ପ୍ରକାଶ କରି କହିଲା।

"ଆରେ ନାଇଁ ନାଇଁ - ଏତେ ଛୋଟ ପିଲା - ତା' ମନକଥା ସିଏ ସ୍ପଷ୍ଟ ଭାବରେ କହିପାରୁଛି ତ ଖୁବ୍ ଭଲ। ଏବେଠାରୁ ନୀତି ନିୟମ, କାଇଦା କଟକଣା ଭିତରେ ତା' ମନକଥାକୁ ଚପେଇକି ରଖିଲେ ବଡ଼ ହେଲେ ବିଭିନ୍ନ ପ୍ରକାର ଜଟିଳତା ସୃଷ୍ଟି ହେବ। ତା'ର ଏଇ ସହଜ, ସରଳ ଭାବଟି ଯେତେ ଦିନ ପର୍ଯ୍ୟନ୍ତ ବଜାୟ ରହିପାରିବ ସେତେ ଭଲ।" ମିସେସ ସାକ୍‌ସେନା କହିଲେ।

ମିଷ୍ଟର ସାକ୍‌ସେନା ଶୁଭଜିତ୍‌ଙ୍କ ସହିତ ଅଫିସ୍‌ର କିଛି ଗୁରୁତ୍ୱପୂର୍ଣ୍ଣ ଆଲୋଚନା ଆରମ୍ଭ କରିଦେଇଥିଲେ ସିଟିଂ ରୁମ୍‌ରେ। ମିସେସ୍ ସାକ୍‌ସେନା କହିଲେ, "ଓହୋ - ସେ ବୋରିଂ ଆଲୋଚନା ଆମେ ଶୁଣିବା ନାହିଁ। ଚାଲ ଆମେ ଟେରାସ୍‌ରେ ବସିକି ଗପିବା। ସୋହମ୍‌ବାବା - ତୁମେ ଆମ ସାଙ୍ଗରେ ଯିବ କି ?"

"ନା - ନା ମୁଁ ପାପାଙ୍କ ପାଖରେ ରହିବି।" ସୋହମ୍ କହିଲା।

"ତାକୁ କିଛି ଟୟ ଦିଅ - ସେ ଖେଳିବ।" ମି. ସାକ୍‌ସେନା କହିଲେ।

ମିସେସ୍ ସାକ୍‌ସେନା ଖୁସି ହୋଇ କହିଲେ - "ସୋହମ୍‌ବାବା - ତୁମେ ଆସ ମୋ ସାଙ୍ଗରେ। ତୁମ ପାଇଁ ଗୋଟେ ବଢ଼ିଆ ଟୟ ରଖିଛି ଦେବି।"

"ଏଇଠିକୁ ଆଣିଦିଅ।"

"ସୋହମ୍।" ଶୁଭଜିତ୍ ଆଖି ଦେଖେଇଲେ ପୁଅକୁ।

"ଠିକ୍ ଅଛି। ମୁଁ ଆଣିଦେଉଛି। ତୁମେ ଏଇଠି ବସିଥାଅ। ସୁଲଗ୍ନା ତୁମେ ମୋ ସହିତ ଆସ।"

ମିସେସ୍ ସାକ୍‌ସେନା ସୁଲଗ୍ନାକୁ ସାଙ୍ଗରେ ନେଇ ଉପର ମହଲାକୁ ଗଲେ। ଘର ତ ନୁହେଁ ପ୍ରାସାଦ ଯେମିତି। ଘରର କାନ୍ଥବାଡ଼, ଆସବାବପତ୍ର ସବୁଥିରେ ସେମାନଙ୍କର ପ୍ରାଚୁର୍ଯ୍ୟର ଝଲକ। ଏତେ ବଡ଼ ଘରେ ରହନ୍ତି ମାତ୍ର ଦୁଇଟି ଲୋକ। ଆଉ ଗଣ୍ଡାଏ ଛଅଟା କାମ କରିବା ଲୋକ। ପୁଅ ଝିଅ ଦୁହେଁ ବିଦେଶରେ ରହି ପାଠ ପଢ଼ନ୍ତି। କଦବା କ୍ୱଚିତ୍ ଘରକୁ ଆସନ୍ତି। ସେମାନଙ୍କ ରୁମ୍‌ଗୁଡ଼ିକ କିନ୍ତୁ ସବୁବେଳେ ଟିପ୍‌ଟପ୍ ହୋଇ ରହିଥାଏ। ଅତିଥିମାନଙ୍କ ପାଇଁ କେତୋଟି ପ୍ରକୋଷ୍ଠ ରହିଥାଏ ସୁସଜ୍ଜିତ ହୋଇ। ସେଗୁଡ଼ିକର ଆବଶ୍ୟକତା ଖୁବ୍ କମ୍ ପଡ଼ିଥାଏ। ସ୍ୱାମୀ ସ୍ତ୍ରୀ ଦୁହେଁ ନିଜ ନିଜର କର୍ମ ଜୀବନରେ ଏତେ ବେଶି ଜଡ଼ିତ ହୋଇ ରହିଥାଆନ୍ତି ଯେ ସେମାନଙ୍କର ସାମାଜିକ ସମ୍ପର୍କର ବଳୟଟି ଧୀରେ ଧୀରେ ଛୋଟ ହୋଇ ହୋଇ ଏବେ ପ୍ରାୟ ନାହିଁରେ ପହଞ୍ଚି ଯାଇଛି। ସ୍ୱୟଂ ଗୃହସ୍ଥ

ଗୃହିଣୀ ଅନୁପସ୍ଥିତ ଥିବା ଗୃହାଙ୍ଗନକୁ ଆସି ରହିବାକୁ କୋଉ ଆତ୍ମୀୟସ୍ୱଜନ ଭଲା ପସନ୍ଦ କରିବେ ? କେବେ କେବେ ପାର୍ଟି ହୁଏ ଘରେ, ଅଫିସ୍ ତଥା ବ୍ୟାବସାୟିକ ସମ୍ପର୍କ ରହିଥିବା ବନ୍ଧୁମାନଙ୍କୁ ନେଇ ।

"ଏଇ ରୁମ୍‌ଟି ମୋ ଝିଅ ସୋହନାର । ୟୁଏସ୍‌ଏରେ ମ୍ୟାନେଜମେଣ୍ଟ ପଢ଼ିବାକୁ ଯାଇଛି । ପୁଅ ବି ଏମ୍‌ଟେକ୍ କରୁଛି ଜର୍ମାନୀରେ । ପିଲାଦିନୁ ସେମାନେ ବୋର୍ଡିଂ ସ୍କୁଲରେ ରହି ପଢ଼ି ଆସିଛନ୍ତି । ତେଣୁ ଘର ସହିତ ସେମାନଙ୍କର ସେତେ ବେଶି ଆଟାଚ୍‌ମେଣ୍ଟ ନାହିଁ । ସତକଥା କହିଲେ ଆମେ ସେମାନଙ୍କୁ ସମୟ ଦେଇପାରୁନା ବୋଲି ଘରକୁ ଆସିଲେ ସେମାନେ ବୋର୍ ହୋଇଯାଆନ୍ତି । ଫେରିଯିବାକୁ ବ୍ୟସ୍ତ ହୁଅନ୍ତି ।"

କାନ୍ଥରେ କେତେଗୁଡ଼ାଏ ଫଟୋ ଲଗା ଯାଇଛି ଗୋଟେ ସୁନ୍ଦର ଝିଅର । ପିଲାଦିନର କେତୋଟି ଫଟୋ ସହିତ ଏବେକାର ଫଟୋଟା ମଧ୍ୟ ରହିଛି । କୋଉଠି ଏକୁଟିଆ ତ କୋଉଠି ତା' ବାପାଙ୍କ ସହିତ କି ସାଙ୍ଗମାନଙ୍କ ସହିତ । ଦିବ୍ୟ ସୁନ୍ଦରୀ ଝିଅଟିଏ – ଆଖି ଲାଖିଗଲା ପରି ଅପୂର୍ବ ସୁନ୍ଦରୀ ।

"ଇଏ ମୋ ଝିଅ ସୋହନା । ତା' ପାପାଙ୍କର ଭାରି ଗେହ୍ଲା ଝିଅ । ସିଏ ପୂରା ତା' ପାପାଙ୍କ ପରି ଦେଖିବାକୁ । ପୁଅଟା ମୋ ପରି ହୋଇଛି । ନିହାତି ଦରକାର ନ ପଡ଼ିଲେ ମୁଁ ଫଟୋ ଉଠାଇବାକୁ ଭଲ ପାଏନି । ଝିଅ ସାଙ୍ଗରେ ମୋତେ ଦେଖିଲେ ତ ନ ଜାଣିଥିବା ଲୋକେ ମୋତେ ତା'ର ଆୟା ବୋଲି ହିଁ ଭାବନ୍ତି । ସେଇଥିପାଇଁ ତା' ସାଙ୍ଗରେ ମୋର ଗୋଟିଏ ବି ଫଟୋ ନାହିଁ । ପୁଅ ବି ରାଜି ହୁଏନି ତା' ଭଉଣୀ ସାଙ୍ଗରେ ଫଟୋ ଉଠାଇବାକୁ । ମୋ ଉପରେ ତା'ର ଭାରି ରାଗ – ତାକୁ ଏତେ ଅସୁନ୍ଦର କରି ଜନ୍ମ କରିଥିବାରୁ ।"

"ସେମିତି କାହିଁକି କହୁଛନ୍ତି ? ବାହାରର ରଙ୍ଗ ରୂପରେ କ'ଣ ଅଛି ? ପ୍ରକୃତ ସୌନ୍ଦର୍ଯ୍ୟ ତ ଅନ୍ତରରେ ଥାଏ । ଆପଣଙ୍କ ଯୋଗ୍ୟତା, ଆପଣଙ୍କର ଭଲଗୁଣ, ସୁନ୍ଦର ବ୍ୟବହାର ମଧ୍ୟ ବ୍ୟକ୍ତିତ୍ୱକୁ ସୁନ୍ଦରତାରେ ଭରି ଦେଇଥାଏ ।"

"ସେସବୁ ମନ ବୁଝେଇବା କଥା – ଆଦର୍ଶର କଥା । ଇନ୍ଦ୍ରଜିତଙ୍କ ସହିତ ମୋର ବାହାଘର ସମସ୍ତଙ୍କ ପାଇଁ ଗୋଟେ ବିରାଟ ପ୍ରଶ୍ନବାଚୀ । ତାଙ୍କ ସହିତ କୌଣସି ପାର୍ଟି, ଫଙ୍କସନ୍ ଇତ୍ୟାଦିକୁ ମୁଁ ଯିବାକୁ ଇଚ୍ଛା କରେନା । ଲୋକମାନେ ଜାଣି ଜାଣି ଆମକୁ ଶୁଣାଇ ଶୁଣାଇ ଅକ୍ଷେପ କରନ୍ତି । ସ୍ତ୍ରୀ ବଦଳରେ ଭୁଲ୍‌ରେ ମେଡ୍ ସର୍ଭେଣ୍ଟକୁ ନେଇ ପାର୍ଟିକୁ ସେ ଚାଲିଆସିଛନ୍ତି ବୋଲି କହନ୍ତି । ସମସ୍ତଙ୍କର ଗୋଟେ ଭୁଲ୍ ଧାରଣା ରହିଛି ଇନ୍ଦ୍ରଜିତ 'ଲୋହାନୀ ହାଉସ୍' ଯୌତୁକରେ ପାଇଛନ୍ତି ମୋ ପରି ଅସୁନ୍ଦରୀ ସ୍ତ୍ରୀଲୋକକୁ ବାହା ହେବାର କ୍ଷତିପୂରଣ ବାବଦକୁ । କିନ୍ତୁ ଲୋହାନୀ ହାଉସ୍ ଇନ୍ଦ୍ରଜିତଙ୍କର ଅଜାଙ୍କର ।

ଇନ୍ଦ୍ରଜିତଙ୍କର ମାଆ ତାଙ୍କ ବାପାଙ୍କର ଏକମାତ୍ର ସନ୍ତାନ ହୋଇଥିବାରୁ ଉତ୍ତରାଧିକାର ସୂତ୍ରରେ ତାଙ୍କୁ ଏଇଟା ମିଳିଥିଲା। ମାଆ ତାଙ୍କର ଘରଟିକୁ ଡାକନ୍ତି 'ଲୋହାନୀ ହାଉସ୍'।"

ଅନେକ ଦିନ ପରେ 'ଲୋହାନୀ ହାଉସ୍'କୁ ଛୋଟ ପିଲାଟିଏ ଆସିଛି। ସାକ୍‌ସେନା ଦମ୍ପତି ଖୁବ୍ ଖୁସି ହେଉଥିଲେ ସୋହମ୍‌କୁ ଦେଖି। ଝିଅ ସୋହନା ରୁମ୍‌ରୁ ବେଶ୍ ବଡ଼ ଆକାରର ଟେଡ଼ିଟିଏ ଆଣି କାଜୋଲ୍ ସାକ୍‌ସେନା ସୋହମକୁ ଦେବାକୁ ଚାହିଁଲେ। ଟେଡିଟିକୁ ଆଦୌ ଧରିଲା ନାହିଁ ସେ।

"ମୋର ଟେଡି ପସନ୍ଦ ନୁହେଁ।" କହିଲା ସେ।

"ତେବେ କୋଉ ଟୟ ତୁମର ପସନ୍ଦ କୁହ ?" କାଜୋଲ୍ ସାକ୍‌ସେନା ଆଗ୍ରହର ସହିତ ପଚାରିଲେ।

"ମୋତେ ବେନ୍‌ଟେନ୍‌ର ସବୁ ଟୟ ପସନ୍ଦ।" ସୋହମ୍ କହିଲା।

"ଆମ ଘରେ ତ ବେନ୍‌ଟେନ୍‌ର କିଛି ବି ଟୟ ନାହିଁ। ତୁମେ ପୁଣି ଥରେ ଆମ ଘରକୁ ଆସିଲେ ମୁଁ ତୁମ ପାଇଁ ବେନ୍‌ଟେନ୍‌ର ଟୟ ରଖିଥିବି।"

"ତୁମ ଘରକୁ ମୁଁ ଆଉ କେବେ ଆସିବି ନାହିଁ।" ଦୃଢ଼ କଣ୍ଠରେ କହିଲା ସୋହମ୍।

କାଜୋଲ୍ ସାକ୍‌ସେନାଙ୍କର ମୁହଁ ଶୁଖିଗଲା। ତଥାପି ସେ ହସହସ ମୁହଁରେ କଣ୍ଠରେ ଯଥାସମ୍ଭବ କୋମଳତା ଆଣିବାକୁ ଚେଷ୍ଟା କରି ପଚାରିଲେ, "କାହିଁକି ବାବା, ଆମେ କି ଅପରାଧ କରିଛୁ ? ଆମ ଘରକୁ ଆଉ କେବେ ମଧ୍ୟ ଆସିବନି କାହିଁକି ?"

ସୋହମ୍ ଇନ୍ଦ୍ରଜିତ୍ ସାକ୍‌ସେନାଙ୍କ ଆଡ଼କୁ ଅଙ୍ଗୁଳି ନିର୍ଦ୍ଦେଶ କରି କହିଲା, "ତମ ଘରେ ଏଇ ଯୋଉ 'ବନ୍ଦର୍' ରଖିଛ - ତା'ରି ପାଇଁ। ଆସିବା ପାଖରୁ ମୋ ପଛରେ ପଡ଼ିଯାଇଛି ସିଏ। ମୋତେ ଟିକେ ବି ଭଲ ଲାଗୁନି ତାକୁ।"

ଭଦ୍ରଲୋକଙ୍କର ଗୋଲାପି ଗୋରା ମୁହଁ ନାଲି ପଡ଼ିଗଲା ପୂରା। ଅପ୍ରସ୍ତୁତ ହୋଇଗଲେ, ସ୍ତବ୍ଧ ହୋଇଗଲେ ଶୁଭଜିତ୍ ଓ ସୁଲଗ୍ନା। ସ୍ଥିର ହୋଇଗଲା ସତେ କି ସମୟ। ବିରାଟ ବିଜିନେସ୍ ଆଇକନ୍ ଇନ୍ଦ୍ରଜିତ୍ ସାକ୍‌ସେନାଙ୍କୁ ପାଞ୍ଚ ବର୍ଷର ପିଲାଟିଏ 'ମାଙ୍କଡ଼' ବୋଲି କହି ତାଙ୍କର ସ୍ନେହକୁ ପ୍ରତ୍ୟାଖ୍ୟାନ କରିଛି। କ'ଣ ହେବ ଯା'ପରେ ? ସେହି ସ୍ତବ୍ଧତାକୁ ଭାଂଗି ହୋ ହୋ ହୋଇ ହସିଉଠିଲେ କାଜୋଲ୍ ସାକ୍‌ସେନା। ସ୍ୱାମୀଙ୍କୁ ଚାହିଁ କହିଲେ, "ମୁଁ ବିଶ୍ୱାସ କରିପାରୁନି ଇନ୍ଦର୍ - ତୁମକୁ କେହି ଏମିତି କହିପାରିବ ବୋଲି। ସତରେ ତୁମର ମୁହଁ ନାଲିମାଙ୍କଡ଼ର ମୁହଁ ପରି ଦିଶୁଛି। ନିଜ ମୁହଁକୁ ମିରର୍‌ରେ ଯାଇ ଦେଖିପାର।"

ଶୁଭଜିତ୍‌ର ମୁହଁ କଳା ପଡ଼ିଯାଇଥିଲା ଅପ୍ରତିଭ ବୋଧରେ। ସୁଲଗ୍ନାର ଇଚ୍ଛା ହେଉଥିଲା ଠୋ କିନା ଚଟକଣାଟେ ପକାନ୍ତା କି ସୋହମ୍ ଗାଲରେ - ଏମିତି ଅଭଦ୍ରଙ୍କ

ଭଳି କଥାବାର୍ତ୍ତା କରିବା ଛାଡ଼ି ଯାଆନ୍ତା । ପୁଅର କାନ୍ଧକୁ ଜୋର୍‌ରେ ହଲାଇ ଦେଇ ସୁଲଗ୍ନା କହିଲା, "ସରି କହ – ସରି କହ ଅଙ୍କଲ୍ ଆଣ୍ଟିଙ୍କୁ ।"

"ମୁଁ କ୍ଷମା କହିବିନି ।"

"ସରି କହ – ନହେଲେ ମୁଁ ତୋ ସହିତ କଥା କହିବିନି ।" ସୁଲଗ୍ନା କହିଲା ।

ମାଆର ରାଗ ତମତମ ମୁହଁକୁ ଚାହିଁ ସୋହମ୍‌ର ଆଖି ଛଳଛଳ ହେଲା ।

"ସରି ମାମା ।" କହିଲା ସୋହମ୍ ।

"ମୋତେ ନୁହେଁ । ଅଙ୍କଲ୍ ଆଣ୍ଟିଙ୍କୁ କୁହ ।"

ତଳକୁ ମୁହଁ ପୋତି ସୋହମ୍ ଖୁବ୍ ଧୀରେ 'ସରି' କହିଲା ।

"ଆରେ ସିଏ କ'ଣ ? ଛୋଟପିଲା – ତାକୁ କ'ଣ ଜଣା ! ତାକୁ ଯୋଉଟା ଖରାପ ଲାଗିଲା ସେ କହିଦେଲା । ଇଏ ବି କାହିଁକି ତା' ସାଙ୍ଗରେ ଲାଗୁଥିଲେ ଏତେ ! ଯାହା କହିଛି – ଠିକ୍ କହିଛି । ପୁଅ ପିଲାମାନେ ଏତେ ଗୋରା ହେବା କ'ଣ ଭଲ ? ଏବେ ଆସ – ଆମେ ଖାଇବାକୁ ଯିବା ।" କାଜୋଲ୍ ସାକ୍‌ସେନା କହିଲେ ।

ଡାଇନିଂ ଟେବୁଲ୍ ପାଖକୁ ସମସ୍ତେ ଆସିଲେ । କେତେ ପ୍ରକାରର ଖାଦ୍ୟ ସାମଗ୍ରୀ ସୁଦୃଶ୍ୟ ପାତ୍ରମାନଙ୍କରେ ସଜା ହୋଇ ରହିଛି । ବାଢ଼ିବା ପାଇଁ ପରିଚାରକମାନେ ମଧ ଅପେକ୍ଷା କରି ରହିଛନ୍ତି । ସମସ୍ତେ ବସିବାବେଳେ ସୋହମ୍ ଗୋଟେ ଚେୟାର୍ ଅଧିକାର କରି ବସିଲା । ଖାଦ୍ୟ ସାମଗ୍ରୀ ସାଜସଜା ଦେଖି ତା' ମୁହଁରେ ଖୁସି ଖୁସି ଭାବ ଫୁଟି ଉଠିଲା ।

"ତୁମେ କ'ଣ ଖାଇବ ସୋହମ୍‌ବାବା ?" କାଜୋଲ୍ ସାକ୍‌ସେନା ପଚାରିଲେ ।

ମୁଣ୍ଡ ହଲାଇ ମନାକଲା ସୋହମ୍ ।

"କିଛି ହେଲେ ଖାଅ ତ ! ନ ଖାଇଲେ କେମିତି ହେବ ?" ବ୍ୟସ୍ତ ହୋଇ ସେ କହିଲେ ।

"ଆପଣ ଆଦୌ ବ୍ୟସ୍ତ ହୁଅନ୍ତୁନି ମାମ୍ । ତା'ର ଇଚ୍ଛା ହେଲେ ସେ ଖାଇବ ।" ସୁଲଗ୍ନା କହିଲା ।

ଦୀର୍ଘ ନିଶ୍ୱାସ ପକାଇ ପ୍ଲେଟ୍‌ମାନଙ୍କରେ ନିଜେ ଖାଦ୍ୟ ପରଷିଲେ ଶ୍ରୀମତୀ ସାକ୍‌ସେନା ।

ରଙ୍ଗ, ରୂପ, ବାସ୍ନାରେ ଚମତ୍କାର ମନେ ହେଉଥିଲା ଖାଦ୍ୟ ସମ୍ଭାର । ସ୍ୱାଦରେ ମଧ ଅନୁପମ ଥିଲା । ସୋହମ୍ ଚୁପ୍‌ଚାପ୍ ବସି ସମସ୍ତଙ୍କର ଖାଇବା ଉପଭୋଗ କରୁଥିଲା । ଖାଇବା ସରି ଆସିବାବେଳକୁ ସେ କହିଲା, "ମୁଁ ଟିକେ ଦୁଧ ପିଇବି ।"

ଶ୍ରୀମତୀ ସାକ୍‌ସେନା ଖୁସିରେ ଗଦ୍‌ଗଦ୍ ହୋଇ କହିଲେ, "ଓ ମେରା ରାଜାବେଟା – ମୁଁ ଏବେ ଦେଉଛି – ସୋହମ୍‌ବାବାକୁ ଦୁଧରେ ବନ୍‌ଭିଟା ଗୋଳାଇ ଦେବି ।"

"ନା ବନ୍‌ଭିଟା ନୁହେଁ - ଖାଲି ଦୁଧ।" ସୋହମ୍ କହିଲା।

"ଠିକ୍ ଅଛି।" ତରବର ହୋଇ କାଜୋଲ୍ ସାକ୍‌ସେନା ଉଠିଗଲେ ସୋହମ୍ ପାଇଁ ଦୁଧ ଆଣିବାକୁ। ଫ୍ରିଜ୍ ଖୋଲିଦେଇ ଦେଖିଲେ କ୍ଷୀର ନାହିଁ। ସବୁତକ ଥାକ ଅଣ୍ଡାଳିଗଲେ। ଗୋଟାଏ ବି କ୍ଷୀର ପ୍ୟାକେଟ୍ ନାହିଁ କି କ୍ଷୀର ଟିକେ କୌଣସି ପାତ୍ରରେ ଅବଶିଷ୍ଟ ନାହିଁ।

"ମୁଁ ଏବେ ପଡ଼ିଶାଘରୁ ଦୁଧ ନେଇ ଆସୁଛି।" ବ୍ୟସ୍ତ ହୋଇ କହିଲେ ସେ।

କାନ୍ଥଘଣ୍ଟାକୁ ଚାହିଁଲା ସୁଲଗ୍ନା। ରାତି ବାରଟା ବାଜି ସାରିଲାଣି। ଏତେ ରାତିରେ ପଡ଼ିଶାଘର ଲୋକଙ୍କୁ ନିଦରୁ ଉଠାଇ ସୋହମ୍ ପାଇଁ କ୍ଷୀର ମାଗିବାକୁ ଯିବେ କାଜୋଲ୍ ସାକ୍‌ସେନା!

"ପ୍ଲିଜ୍ ମାମ୍। ଇଏ ଗୋଟେ ସେମିତି କହିଦେଲା। ଆପଣ ଆଦୌ ବ୍ୟସ୍ତ ହୁଅନ୍ତୁ ନାହିଁ। ଆପଣଙ୍କୁ କହୁଥିଲି ନା - ରାତି ଦୁଇଟାରେ ଘରକୁ ଫେରିଲେ ମଧ ମୁଁ ତା' ପାଇଁ କିଛି ବନେଇଲେ ସେ ଖାଇବ। ଏମିତି ତା'ର ବଦଭ୍ୟାସ। ଆମେ ବହୁତ ଦୁଃଖିତ ତା'ର କଥାବାର୍ତ୍ତା ଆଉ ବ୍ୟବହାର ପାଇଁ।"

"ଆରେ ଦୁଃଖ ତ ଆମକୁ ଲାଗୁଛି। କାଙ୍ଗାଳ ଭଳି ଲାଗୁଛି ଆମକୁ। ଏତେ ବେଳ ପରେ ଛୁଆଟା କ'ଣ ଟିକେ ଖାଇବାକୁ ମାଗିଲା - ଆମେ ଦେଇ ପାରିଲୁନି! ଅବସୋସ...।" କାଜୋଲ୍ ସାକ୍‌ସେନା କହିଲେ ବିଷଣ୍ଣ କଣ୍ଠରେ।

ସେମାନଙ୍କଠାରୁ ବିଦାୟ ନେଇ ଆସି ଗାଡ଼ିରେ ଘରକୁ ଫେରିବାବେଳେ ଶୁଭଜିତ୍ ଗମ୍ଭୀର ହୋଇ କହିଲେ, "ସୋମବାର ଦିନ ମୁଁ ଅଫିସ୍‌ରେ ପହଞ୍ଚିଲା ବେଳକୁ ମୋର ଟର୍ମିନେସନ୍ ଲେଟର୍ ଥୁଆ ହୋଇଥିବ ଟେବୁଲ ଉପରେ। ସୁଲୁ - ତମେ କିଛି କର। ପିଲାଟା ପୂରା ବିଗିଡ଼ି ଗଲାଣି। ତା'ର କଥାବାର୍ତ୍ତାର ଢଙ୍ଗ, ବ୍ୟବହାର କେମିତି ଅନ୍ୟମାନଙ୍କ ଆଗରେ ଆମକୁ ଲଜ୍ଜିତ କରୁଛି ଦେଖିଲ ତ!" ସୁଲଗ୍ନା ବି ସେଇକଥା ଭାବୁଥିଲା। ଦୁଃଖ ପ୍ରକାଶ କରି ସାକ୍‌ସେନା ଦମ୍ପତିଙ୍କ ପାଖକୁ ମେସେଜ୍ ଲେଖିବାକୁ ସେଲ୍‌ଫୋନ୍ ବାହାର କଲା ବେଳକୁ ଶୁଭଜିତ୍‌ଙ୍କ ସେଲ୍‌ଫୋନ୍‌ରେ ମେସେଜ୍ ଆସିବାର ସଂକେତ ଜଣାଗଲା। ଶୁଭଜିତ୍ ଡ୍ରାଇଭ୍ କରୁଥିବାରୁ ସୁଲଗ୍ନା ସେଲ୍‌ଫୋନ୍‌ର ସେଇ ମେସେଜ୍‌ଟି ପଢ଼ିଲା ଶ୍ରୀଯୁକ୍ତ ଏବଂ ଶ୍ରୀମତୀ ସାକ୍‌ସେନାଙ୍କର ମେସେଜ୍ - "ଆମ ଘରୁ ସୋହମ୍ ଭୋକରେ ଯାଇଥିବାରୁ ଏବଂ ଆମେ ତାକୁ ଠିକ୍ ଭାବରେ ଆପ୍ୟାୟିତ କରିପାରିନଥିବାରୁ ଆମେ ବହୁତ ବହୁତ ଦୁଃଖିତ। ଆଶାକରୁ ସେ ଆମକୁ ମାଫ୍ କରିଦେବ।"

କ'ଣ ଉତ୍ତର ଲେଖିବ ଭାବି ନପାରି ସେଲ୍‌ଫୋନ୍‌ଟିକୁ ଚାପି ଧରିଲା ସୁଲଗ୍ନା। ସୋହମ୍‌କୁ ଚାହିଁଲା ସେ। କାରର ପଛସିଟ୍‌ରେ ନିଘୋଡ଼ ନିଦରେ ଶୋଇଯାଇଥିଲା ସୋହମ୍।

# ଅପ୍ରତିହତ

ଷ୍ଟେସନ୍‌ରେ ପହଞ୍ଚିବାବେଳକୁ ଟିକେଟିକେ ବର୍ଷା ପଡ଼ିବା ଆରମ୍ଭ ହୋଇଯାଇଥିଲା। ନିଜର ଏକମାତ୍ର ସୁଟ୍‌କେଶକୁ ଧରି କମ୍ପାର୍ଟମେଣ୍ଟ ଭିତରକୁ ପଶିଗଲା କୌସ୍ତୁଭ। ସିଟ୍ ନମ୍ବର ଦେଖି ସୁଟ୍‌କେଶଟିକୁ ଚେନ୍‌ଲକ୍ କରିଦେଇ ଆରାମରେ ବସିଗଲା ସେ। ସାରାଦିନ ଅନେକ ଧାଁ ଦଉଡ଼ ହୋଇଛି। ସପ୍ତାହଟିଏ ଛୁଟି ନେବ ବୋଲି ଅଫିସ୍‌ରେ ଗୁଡ଼ାଏ କାମ ସାରିବାକୁ ପଡ଼ିଛି। ଫ୍ଲାଇଟ୍‌ରେ ଯାଇଥିଲେ ଏତେବେଳକୁ ଘରେ ପହଞ୍ଚି ପାରିବାରିକ ଉତ୍ସବରେ ସାମିଲ୍ ହୋଇ ସାରନ୍ତାଣି ସେ। କିନ୍ତୁ ଶେଷ ମୁହୂର୍ତ୍ତରେ ଖରାପ ପାଗ ହେତୁ ଫ୍ଲାଇଟ୍ ବାତିଲ୍ ହୋଇଗଲା। ଯେମିତି ହେଲେ ତାକୁ ଘରେ ପହଞ୍ଚିବାକୁ ହେବ। ଆଜି ପହଞ୍ଚିଲେ ଭଲ ହୋଇଥାଆନ୍ତା। ଦୂର ଦୂରାନ୍ତରରୁ ଆସି ପହଞ୍ଚି ଗଲେଣି ବନ୍ଧୁବାନ୍ଧବ ସମସ୍ତେ। କହିବାକୁ ଗଲେ ସିଏ ହିଁ ସବୁଠୁ ପାଖରେ ଅଛି। ଭୁବନେଶ୍ୱରରୁ କଲିକତା ଏମିତି କେତେ ଦୂର ଯେ! ତା'ର କିନ୍ତୁ ସମସ୍ତଙ୍କଠାରୁ ଡେରି ହୋଇଯାଇଛି ଘରେ ପହଞ୍ଚିବାରେ। କ'ଣ ଆଉ କରିବ ? ପ୍ରାଇଭେଟ୍ କମ୍ପାନୀରେ ଚାକିରି କରିଛି ସେ। ଆଖିଦୃଶିଆ ଦରମା ଓ ଅନ୍ୟାନ୍ୟ ସୁବିଧା ସୁଯୋଗ ଯେମିତି ରହିଛି - ତା'ର ସମସ୍ତ ଶକ୍ତି ସାମର୍ଥ୍ୟକୁ ଚିପୁଡ଼ି ସେମିତି କାମ ମଧ ଆଦାୟ କରି ନେଉଛନ୍ତି ତା'ର ନିଯୁକ୍ତିଦାତା। ସିଏ ଯାହା ଚାହିଁବ - ସବୁ ଦେବାକୁ ପ୍ରସ୍ତୁତ ସେ- କେବଳ ଛୁଟି ଦେବାକୁ ସହଜରେ ରାଜି ହୁଅନ୍ତି ନାହିଁ। ବେଳେବେଳେ ଅଣନିଃଶ୍ୱାସୀ ହୋଇଯାଏ କୌସ୍ତୁଭ। ମଣିଷ କାହିଁକି ରୋଜଗାର କରିବ ? ନିଜର ବାପା ମାଆ, ସ୍ତ୍ରୀ, ପିଲା, କୁଟୁମ୍ବଙ୍କ ପାଇଁ ତ ? ସକାଳୁ ରାତି ପର୍ଯ୍ୟନ୍ତ ସେମାନଙ୍କର ମୁହଁ ବି ଦେଖିବାର ସୁଯୋଗ ନଥିବ। କାହାର ସୁବିଧା ଅସୁବିଧାରେ ଠିଆ ହେବାର ସମୟ ଟିକେ ନଥିବ; ସେମିତି ଚାକିରି - ସେମିତି ରୋଜଗାରର ମୂଲ୍ୟ କ'ଣ ? ବିରକ୍ତ ହୋଇଗଲେ ମନରେ ଏଭଳି ଭାବେ ସିନା - ଏମିତି ଏକ ଚାକିରିର ମୋହରୁ ନିଜକୁ ମୁକୁଳେଇ ଆଣିବା ସହଜ କଥା ନୁହେଁ।

ଏକଦା କୌସ୍ତୁଭ ଖୁବ୍ ସ୍ୱାଭିମାନୀ ଆଉ ଜିଦ୍‌ଖୋର ସ୍ୱଭାବର ଥିଲା। ସେଇଥିପାଇଁ ତ ସରକାରୀ ଚାକିରିକୁ ପାଦରେ ଆଡ଼େଇ ଦେଇ ଚାଲି ଆସିବାକୁ ଗୋଟାଏ ମୁହୂର୍ତ୍ତ ବି ଲାଗି ନଥିଲା ତାକୁ। ଅଧସ୍ତନ କର୍ମଚାରୀ ଥିଲା ସେ - କାହାର କ୍ରୀତଦାସ କି ଗୋତି ଶ୍ରମିକ ନଥିଲା। ପ୍ରତିଯୋଗିତାମୂଳକ ପରୀକ୍ଷା ଦେଇ ହଜାର ହଜାର ପ୍ରାର୍ଥୀଙ୍କ ମଧ୍ୟରୁ ନିଜର ଯୋଗ୍ୟତା ବଳରେ ସେ ଚାକିରି ପାଇଥିଲା। କୌଣସି ପ୍ରଭାବଶାଳୀ ଆତ୍ମୀୟଙ୍କର ସୁପାରିଶରେ ସେ ଚାକିରି ପାଇ ନଥିଲା କି କାହାକୁ ଖୋସାମତ କରି କିମ୍ବା ଲାଞ୍ଚ ଦେଇ ସେ ଚାକିରି ପାଇନଥିଲା। ତେବେ କାହିଁକି ସେ ଅସହିଷ୍ଣୁ, ସଂକୀର୍ଣ୍ଣମନା ତଥା ଅତି ମାତ୍ରାରେ ଈର୍ଷା ପରାୟଣ 'ବସ୍'ଟିର ଅଯଥା ନିର୍ଯାତନା ସହି ସେଇଠି ପଡ଼ି ରହିଥାନ୍ତା ? ଚାକିରିରୁ ଇସ୍ତଫା ଦେଇ ସେ ଘରକୁ ଚାଲି ଆସିଥିଲା। ସାଙ୍ଗସାଥୀ, ବନ୍ଧୁବାନ୍ଧବ ସମସ୍ତେ ବ୍ୟସ୍ତ ହୋଇଯାଇଥିଲେ ତା'ର ସେହି 'ଅପରିଣାମଦର୍ଶିତା' ପାଇଁ। ଯଦି ତୋର ବସ୍ ସହିତ ନ ପଡ଼ିଲା, ଚେଷ୍ଟା କରି ଆଉ କୋଉଠିକୁ ବଦଳି ହୋଇ ଚାଲିଆସି ଥାଆନ୍ତୁ। ଧଡ୍ କରି ଏତେ ଭଲ ଚାକିରିଟା ଛାଡ଼ିଦେଲୁ କେମିତି ? ଆଜିକାଲି ଚାକିରି ଖଣ୍ଡେ ପାଇଁ ପିଲାମାନେ କି ଅବସ୍ଥା ହେଉଛନ୍ତି ! ତୁ ଏଭଳି ଚାକିରିକୁ ଗୋଇଠା ମାରି ଚାଲି ଆସିଲୁ। ଯା'ଠୁ ବୋକାମି ଆଉ କ'ଣ ଅଛି ?' - 'ବସ୍'ର ଅତ୍ୟାଚାରଠାରୁ ଆହୁରି ଅସହ୍ୟ ଲାଗିଥିଲା ଆତ୍ମୀୟସ୍ୱଜନଙ୍କର ଏଭଳି ମନ୍ତବ୍ୟ। ଅବଶ୍ୟ ତାକୁ ଆଉ ଗୋଟେ ଚାକିରି ମିଳିବାକୁ ବେଶି ଦିନ ଲାଗିନଥିଲା। ସରକାରୀ ଚାକିରି ନହେଁ - ପ୍ରାଇଭେଟ୍ ସଂସ୍ଥା। ଚାକିରିର ପ୍ୟାକେଜ୍ କଥା ଶୁଣି ସମସ୍ତେ ତାଟକା ହୋଇଯାଇଥିଲେ। କେହି କେହି ନିଜର ଅସହିଷ୍ଣୁ ଭାବକୁ ଚପାଇ ନ ପାରି କହି ପକେଇଥିଲେ - "ହଁଅ ମ - ପ୍ରାଇଭେଟ୍ ଚାକିରି ତ, କୋଉ ସରକାରୀ ଚାକିରି ହୋଇଛି ଯେ ଧୋଇ ମରୁଡ଼ି ନଥିବ। ଚାକିରି ସରିଲେ ବି ପେନ୍‌ସନ୍, ଗ୍ରାଚୁଇଟି, ପ୍ରୋଭିଡେଣ୍ଟ ଫଣ୍ଡ୍ - କେତେ ସୁବିଧା।" ଯିଏ ଯାହା କହିଲେ କୁହନ୍ତୁ - ଯିଏ ଯାହା ବୁଝିଲେ ବୁଝନ୍ତୁ - କୌସ୍ତୁଭ ସେଥିପ୍ରତି ଖାତିର୍ କରିନଥିଲା।

ନିଜର ସହଯାତ୍ରୀମାନଙ୍କ ଉପରେ ଆଖି ପକାଇଲା କୌସ୍ତୁଭ। ଟୁ ଟାୟାର୍ ଏସିରେ ସେ ଅଛି। ସାମ୍ନା ବର୍ଥରେ ଜଣେ ମୋଟାସୋଟା ବୟସ୍କ ଲୋକ ବସିଛନ୍ତି। ନା - ବସିଛନ୍ତି କହିଲେ ଯଥେଷ୍ଟ ହେବ ନାହିଁ। ଗୋ-ଗ୍ରାସରେ ଖାଇ ଚାଲିଛନ୍ତି ସେ, ଯେମିତି ଛ'ମାସ ହେଲା ସେ ଭୋକିଲା ଥିଲେ। ଖାଦ୍ୟ ସାମଗ୍ରୀର ସମ୍ଭାର ମଧ୍ୟ ବେଶ୍ ଦର୍ଶନୀୟ। ଚିକେନ୍ ପକୋଡ଼ା, ବିରିଆନୀ, ରାଇତା, ମଟନ୍ ଚପ୍ ଏବଂ ଆହୁରି କ'ଣ ସବୁ ରହିଛି। ତାଙ୍କର ଖାଇବାର ଢଙ୍ଗଟି ଅତ୍ୟନ୍ତ ବନ୍ୟ। ଅସ୍ୱସ୍ତି ଲାଗୁଛି ଦେଖିବାକୁ। ସତେ ଯେମିତି ସଭ୍ୟ, ସମ୍ଭ୍ରାନ୍ତ ମଣିଷଟିଏ ନୁହେଁ - କ୍ଷୁଧାର୍ତ୍ତ ଶ୍ୱାନ କି

ଶୃଗାଳଟିଏ ବସିଛି ତା' ଆଗରେ। ଆଉ ଜଣେ ସହଯାତ୍ରୀ ସାମ୍ନା ଉପର ବର୍ଥରେ ଶୋଇ କାନରେ ଇଅର୍‌ଫୋନ୍ ଗେଞ୍ଜି ସଂଗୀତର ନିଶାରେ ମସଗୁଲ୍ ହୋଇ ରହିଛି। ବୟସରେ ତରୁଣ – ମଝିରେ ମଝିରେ କାହା ସହିତ ଉଚ୍ଛଳ ବାକ୍ୟାଳାପରେ ଆମୋଦିତ ହେଉଛି ସେ।

କୌସ୍ତୁଭର ଉପର ବର୍ଥଟି ଏଯାଏଁ ଖାଲି ଅଛି। ଯିଏ ଆସୁଛନ୍ତି ଆସନ୍ତୁ। ଏବେ ସେ ନିଜର ବିଛଣା ସଜାଡ଼ି କମ୍ବଳ ଘୋଡ଼େଇ ଶୋଇଯିବ। ଖାଇବା କାମଟି ସିଏ ବାଟରେ ବଢ଼େଇ ଦେଇ ଆସିଛି। ଭୋର୍ ହେବା ବେଳକୁ ସେ ଭୁବନେଶ୍ୱରରେ ପହଞ୍ଚିଯିବ। ଘରେ ସମସ୍ତେ ତା'ର ବାଟ ଚାହିଁ ବସିଥିବେ। ବିଶେଷକରି ବୋଉକୁ ରାତିରେ ନିଦ ହୋଇନଥିବ, ତା' କଥା ଭାବି ଭାବି। ଶ୍ରୀପର୍ଣ୍ଣା ବି ଖୁବ୍ ଚିନ୍ତାରେ ଥିବ ତା' ପାଇଁ। ବଡ଼ଭାଇ, ଭାଉଜ, ବଡ଼ନାନୀ, ଭାଇନା ଆଉ ତା'ର ଝିଆରୀ, ପୁତୁରାମାନେ କେତେ ନା କେତେ ଅଭିଯୋଗ କରିବେ ସେ ଠିକ୍ ସମୟରେ ପହଞ୍ଚି ପାରିଲାନି ବୋଲି। ଆଉ 'ଅନୁଲିପ୍‌ସା' – ତା'ର ଗେହ୍ଲା ଭଉଣୀ 'ଲିପୁନି' କେତେ ନା କେତେ କାନ୍ଦି ସାରିବଣି ତା'ର ସାନଭାଇ ଏଯାଏଁ ନ ଆସିବାର ଦେଖି। ଅଭିମାନରେ ହୁଏତ କଥା କହିବନି ସେ ତା'ର ସାନଭାଇ ସହିତ। ସମସ୍ତଙ୍କର ସବୁ ଅଭିଯୋଗ ସେ ମୁଣ୍ଡପାତି ସହିଯିବ। ସବୁ ଅଭିମାନକୁ ପାଣି କରି ଦେବାର କୌଶଳ ବି ଜଣା ତାକୁ। ସେ ଆଗ ଘରେ ପହଞ୍ଚିଯାଉ ତ ? ଆଖି ବନ୍ଦ୍ କରି ଶୋଇବାକୁ ଚେଷ୍ଟା କଲା କୌସ୍ତୁଭ।

"ଏକ୍‌ସ୍‌କ୍ୟୁଜ୍ ମି।"

ଟ୍ରେନ୍ ଚାଲିବାକୁ ଆରମ୍ଭ କରିବା ମୁହୂର୍ତ୍ତରେ ଏକ ପରିଚିତ ତଥା ଅବାଞ୍ଛିତ ସ୍ୱର ତାକୁ ବାଧ୍ୟ କଲା ଚାହିଁବାକୁ ଆଗନ୍ତୁକଙ୍କ ଆଡ଼କୁ। କୌସ୍ତୁଭକୁ ପଛ କରି ସେ ଠିଆ ହୋଇଥିଲେ। ସାମ୍ନା ବର୍ଥରେ ବସି ଖାଉଥିବା ଭଦ୍ରଲୋକଙ୍କୁ ସେ ନିଜର ଟିକଟ୍ ଦେଖାଇ ଇଂରାଜୀରେ କହୁଥିଲେ, "ଏ ସିଟ୍‌ଟି ମୋର।"

"ମୁଁ ଜାଣିଛି – ଜାଣିଛି। ମୋର ଖାଇବା ସରିଗଲାଣି। ସାମ୍ନାର ଉପର ବର୍ଥକୁ ମୁଁ ଏଇନା ଚାଲିଯିବି। ଆପଣଙ୍କର ଅସୁବିଧା କରିଥିବାରୁ ମୁଁ ବହୁତ ଦୁଃଖିତ।" ସାମ୍ନା ବର୍ଥରେ ବସିଥିବା ଭଦ୍ରଲୋକ ଯଥା ଶୀଘ୍ର ନିଜର ଜିନିଷପତ୍ର ଗୋଟାଇ ଥଇଥାନ କରି କୌସ୍ତୁଭର ଉପର ବର୍ଥକୁ ଯିବାକୁ ପ୍ରସ୍ତୁତ ହେଲେ। ତାଙ୍କର ଆକାର ପ୍ରକାରରୁ ଜଣା ପଡୁଥିଲା ସେ ହୁଏତ ନିଜର ଭାରି ଭରକମ୍ ଶରୀରଟିକୁ ନେଇ ଉପର ବର୍ଥକୁ ଉଠି ପାରିବେ ନାହିଁ। କିନ୍ତୁ ଅନାୟାସରେ ସେ ଉଠିଗଲେ ଏବଂ ଖୁବ୍ କମ୍ ସମୟ ମଧ୍ୟରେ ତାଙ୍କର ଘୁଙ୍ଗୁଡ଼ିର ଶବ୍ଦ ଶୁଣାଗଲା।

ଆଗନ୍ତୁକ ଏବେ କୌସ୍ତୁଭର ସାମ୍ନା ସିଟ୍‌ରେ ବସିପଡ଼ିଲେ। ହେ ଭଗବାନ୍ –

ଏଇ ଲୋକଟାର ପାଖାପାଖି ରହି ଏତେଗୁଡ଼ାଏ ସମୟ କଟାଇବାକୁ ପଡ଼ିବ ତାକୁ! ଖୁବ୍ ବିରକ୍ତିକର ଆଉ ଦୀର୍ଘ ହୋଇଯିବ ତା'ର ଏଇ କେତେ ଘଣ୍ଟାର ଯାତ୍ରା। ମୁଣ୍ଡ ଉପରକୁ ଚାଦରଟି ଟାଣି ଆଣି ପିଠି ବୁଲେଇ ଶୋଇଗଲା କୌସ୍ତୁଭ। ଶୋଇଲେ ବି କୋଉ ନିଦ ହେଉଛି। ଉପର ବର୍ଥରୁ ବିରକ୍ତିକର ଘୁଙ୍ଗୁଡ଼ିର ନିରବଚ୍ଛିନ୍ନ ଆଘାତ। ସେ ପାଖରୁ ତରୁଣ ପ୍ରେମିକଟିର ପ୍ରେମାସ୍ପଦା ସହିତ ସେଲ୍‌ଫୋନ୍‌ରେ ଅନର୍ଗଳ ବାର୍ତ୍ତାଳାପ, ସର୍ବୋପରି ତା' ଜୀବନରେ ସବୁଠାରୁ ଅଧିକ ଘୃଣା କରି ଆସିଛି ଯୋଉ ଲୋକକୁ - ସେଇ ଲୋକର ଖୁବ୍ ନିକଟରେ ଉପସ୍ଥିତି। ଇଚ୍ଛା ହେଉଥିଲା - ଟିଟି ଆସିଲେ ତା'ର ସିଟ୍‌ଟିକୁ ବଦଳାଇ ଦେବାକୁ କହିବ। ସେ ସମ୍ଭାବନା କିନ୍ତୁ ବହୁତ କମ୍। ସାଇଡ୍ ତଳ ବର୍ଥରେ ମଧ୍ୟ ବୟସ୍କ ସ୍ୱାମୀ ସ୍ତ୍ରୀ ଦୁହେଁ ବସି ରହିଛନ୍ତି। ସେମାନଙ୍କର ଉପର ବର୍ଥକୁ ଆଉ ଜଣେ ଦଖଲ କରି ନିଘୋଡ଼ ନିଦରେ ଶୋଇଯାଇଛି। ହୁଏତ ସାରାରାତି ସେହି ଦମ୍ପତିକୁ ସେମିତି ବସି ରହିବାକୁ ହେବ। କୌସ୍ତୁଭର ଭାଗ୍ୟ ଭଲ, ତତ୍‌କାଳରେ ଟିକେଟ କରି ମଧ୍ୟ ତାକୁ ରିଜର୍ଭେସନ୍ ମିଳିଯାଇଛି। ଏବେ ରାତି ହୋଇଥିବାରୁ ଆହୁରି ଭଲ ହୋଇଛି। ଘୋଡ଼ିଘାଡ଼ି ହୋଇ ଶୋଇଗଲେ ଏଇ ଅବାଞ୍ଛିତ ଲୋକଟାର ମୁହଁ ଦେଖିବାକୁ ପଡ଼ିବ ନାହିଁ ତାକୁ। ଦିନବେଳା ହୋଇଥିଲେ ବାଧ୍ୟ ହୋଇ ବସିବାକୁ ପଡ଼ିଥାଆନ୍ତା ସାମ୍ନାସାମ୍ନି। ଆରେ ବାପ୍‌ରେ - ସେ କଥା ଭାବିଲେ ବି ଛାତି ଭିତର ରୁନ୍ଧି ହୋଇଯାଉଛି ପ୍ରବଳ ଅସ୍ୱସ୍ତିରେ।

ଜି.ଭି.ଏସ୍. ମୂର୍ତ୍ତି - ଲୋକଟାର ନାଁ। ସେଇ ନାଁ ଭୁଲିବା ସମ୍ଭବ ନୁହେଁ। କୌସ୍ତୁଭ ଜୀବନରେ ସେଇ କେତୋଟି ମାସ ଅବିସ୍ମରଣୀୟ ହୋଇ ରହିଯିବ ଏଇ ଲୋକଟି ଯୋଗୁଁ। ପ୍ରବଳ ପ୍ରତିଯୋଗିତା ସତ୍ତ୍ୱେ ନିଜ ଯୋଗ୍ୟତାରେ ଗୋଟେ ନ୍ୟାସନାଲାଇଜ୍‌ଡ ବ୍ୟାଙ୍କରେ ଆସିଷ୍ଟାଣ୍ଟ ମ୍ୟାନେଜର ଭାବରେ ନିଯୁକ୍ତି ମିଳିଥିଲା କୌସ୍ତୁଭକୁ। ଘରେ ସମସ୍ତେ ଖୁସି ହୋଇଥିଲେ। ନିଜେ କୌସ୍ତୁଭର ମଧ୍ୟ ଖୁସିର ସୀମା ନଥିଲା। ଏଥର ଶ୍ରୀପର୍ଣ୍ଣା ବିଷୟରେ ସେ ଜଣାଇଦେବ ବାପା ବୋଉଙ୍କୁ। ଶ୍ରୀପର୍ଣ୍ଣାର ଘରେ ତା'ର ବାହାଘର ନେଇ ବ୍ୟସ୍ତ ହେଲେଣି। ଭଲ ଭଲ ପ୍ରସ୍ତାବ ସବୁ ବିଭିନ୍ନ ବାହାନା କରି ନାକଚ କରିଦେଉଛି ସେ। ଆଉ ବେଶିଦିନ ସେଭଳି କରିବା ସମ୍ଭବ ହେବ ନାହିଁ। ରିଟାୟାରମେଣ୍ଟ ପୂର୍ବରୁ ବାପା ସାନଝିଅର ବାହାଘର କାମ ବଢ଼େଇ ଦେବାକୁ ଚାହୁଁଛନ୍ତି। କୌସ୍ତୁଭ ଘର ପକ୍ଷରୁ ଯଦି ପ୍ରସ୍ତାବ ଯାଏ - ଶ୍ରୀପର୍ଣ୍ଣାର ବାପା ବୋଉ ମନା କରିପାରିବେ ନାହିଁ। ଭବିଷ୍ୟତର ସୁନେଲି ପରିକଳ୍ପନାରେ ବିଭୋର ହୋଇ ସେ ଭୁବନେଶ୍ୱର ଛାଡ଼ିଥିଲା।

କୌସ୍ତୁଭର ପ୍ରଥମ ଚାକିରିର ପୋଷ୍ଟିଂ ହାଇଦ୍ରାବାଦରେ। ଘରଠାରୁ କେବେ

ବି ଦୂରରେ ରହି ନଥିଲା ସେ। ସ୍କୁଲ, କଲେଜ, ୟୁନିଭରସିଟିର ପାଠପଢ଼ା ସେ ଘରେ ରହି ଶେଷ କରିଛି। ବେଳେବେଳେ ଅବଶୋଷ ପ୍ରକଟ କରି ସେ କହେ, ହଷ୍ଟେଲ୍‌ରେ ରହି ସାଙ୍ଗମାନେ କେତେ ମଜ୍ଜା କରୁଛନ୍ତି – ମୋ ଭାଗ୍ୟରେ କେବେ ବି ହଷ୍ଟେଲ୍‌ରେ ରହିବାର ସୁଯୋଗ ଜୁଟିଲାନି।" କୌସ୍ତୁଭର ବଡ଼ଭାଇ କୌଶିକ ଖଡ଼ଗପୁର ଆଇଆଇଟିରେ ପଢୁଥିଲା। ସେ ହଷ୍ଟେଲ୍‌ରେ ରହୁଥଲା ଏବଂ ଛୁଟି ହେଲେ ଯାଇ ଘରକୁ ଆସୁଥିଲା। ତା'ର ଆସିବାକୁ ସମସ୍ତେ ଯେମିତି ଉତ୍କଣ୍ଠିତ ହୋଇ ଚାହିଁ ରହୁଥିଲେ। ତା'ର ହଷ୍ଟେଲ୍‌କୁ ଫେରିବା ଦିନ ମଧ ସମସ୍ତଙ୍କ ଆଖି ଅଶ୍ରୁସଜଳ ହୋଇ ଉଠୁଥିଲା। ସେତେବେଳେ କୌସ୍ତୁଭ ଭାବୁଥିଲା, ତା'ଠୁ ସମସ୍ତେ କୌଶିକକୁ ବେଶି ଭଲ ପାଆନ୍ତି; ବାପା, ବୋଉ ବନ୍ଧୁବାନ୍ଧବ ସମସ୍ତେ। ସିଏ ବି ଯଦି ହଷ୍ଟେଲ୍‌ରେ ରହି ପଢୁଥାଆନ୍ତା, ତା' ପାଇଁ କ'ଣ ଏମିତି ବ୍ୟାକୁଳ ହୁଅନ୍ତେ ସମସ୍ତେ। ଖଣ୍ଡେ ଚିଠି ପାଇଁ, ଫୋନ୍‌ରେ ତା'ର ସ୍ୱର ଶୁଣିବାକୁ ଜଗି ରହୁଥାଆନ୍ତେ। ଛାତ୍ର ଜୀବନ ସରିଗଲା ସିନା – ହଷ୍ଟେଲ ଜୀବନର ମଜ୍ଜା ସେ ଆଉ ପାଇ ପାରିଲା ନାହିଁ କିମ୍ୱା ତା' ପାଇଁ ତା' ପରିବାରର ଲୋକମାନଙ୍କର ବ୍ୟାକୁଳତାକୁ ସେ ତଉଲି ଦେଖିବାର ସୁଯୋଗ ପାଇଲାନି। ଏକାଥରେ ଚାକିରି ପାଇବା ପରେ ହିଁ ଘରଠାରୁ ଦୂରରେ ରହିବାର ଉପଲବ୍ଧ ତା'ର ହେଲା।

ହାଇଦ୍ରାବାଦକୁ ଆସି ତାକୁ ମନ୍ଦ ଲାଗି ନଥିଲା। ପ୍ରଥମେ ପୂର୍ବ ପରିଚିତ କେତେ ଜଣ ବନ୍ଧୁଙ୍କ ସହିତ ମେସ୍‌ରେ ରହିଲା। କିଛିଦିନ ପରେ ଭଡ଼ାଘରଟିଏ ଯୋଗାଡ଼ କରି ସେଇଠିକୁ ଚାଲିଗଲା। ଘରଠାରୁ ଦୂରରେ ରହିବାର କଷ୍ଟ ସେତିକିବେଳେ ଖୁବ୍ ବାଧୁଥିଲା ତାକୁ। ଘର ପାଇଁ କିଛି ଆସବାବପତ୍ର ଲୋଡ଼ା। ତା'ର ବିଶେଷ ଧାରଣା ନଥିଲା ସେ ବିଷୟରେ। ଘର ସହିତ ଡବଲ୍ ବେଡ୍, ସୋଫା, ଡାଇନିଂ ଟେବୁଲ୍, ଚେୟାର୍ ଇତ୍ୟାଦି ମିଳିଥିଲା। ସେଗୁଡ଼ିକ ଅତ୍ୟନ୍ତ ଧୂଳି ଧୂସରିତ ଅବସ୍ଥାରେ ଥିଲା। ତିନିଟା ବଡ଼ ବଡ଼ ରୁମ୍, ରୋଷେଇଘର, ହଲ୍ – ଏସବୁ କେମିତି ସଫା ସୁତୁରା ଦିଶିବ ସେ ବୁଝିପାରୁନଥିଲା। ଗୋଟିଏ ରୁମ୍‌କୁ ଟିକେ ଝଡ଼ାଝଡ଼ି କରି ଖଟରେ ବିଛଣା ଚଦର ଓ ତକିଆଟିଏ ପକେଇ ସେ ଶୋଇ ଯାଉଥିଲା। ସକାଳ ହେଲେ ବାଥ୍‌ରୁମ୍‌ରେ ନିତ୍ୟକର୍ମ ସାରି ବାଲ୍‌ଟିରେ ପାଣି ରଖି ସେ ପୋଷାକ ପିନ୍ଧି ଘରେ ତାଲା ପକେଇ ବାହାରି ଯାଉଥିଲା। କୋଉଠି ଟିକେ ଜଳଖିଆ ଖାଇ ଦେଇ ସେ ବ୍ୟାଙ୍କ୍‌କୁ ଚାଲି ଯାଉଥିଲା। ଘରଠାରୁ ଅଳ୍ପ ଦୂର ଥିଲା ତା'ର କର୍ମକ୍ଷେତ୍ର। ସେଇଠି କ୍ୟାଣ୍ଟିନ୍‌ରେ ଲଞ୍ଚ୍ କରୁଥିଲା। ଫେରିଲା ବେଳକୁ ରାତ୍ରି ଭୋଜନ ପ୍ୟାକ୍ କରି ନେଇ ଆସୁଥିଲା ସାଙ୍ଗରେ।

ଖୁବ୍ ଶୀଘ୍ର ଏକୁଟିଆ ଜୀବନରେ ଅତିଷ୍ଠ ହୋଇ ପଡ଼ିଥିଲା କୌସ୍ତୁଭ। ବିଶେଷକରି ଘରକୁ ଫେରିବାକୁ ଆଦୌ ଇଚ୍ଛା ହେଉନଥିଲା ତା'ର। ଘରଟା ଆଦୌ

ଘର ଭଳି ଲାଗୁ ନଥିଲା ତାକୁ । ରାତି ଅଧରେ କେବେ କେବେ ନିଦ ଭାଙ୍ଗିଗଲେ ଖୁବ୍ ଭୟ ଲାଗୁଥିଲା । ଘର ଭିତରେ କେମିତି ଏକ ଅସ୍ୱାଭାବିକ ଶବ୍ଦ ଶୁଭୁଥିଲା - ଯେମିତି କେହି ଜଣେ ଏ ଘରୁ ସେ ଘର ଚଲାବୁଲା କରୁଛି, ଜୋର୍‌ରେ ନିଃଶ୍ୱାସ ନେଉଛି । ସେ ନିଜେ କେବେ ବି ଭୂତପ୍ରେତରେ ବିଶ୍ୱାସ କରେ ନାହିଁ । କିନ୍ତୁ ସେ ଘରେ ଯେ କିଛି ଅସ୍ୱାଭାବିକତା ରହିଛି - ଏକଥା, ଭାବିବା ପାଇଁ ସେ ବାଧ୍ୟହେଉଥିଲା । ଏତେ କମ୍ ଟଙ୍କାରେ ଏତେ ବଡ଼ ଫ୍ଲାଟ୍‌ଟିକୁ ଘର ମାଲିକ ଦେବା ପଛରେ ଆଉ କିଛି କାରଣ ନାହିଁ ତ ? ସେଇ ଫ୍ଲାଟ୍‌ରେ ପୂର୍ବରୁ କେହି ଆତ୍ମହତ୍ୟା କରିଛି କିମ୍ବା କାହାର ମର୍ଡର ହୋଇନି ତ ! ଏକଥା କାହାକୁ ପଚାରି ପାରେନା । ତାକୁ କେହି ଦୁର୍ବଳମନା ବୋଲି ଭାବୁ - ଏକଥା ତାକୁ ଭଲ ଲାଗିବନି । ସେ ଦିନ ଲିଫ୍‌ଟରେ ଗଲାବେଳେ ୱାଚ୍‌ମ୍ୟାନ୍ ପଚାରିଲା - "ସାବ୍, ଏକ ବାତ୍ ପୁଛନା ଥା ।" "ହାଁ, ପୁଛୋ ।"

"ଆପ୍‌କୋ କାମ୍‌ବାଲୀ ଚାହିୟେ ?"

"ନେହିଁ ।" ତରତର ହୋଇ ତା' ପାଖରୁ ଚାଲି ଆସିଥିଲା କୌସ୍ତୁଭ । ଘରକାମ ପାଇଁ ଲୋକ ରଖିବାକୁ ସେ ଚାହୁଁ ନଥିଲା । ରାତି ପାହିଲା ବେଳକୁ ଜଣେ ଅନାତ୍ମୀୟ ସ୍ତ୍ରୀ ଲୋକ ତା'ଘରେ ଚଳପ୍ରଚଳ ହେବ - ସେ କଥା ତା' ପାଇଁ ଖୁବ୍ ଅସ୍ୱସ୍ତିକର ମନେହେବ । ତା' ଘରେ ପୁଣି କୋଉ କାମ ଅଛି ଯେ ! ରୋଷେଇ ବାସ ଧନ୍ଦା ତ ନାହିଁ । ତେଣୁ ହାଣ୍ଡି, କଡ଼େଇ, ବାସନକୁସନ ମଜାଧୁଆ କରିବାର ନାହିଁ । ଲୁଗାପଟା ସଫା କରିବା ପାଇଁ ଲଣ୍ଡ୍ରିର ଲୋକ ଆସି ନେଇଯାଏ ଓ ସଫା କରି, ଇସ୍ତ୍ରୀ କରି ଦେଇଯାଏ । ସେ ବ୍ୟବହାର କରୁଥିବା ରୁମ୍‌ଟିକୁ ସେ କେବେକେବେ ନିଜେ ଝାଡୁ ମାରିଦିଏ - ଯେତେବେଳେ ତା'ର ମନେହୁଏ ରୁମ୍‌ଟା ଖୁବ୍ ଅପରିଷ୍କାର ହୋଇଗଲାଣି । ତେଣୁ ଅଯଥାରେ କାହିଁକି ସକାଳ ପ୍ରହରର ସୁନ୍ଦର ନିଦ ଟିକକରୁ ନିଜକୁ ବଞ୍ଚିତ କରିବ !

ଘରକୁ ଫୋନ୍ କଲାବେଳେ ଦିନେ ମଜାରେ ମଜାରେ ବୋଉକୁ କହି ଦେଇଥିଲା ଯେ ତା' ଘରେ ଗୋଟେ ଭୂତୁଣୀ ରହୁଛି । ରାତିରେ ସେ ଧଡ଼୍‌ଧାଡ଼୍ କରି କବାଟ ପିଟୁଛି । ଏ ଘରୁ ସେ ଘର ବୁଲୁଛି । ବୋଉ ତା' କଥା ଶୁଣି ଏତେ ଡରି ଯାଇଥିଲା ଯେ ଦି' ଦିନ ପରେ ବାପାଙ୍କୁ ନେଇ ହାଇଦ୍ରାବାଦ୍‌ରେ ହାଜର । ବାପାବୋଉଙ୍କୁ ଆଣିବାକୁ କୌସ୍ତୁଭ ଭୋର୍‌ରୁ ଷ୍ଟେସନ୍ ଯାଇଥିଲା । ତାକୁ ଦେଖୁ ଦେଖୁ ସବୁ ମାଆମାନେ ଯେମିତି କହନ୍ତି ବୋଉ ମଧ୍ୟ ସେଇ କଥାଟି କହିଲା - "ଖାଇବା ପିଇବା କିଛି ଠିକ୍‌ରେ କରୁନୁ ନିଶ୍ଚେ - ଦିନ କେଇଟାରେ କି ଅବସ୍ଥା ହେଲାଣି ତୋର !" ଘରର ତାଲା ଖୋଲି ଭିତରେ ପଶିବା ମାତ୍ରେ ବୋଉ ପାଟି କରି ଉଠିଲା, "ହଇରେ ମୁନା, ତୁ ଏଇଠି

ରହୁଛୁ - ଏମିତି ?" ବୋଉର ଆଖି ଲୁହ ଛଳଛଳ ଦିଶୁଥିଲା ।

"ମୋ ଘର ତୋ ମନକୁ ଯାଉନି ?" କୌସ୍ତୁଭ ସଲ୍ଲଜ ହସ ହସି ପଚାରିଥିଲା ।

"ଯା'କୁ କ'ଣ ଘର କହନ୍ତି ? ଏମିତି ଭୂତକୋଠିରେ ଭୂତ, ପ୍ରେତ ସମସ୍ତେ ସାଙ୍ଗସୁଖ ହୋଇ ରହିବେନି ଆଉ କ'ଣ ? ଘରେ ଝାଡୁ ରଖିଛୁ ?" ବୋଉ କହିଥିଲା ବ୍ୟସ୍ତ ବିବ୍ରତ ହୋଇ ।

"ହଁ - ଅଛି । ତୁ ବ୍ୟସ୍ତ ହେ'ନା । ମୋର ଅଭ୍ୟାସ ହୋଇଗଲାଣି ଏମିତି ରହିବାରେ । ହଉ - ମୋର ଟାଇମ୍ ହୋଇଗଲାଣି । ମୁଁ ଏବେ ବାହାରିବି । ସନ୍ଧ୍ୟା ବେଳକୁ ଦେଖା । ମୁଁ ଗୋଟେ ନମ୍ବର ଦେଉଛି । ସେଇଠିକୁ ଫୋନ୍ କରି ଅର୍ଡର ଦେଇଦେଲେ ସେ ଖାଇବା ପହଞ୍ଚାଇ ଦେବ । ମୁଁ ଆସୁଛି ।" କୌସ୍ତୁଭ କହିଥିଲା । ବୋଉ ଆଣିଥିବା ପିଠା, ମିଠା ଇତ୍ୟାଦି ଖାଇ ସେ ତା'ର ବ୍ୟାଙ୍କକୁ ଚାଲିଗଲା ।

ସନ୍ଧ୍ୟାବେଳେ ଘରକୁ ଫେରି ସେ ଆଶ୍ଚର୍ଯ୍ୟ ହୋଇଗଲା । ତା' ଫ୍ଲାଟ୍‌ଟିର ରଙ୍ଗରୂପ ପୂରାପୂରି ବଦଳି ଯାଇଥିଲା । ସବୁଗୁଡ଼ିକ ରୁମ୍ ଧୁଆପୋଛା ହୋଇ ପରିଷ୍କାର ପରିଚ୍ଛନ୍ନ ଦିଶୁଥିଲା । ହଲ୍‌ରେ ଡାଇନିଂ ଟେବୁଲ୍ ଚେୟାର ଗୋଟେ ପଟେ, ଆଉ ଗୋଟେ ପଟରେ ସୋଫାସେଟ୍ ସଜଡ଼ା ହୋଇ ରଖା ଯାଇଥିଲା । କୌସ୍ତୁଭର ରୁମ୍‌ଟି ମଧ୍ୟ ତନ୍‌ଛନ୍ ଦିଶୁଥିଲା । ନୂଆ ବିଛଣା ଚଦର ଓ ତକିଆ ଖୋଳ ପଡ଼ିଥିଲା । ଆଉ ଗୋଟିଏ ରୁମ୍‌ରେ ଥିବା ଡବଲ୍ ବେଡ୍‌ରେ ବିଛଣା ଚଦର ପଡ଼ି ଶୋଇବା ଯୋଗ୍ୟ କରାଯାଇଥିଲା । କାନ୍ଥ ଆଲମିରାଗୁଡ଼ିକ ଝଡ଼ାଝଡ଼ି କରାଯାଇ ଲୁଗାପଟା, ସୁଟକେଶ୍, ବ୍ୟାଗ୍ ଇତ୍ୟାଦି ସଜଡ଼ା ହୋଇ ରଖା ଯାଇଥିଲା । ତା'ର ବସାଘରଟି ଏତେ ଭଲ ଦିଶିପାରେ ସେ ଧାରଣା ନଥିଲା କୌସ୍ତୁଭର । ସେଇକଥା କହିବାରୁ ବୋଉ କହିଥିଲା, "ଇଏ ତ କିଛି ହେଇନି - ଖାଲି ଓଳାପୋଛା କରି ଜିନିଷପତ୍ର ସବୁ ଯେଝା ସ୍ଥାନରେ ରଖାହୋଇଛି । ଆହୁରି କେତେ କଥା କରିବାର ଅଛି । ତୁମେ ଯୋଉଠି ବି ରହିବ - ସେଇ ପରିବେଶକୁ ଯତ୍ନ କରିବାକୁ ପଡ଼ିବ । ଆପଣାର କରିବାକୁ ପଡ଼ିବ । ତା'ହେଲେ ଯାଇ ସେଇ ପରିବେଶ ତୁମକୁ ଶାନ୍ତି ଦେବ, ନିଶ୍ଚିନ୍ତତା ଦେବ । ଏ ଘରେ ତୁ ଏତେ ଦିନ ହେଲା କେମିତି ରହିଥିଲୁ ମୁଁ ଭାବି ପାରୁନି । ହଇରେ ତୁ ଗୋଟେ ବ୍ୟାଙ୍କ ଅଫିସର । ଏମିତି ବାୟା ବାସୁରାଙ୍କ ପରି ଅଳିଆଗଦା ଭିତରେ ରହିବାକୁ ତୋତେ କେମିତି ଲାଜ ମାଡୁନି ! କବାଟ ଝର୍କାରେ ପର୍ଦ୍ଦା ନାହିଁ - ଦୁଆର ମୁହଁରେ ପା'ପୋଛ ନାହିଁ । ଏଡ଼େ ସୁନ୍ଦର ରୋଷେଇ ଘର ରହିଛି । ସେଠି ହିଟର କି ଷ୍ଟୋଭ୍‌ଟେ ରଖିଲେ ଚା' ଟିକେ, ଜଳଖିଆ ଟିକେ ତ କରି କି ଖାଇପାରନ୍ତୁ ! କେତେଦିନ ଆଉ ବାହାର ଖାଇବା ଖାଉଥିବୁ ? ନାଇଁ ନାଇଁ - ଏଠୁ ଫେରିବା ପରେ ଆଗେ ତୋର ବାହାଘର

ବ୍ୟବସ୍ଥା କରିବୁ ଆମେ। ଯେତେ ଶୀଘ୍ର ସମ୍ଭବ ତୋତେ ବାହା କରି ବୋହୂକୁ ପଠେଇଦେବୁ ତୋ ସାଙ୍ଗରେ। ଏମିତି ଲକ୍ଷ୍ମୀଛଡ଼ା ପରି ମୋ ପିଲା ରହିଥିବ - ଏକଥା ଦେଖିଲା ପରେ ମୋ ପାଟିକୁ ଅନ୍ନ ଯିବ ନା ପାଣି ! ଆରେ - ଘରଟେ ନେଇଛୁ ଯେ ପିଇବା ପାଣି ଟିକେ ରଖିବାର ବ୍ୟବସ୍ଥା ନାହିଁ। ପାଣି ବୋତଲ କିଣା ହୋଇ ଆସିଲେ ପିଆ ହେବ ? ତୋର ସାଙ୍ଗସାଥୀ ଏ ଘରକୁ ଦେଖି କ'ଣ ଭାବୁଥିବେ ସତେ ?"

"ଏଠିକୁ କେହି ଆସନ୍ତି ନାହିଁ। ତୁ ଅକାରଣରେ ବ୍ୟସ୍ତ ହେଉଛୁ। ମୋର ବି ଏମିତି ଚଳିବାରେ ଅଭ୍ୟାସ ହୋଇଗଲାଣି - କିଛି ଅସୁବିଧା ହେଉନି। ଦି' ଚାରିଦିନ ପାଇଁ ଆସି ଧୂଳି ମଇଳା, ଅଳନ୍ଧୁ ସଫା କରି ତୁ ଆଉ ଦେହ ଖରାପ କରନା। ଆଉ ବାହାଘର କଥା କହୁଛୁ ଯେ ତୁ ଏବେ ମୋ ବାହାଘର କଥା କାହିଁକି ଭାବୁଛୁ ? ଆଗ ଭାଇ ବାହାଘର କରିସାର - ତା'ପରେ ମୋ କଥା ଚିନ୍ତା କରିବୁ।" କୌସ୍ତୁଭ କହିଥିଲା।

"ତା' କଥା ଆଉ କହନା ତୁ। କେଜାଣି ତା' ପାଇଁ ଯୋଡ଼ିଟିଏ ଭଗବାନ୍ କୋଉଠି ସୃଷ୍ଟି କରିଛନ୍ତି କି ନାହିଁ - ତାଙ୍କୁ ହିଁ ଜଣା। ତା'ର ପାଠ ସରିବନି କି ସେ ବାହା ହେବ ନାହିଁ। ତୋର ତ ପାଠ ସରିଲା। ଚାକିରି ବାକିରି କଲୁ। ଏବେ ଘର ସଂସାର କରି ଭଲରେ ରହ।" ବୋଉ କହିଥିଲା।

ଉପର ମନରେ ବାହାଘର କଥାକୁ ମନା କରୁଥିଲେ ବି ବୋଉ କଥାକୁ ମନେ ମନେ ପୂର୍ଣ୍ଣପ୍ରାଣରେ ସମର୍ଥନ କରୁଥିଲା କୌସ୍ତୁଭ। ବାପା ମାଆ, ଗୁରୁ ଗୁରୁଜନଙ୍କର ଶୁଭ ଆଶୀର୍ବାଦ ସହିତ ଶ୍ରୀପର୍ଣ୍ଣା ତା' ଜୀବନ ପରିସରକୁ ଖୁବ୍ ଶୀଘ୍ର ପ୍ରବେଶ କରିବ। ଏ ଘରେ ତା'ର ଲକ୍ଷ୍ମପାଦ ପଡ଼ିଲେ ସବୁକିଛି ଆହୁରି ସୁନ୍ଦର ହୋଇଯିବ। ଦୁହେଁ ମିଶି ମନ ଭରି ସେମାନଙ୍କର ଘର ସଜାଇବେ। ଭବିଷ୍ୟତର ମଧୁର ପରିକଳ୍ପନା ତାକୁ ଉଲ୍ଲସିତ କଲା।

"ତୁମେ ଦୁହେଁ ଘରେ ବସି ଆଉ ବୋର୍ ହେବନି ସାରାଦିନ। ଆସନ୍ତା କାଲି ଆଉ ପଅରଦିନ ପାଇଁ ମୁଁ ସିଟି ଟୁର୍ ଆଣ୍ଡ୍ ଟ୍ରାଭେଲ୍ସରୁ ଟିକଟ୍ କରି ଆଣିଛି। କାଲି ସକାଳେ ମୁଁ ତୁମକୁ ସିଟି ଟୁର୍ ବସ୍ ପାଖରେ ଛାଡ଼ିଦେବି। ହାଇଦ୍ରାବାଦର ସବୁ ଦର୍ଶନୀୟ ସ୍ଥାନ ତୁମେ ବୁଲି ଦେଖିବ। ପଅରଦିନ ରାମୋଜି ଫିଲ୍ମ ସିଟି ବୁଲି ଆସିବ।" କୌସ୍ତୁଭ କହିଥିଲା ବାପାବୋଉଙ୍କୁ।

"ତୁ ଯିବୁନି କି ଆମ ସାଙ୍ଗରେ ?"

"ନା - ଯିବା ସମ୍ଭବ ହେବ ନାହିଁ।"

"ଆମ ପାଇଁ ଦିନେ ଦି' ଦିନ ଛୁଟି ନେଇ ପାରିବୁନି ?" ବୋଉ ଅଭିମାନ କରି କହିଥିଲା।

"ନାଇଁଲୋ ବୋଉ - ମୋର ବସ୍‌ଟି ବଡ଼ ଅଖାଡୁଆ ଲୋକ। ଖାଲି ଟାକିକି ବସିଛି - ମଉକା ମିଳିଲେ କାହାକୁ କେମିତି ହଇରାଣ କରିବ। ଚାକିରିରେ ଜଏନ୍ କରୁ କରୁ କିଛି ଝମେଲା କରିବାକୁ ମୁଁ ଚାହୁଁନି।" କୌସ୍ତୁଭ କହିଥିଲା।

ବୋଉ ମୁହଁ ଶୁଖେଇ କହିଥିଲା, "ଝମେଲା ଆଉ କ'ଣ ଯେ! କାହାର ଦେହ ପା, ଭଲମନ୍ଦ, ସୁବିଧା ଅସୁବିଧା, ବାପାମାଆ, ପରିବାର କିଛି ନାହିଁ? ଛୁଟି ଦେବେନି କେମିତି?"

"ଆଲୋ ବୋଉ - ତୁ ଆମ ବୁଢ଼ାକୁ ଜାଣିନୁ। ଛୁଟି ଦବ କ'ଣ - ସିଏ ଆମକୁ ଯୋଉ ଟାର୍ଗେଟ୍ ଦେଉଛି - ଆମକୁ ପରା ଛୁଟିଦିନରେ ବି ଯାଇ କାମ କରିବାକୁ ପଡୁଛି। ବୁଢ଼ା ନିଜକୁ କୋଉ ରାଜା ମହାରାଜା ଆଉ ଆମକୁ ତାର ଗୋତି ଶ୍ରମିକ ବୋଲି ଭାବୁଛି କି କ'ଣ - ସେମିତିକା ବ୍ୟବହାର ସେ କରୁଛି ଆମ ସହିତ। ଯେତେବେଳେ ଦେଖ କାହାକୁ ଗୋଟେ ଚିତ୍କାର କରି ଶୋଧି ଚାଲିଥିବ।"

"ଯେତେ ହେଲେ ତୋର 'ବସ୍' ସିଏ - ବୟସ୍କ ଲୋକ ହୋଇଥିବେ। ତାଙ୍କୁ ଏମିତି 'ତୁ', 'ତା' କରି କହିବା ଠିକ୍ ନୁହେଁ।" ବୋଉ କହିଥିଲା ତାକୁ ତାଗିଦ୍ କରି।

"ଅନ୍ୟଠୁ ସମ୍ମାନ ପାଇବାକୁ ହେଲେ ଅନ୍ୟକୁ ସମ୍ମାନ ଦେଇ ଶିଖିବା ଦରକାର ନା ନାହିଁ?"

"ହଁ ଯେ - ତୁ ତାଙ୍କୁ ଏମିତି ବୁଢ଼ାଫୁଢ଼ା ବୋଲି କହିଲେ ମୋତେ ଭଲ ଲାଗୁନି। ତୋ ବାପାଙ୍କୁ କିଏ ବୁଢ଼ା ବୋଲି ବେଖାତିର୍ କରି କହିଲେ ତୋତେ ଭଲ ଲାଗିବ?"

"ମୋ ବାପା ଆଉ ସିଏ? ବାପାଙ୍କୁ ତାଙ୍କର ସହକର୍ମୀମାନେ କେତେ ଶ୍ରଦ୍ଧା ଆଉ ସମ୍ମାନ କରନ୍ତି ମୁଁ କ'ଣ ଜାଣିନି? ଏ ଲୋକଟାକୁ କେହି ଜଣେ ବି ପସନ୍ଦ କରିବା କଥା ମୁଁ ଆସିବା ଦିନରୁ ଶୁଣିନି କି ଦେଖିନି। ଲୋକଟା ଏତେ ବଦ୍‌ରାଗୀ ଯେ ତା' ସ୍ତ୍ରୀ ପିଲା ବି...।"

କୌସ୍ତୁଭକୁ କହିବାକୁ ନ ଦେଇ ବାପା ଗମ୍ଭୀର କଣ୍ଠରେ କହିଲେ, "କାହାର ବ୍ୟକ୍ତିଗତ ଜୀବନ ବିଷୟରେ ଆମେ କାହିଁକି ଆଲୋଚନା କରିବା? ଆମେ ଯୋଉଠି ବି କାମ କରିବା - ସେଠିକାର ପରିବେଶ ସହିତ ନିଜକୁ ଖାପ ଖୁଆଇ ଚଳିବାକୁ ଚେଷ୍ଟା କରିବା। ପରିବେଶ ଯଦି ଆମର ମନ ମୁତାବକ ନ ହେଉଛି - ପରିବେଶରେ ଯଦି କିଛି ଅସଙ୍ଗତି ରହିଛି - ତା' ଭିତରେ ରହି ଆମେ ତାକୁ ବଦଳାଇବାକୁ ଚେଷ୍ଟା କରିବା।" "ଏ ଦି'ଟା ଯାକ କଥା ମୋ ପାଇଁ ପୂରା ଅସମ୍ଭବ। ଦିନେ ଦିନେ ଏମିତି

ବିରକ୍ତ ଲାଗୁଛି -ବୁଢ଼ା ଉପରକୁ ରେଜିଗ୍‌ନେସନ୍ ଲେଟର୍‌ଟେ ଲେଖି ଫୋପାଡ଼ି ଦେଇ ଚାଲି ଆସିବାକୁ ମନ ହେଉଛି ।" କୌସ୍ତୁଭ କହିଥିଲା ।

"ଯାହା କରିବୁ ଭାବିଚିନ୍ତି କରିବୁ - ବିବେକବନ୍ତ ହୋଇ କରିବୁ । ଭାବପ୍ରବଣ ହୋଇ କିଛି କରିବସିବୁନି । ତୁ ଏବେ ବଡ଼ ହେଲୁଣି, ଦାୟିତ୍ୱବାନ୍ ହୋଇ ଚିନ୍ତା କରି ଯାହା ତୋତେ ଠିକ୍ ଲାଗିବ - ତାହା ହିଁ କରିବୁ । ରାଗରୋଷରେ ଯେମିତି କିଛି ଭୁଲ୍ ନିଷ୍ପତ୍ତି ନ ନେଉ ।" ବାପା ତାକୁ ବୁଝାଇ କହିଥିଲେ ।

ବାପାବୋଉ ତାକୁ ବୁଝାଇଥିଲେ ସିନା, ସେମାନେ କ'ଣ ଜାଣିଥିଲେ ତାଙ୍କର ଆଦରର ଧନଟି ତା'ର କର୍ମକ୍ଷେତ୍ରରେ ଅଯଥାରେ କେତେ ଅପମାନ ସହିବାକୁ ବାଧ ହୋଇଥାଏ ? ଜି.ଭି.ଏସ୍. ମୂର୍ତ୍ତିର ପ୍ରକୃତି ଥିଲା ଅତ୍ୟନ୍ତ ରୁକ୍ଷ । ପୁଣି ଅତିରିକ୍ତ ଭାବରେ ସଂକୀର୍ଣ୍ଣମନା ମଣିଷଟିଏ ଥିଲା ସେ । ସିଏ ନିଜେ ଯାହା ବୁଝିଥିବ - ତାହା ହିଁ ଅକାଟ୍ୟ ସତ୍ୟ ବୋଲି ଅଡ଼ି ବସିଥିବ । ଆଉ କାହାରି ଉପରେ ତା'ର ଭରସା ନଥିଲା । ତା'ର ଦୃଢ଼ବିଶ୍ୱାସ ଥିଲା ତା'ର ସମସ୍ତ ଅଧସ୍ତନ କର୍ମଚାରୀ ସବୁବେଳେ କାମରେ ଠକନ୍ତି ଏବଂ ସବୁବେଳେ ତା' ବିରୁଦ୍ଧରେ ଆଲୋଚନା କରନ୍ତି । ନୂଆ କରି ନିଯୁକ୍ତି ପାଇଥିବା ତରୁଣ ଗୋଷ୍ଠୀର ଅଫିସର ଅଥବା ଅନ୍ୟାନ୍ୟ କର୍ମଚାରୀମାନଙ୍କୁ ସେ ଆଦୌ ସହ୍ୟ କରି ପାରୁନଥିଲା । ପୁଣି ସେମାନଙ୍କ ମଧ୍ୟରେ ଯେଉଁମାନେ ଟିକେ ସୁଦର୍ଶନ, ରୁଚିସମ୍ପନ୍ନ ତଥା ଖୁସ୍ ମିଜାଜ୍‌ର; ସେମାନେ ଥିଲେ ତା'ର ଦୁଇ ଆଖିର କଣ୍ଟା । କୌସ୍ତୁଭ ଓ ତା'ର ବନ୍ଧୁମାନେ ନୂଆ ଯୁଗର ପିଲା । ସେମାନଙ୍କର ସମସ୍ତ କାମ କମ୍ପ୍ୟୁଟର ମାଧ୍ୟମରେ ଚଟ୍‌ପଟ୍ କରି ସରିଯାଏ । ସେମାନଙ୍କୁ ଦିଆଯାଇଥିବା ପ୍ରୋଜେକ୍ଟ ଯଥା ସମୟରେ ଅଥବା ଅଧିକାଂଶ ସମୟରେ ବହୁତ ପୂର୍ବରୁ ସରିଯାଏ । ଜିଭିଏସ୍ ମୂର୍ତ୍ତି ଭରସା କରି ପାରେନା ସେଇ ସବୁ ପ୍ରୋଜେକ୍ଟ କିମ୍ବା ତାକୁ ପ୍ରସ୍ତୁତ କରିଥିବା ବ୍ୟକ୍ତିମାନଙ୍କ ଉପରେ । ନିଜେ ତାକୁ ଟିକିନିଖି ନିରୀକ୍ଷଣ କରେ ଘଣ୍ଟା ଘଣ୍ଟା - ଦିନ ଦିନ ଧରି । ଅଯଥାରେ ତ୍ରୁଟି ଦେଖାଇ ଗାଳି ଗୁଲଜ କରେ । ଅଦ୍ଭୁତ ଲାଗେ ତା'ର ଆଚରଣ ଓ କଥାବାର୍ତ୍ତାର ଢଙ୍ଗ ।

"ମି. ଦାସ, କୌସ୍ତୁଭର ଅର୍ଥ କ'ଣ ?" ପଚାରନ୍ତି ମୂର୍ତ୍ତି ମହାଶୟ ।

"କୌସ୍ତୁଭ ଗୋଟେ ପ୍ରକାର ମଣି - ଯାହା ଭଗବାନ ଶ୍ରୀକୃଷ୍ଣ ପରିଧାନ କରିଥାଆନ୍ତି ।" ଉତ୍ତର ଦିଏ କୌସ୍ତୁଭ ।

"ଓ - ଆଇ ସି - କିନ୍ତୁ 'ଦାସ' ମାନେ ଚାକର ନା ? ତୁମ ପୂର୍ବପୁରୁଷମାନେ ନିଶ୍ଚୟ ଚାକର ଥିଲେ - ନୁହେଁ ?" ମୂର୍ତ୍ତିଙ୍କ ଓଠରେ ବିଦ୍ରୂପାତ୍ମକ ହସ ।

କୌସ୍ତୁଭର କାନମୁଣ୍ଡା ତାତିଯାଏ ପ୍ରଚଣ୍ଡ କ୍ରୋଧରେ । ନିଜକୁ ଯଥା ସମ୍ଭବ ସଂଯତ ରଖିବାକୁ ଚେଷ୍ଟା କରି ସେ କହେ, "ଚାକର କିଏ ନୁହେଁ ଯେ ? ଆପଣ, ମୁଁ,

ଆମେ ସମସ୍ତେ ଯେଉଁମାନେ ବି ଚାକିରି କରିଛେ – ଯିଏ ଯୋଉ ଯୋଉ ପୋଜିସନ୍‌ରେ ଥାଉ ପଛେ – ସମସ୍ତେ ତ ଚାକର। ଆମ ସାଙ୍ଗିଆର ଅର୍ଥ ଆପଣ ଯାହା ବୁଝିଛନ୍ତି – ତାହା କିନ୍ତୁ ଠିକ୍ ନୁହେଁ। 'ଦାସ'ର ଅର୍ଥ ଭଗବାନଙ୍କର ସେବକ।"

କୌସ୍ତୁଭ ତା'ର ବେଶ ପୋଷାକରେ ଟିକେ ସୌଖୀନ୍ ସ୍ୱଭାବର। ତାକୁ ନେଇ ମଧ୍ୟ ଅସ୍ୱସ୍ତିକର ମନ୍ତବ୍ୟ ଦିଅନ୍ତି ସେ – "ତୁମେ କୋଉ ଫ୍ୟାସନ୍ ସୋ'ରେ ଭାଗ ନେବାକୁ ଆସିନ – ବ୍ୟାଙ୍କରେ କାମ କରିବାକୁ ଆସିଛ। ଏକଥା ଭୁଲିଗଲେ ଚଳିବ କେମିତି ?" ଏ ଭଳି ଟିପ୍ପଣୀରେ କୌସ୍ତୁଭ ଅପମାନିତ ବୋଧ କଲେ ବି କିଛି କହିପାରେ ନାହିଁ। ସିଏ କହିଲେ ବୋଲି ଯେ ନିଜ ରୁଚିରେ ପରିବର୍ତ୍ତନ ଆଣି କିଛି କରିବାକୁ ଯିବ – ସେମିତି ବି ଇଚ୍ଛା ହୁଏନା ତା'ର। ଖାଲି ବ୍ୟକ୍ତିଗତ ଆକ୍ଷେପ କରି ସନ୍ତୁଷ୍ଟ ହୁଅନ୍ତି ନାହିଁ ଭଦ୍ରଲୋକ। ଓଡ଼ିଶାରୁ ସେ ଆସିଥିବାରୁ ଓଡ଼ିଆ ଲୋକଙ୍କ ପ୍ରତି ମଧ୍ୟ ତାଙ୍କର ବିରୂପ ମନ୍ତବ୍ୟ କୌସ୍ତୁଭକୁ ବିବ୍ରତ କରେ।

"ଓଡ଼ିଶାର ଲୋକମାନେ ବହୁତ ଗରିବ ନା ? ମୁଁ ଶୁଣିଛି ଓଡ଼ିଶାର ଅଧିକାଂଶ ଲୋକ ଭାତରେ ପାଣି ପୂରାଇ ପଖାଳ କରି ଖାଆନ୍ତି।"

"ହଁ – ଆମ ଓଡ଼ିଶାର ବହୁତ ଲୋକ ପଖାଳ ଖାଇବାକୁ ଭଲ ପାଆନ୍ତି। ଆମର ଭଗବାନ୍ ଶ୍ରୀଜଗନ୍ନାଥଙ୍କ ପାଖରେ ମଧ୍ୟ ଦହିପଖାଳ ଭୋଗ ଦିଆଯାଏ। ଆମ ଷ୍ଟାର୍ ହୋଟେଲ୍‌ମାନଙ୍କରେ ଏବେ ଯେମିତି ଦହିପଖାଳ ପରିବେଷଣ କରାଯାଉଛି – ତାକୁ ଚାଖିଲେ ଆପଣ ଆପଣଙ୍କର ସମ୍ବର, ଚାରୁପାଣି ଭୁଲିଯିବେ।" ଭିତରର ପ୍ରଚଣ୍ଡ ରାଗକୁ ଚପାଇ ସହଜ କଣ୍ଠରେ କୌସ୍ତୁଭ କହିଥିଲା।

ଭଦ୍ରଲୋକ କିନ୍ତୁ ପ୍ରଚଣ୍ଡ ରାଗିଗଲେ। "ବ୍ୟକ୍ତିଗତ ଆକ୍ଷେପ ଆଡ଼କୁ ଯାଅନା। ସେଇଟା ଭଦ୍ରଲୋକଙ୍କ ଆଚରଣ ନୁହେଁ।"

କୌସ୍ତୁଭ ଦାନ୍ତଚିପି ମନେ ମନେ କହିଲା, "ନା, ତୁମେ ହିଁ ପଟା ନେଇ ଯାଇଛ ସମସ୍ତଙ୍କୁ ଆକ୍ଷେପ କରିବାକୁ।"

ବାପା ବୋଉ ଟୁରିଷ୍ଟ ବସ୍‌ରେ ବସି ହାଇଦ୍ରାବାଦର ସମସ୍ତ ଦର୍ଶନୀୟ ସ୍ଥାନ ବୁଲି ଦେଖିଲେ। କୌସ୍ତୁଭ କିନ୍ତୁ ସେ ଯାଏ ଦେଖି ନଥିଲା ସେ ସବୁ ଜାଗା। ବୋଉ ଭାରି ମନ ଖରାପ କଲା। ସିଏ ସେଇମିତି ମଣିଷଟେ। ତା' ପିଲାମାନେ ଯାହା ଦେଖିନାହାନ୍ତି, ଖାଇନାହାନ୍ତି, ପିଇନାହାନ୍ତି – ସେ ସବୁ ତାକୁ ମିଳିଗଲେ ସେ ଅସ୍ୱସ୍ତି ବୋଧ କରେ। କୌଶିକ ସିନା ଦୂରରେ ଅଛି। ପାଖରେ ଥାଇ ବି କୌସ୍ତୁଭ ସେମାନଙ୍କ ସହିତ ସାମିଲ୍ ହୋଇ ପାରିଲା ନାହିଁ – ସେଥିପାଇଁ ବୋଉର ଅବସୋସର ସୀମା ନଥିଲା। ରାମୋଜୀ ଫିଲ୍ମସିଟିରୁ ଫେରିବା ପରେ ସେ ବାରମ୍ବାର କରି କହିଥିଲା,

"ତୋର ସାଙ୍ଗମାନଙ୍କ ସହିତ ତୁ ବି କେବେ ଯାଇ ବୁଲି ଆସିବୁ - ଭାରି ଭଲ ଲାଗିବ। ଆରେ - ତୁମମାନଙ୍କ ପାଇଁ ସିନା ସେସବୁ ଜାଗା।" କୌସ୍ତୁଭ ହଁ ଭରିଥିଲା। ମନେ ମନେ କହିଥିଲା - "ଶ୍ରୀପର୍ଣ୍ଣା ଆସିଲେ ଆମେ ଦୁହେଁ ମିଶି ବୁଲିବାକୁ ଯିବୁ। ଏକୁଟିଆ ବୁଲି ଦେଖିବାକୁ ମୋତେ ବି ଭଲ ଲାଗିବନି।"

ବାପା ବୋଉ ଭୁବନେଶ୍ୱର ଫେରିଯିବା ପୂର୍ବରୁ କୌସ୍ତୁଭର ବସାଘରଟିକୁ 'ଘର' ପରି ଲାଗିବାର କିଛି କିଛି ବ୍ୟବସ୍ଥା କରିଦେଇ ଯାଇଥିଲେ। ରୋଷେଇ ଘରଟିକୁ ବ୍ୟବସ୍ଥିତ କରି ସେଠି କିଛି ବାସନକୁସନ, ଗୋଟେ ହିଟର ରଖଯାଇଥିଲା। ଚା' ତିଆରି କରିବା ପାଇଁ ସସ୍‌ପ୍ୟାନ, କପ୍‌ପ୍ଲେଟ୍, ଚା'ଛଣା, ଅମୁଲ, ଚିନି, ଚା ଇତ୍ୟାଦି ଅଣା ଯାଇଥିଲା। ଜଳଖିଆ ପ୍ଲେଟ୍, ପାଣି ଜଗ୍, କାଚଗ୍ଲାସ୍ ସହିତ କବାଟ ଝର୍କାର ପର୍ଦ୍ଦା, ପା'ପୋଛ, ଡଷ୍ଟବିନ୍, ବାଥରୁମ୍‌ରେ ବ୍ୟବହାର ପାଇଁ କିଛି ଜିନିଷ ମଧ୍ୟ ପାଖ ମାର୍କେଟରୁ କିଣାହୋଇ ଆସିଯାଇଥିଲା। ଡାଇନିଂ ଟେବୁଲ୍ ଉପରେ ଗୋଟେ କ୍ରିଷ୍ଟାଲ୍ ଫୁଲଦାନୀରେ ପ୍ଲାଷ୍ଟିକ୍‌ର ଫୁଲ ତୋଡ଼ାଟିଏ ସଜେଇ ଦେଇଥିଲା ବୋଉ। ବୁଲିଯିବା ବେଳେ କୋଉଠୁ କେଜାଣି ମେଟାଲ୍‌ର ଲାଫିଙ୍ଗ୍ ବୁଦ୍ଧ ମୂର୍ତ୍ତିଟିଏ ଆଣିଥିଲେ ସେମାନେ। ଊର୍ଦ୍ଧ୍ୱବାହୁ ପେଟୁଆ ବୁଢ଼ାଟିର ପାକୁଆ ପାଟିର ସୁନ୍ଦର ହସଭରା ମୁହଁଟିକୁ ଦେଖିଲେ ମନ ପ୍ରସନ୍ନ ହୋଇଉଠୁଥିଲା। ସେଇଟିକୁ ସେଣ୍ଟର୍ ଟେବୁଲ୍ ଉପରେ ସାମ୍ନା ଦୁଆର ଆଡ଼କୁ ମୁହଁକରି ରଖି ଦେଇଥିଲା ବୋଉ। ଘର ଭିତରକୁ ପଶିଗଲା ବେଳକୁ ସବୁଠୁ ଆଗ ଆଖିରେ ପଡୁଥିଲା ସେଇ ମୂର୍ତ୍ତିଟି ଏବଂ ଫୁଲଦାନୀରେ ସଜା ହୋଇଥିବା ଉଜ୍ଜ୍ୱଳ ରଙ୍ଗର ଫୁଲଗୁଡ଼ିକ। କୌସ୍ତୁଭର ଶୋଇବା ଘର ଟେବୁଲ୍ ଉପରେ ଜଗନ୍ନାଥ, ବଳଭଦ୍ର, ସୁଭଦ୍ରାଙ୍କ ମୂର୍ତ୍ତି ସହିତ ଧୂପକାଠି ଓ ଧୂପଦାନୀ ମଧ୍ୟ ରଖା ଯାଇଥିଲା।

ବାପା ବୋଉ ଆସିବା ପରେ ଘରେ ଆଉ ଭୌତିକ ଉପଦ୍ରବ ନଥିଲା। ଆଗରୁ ରୁମ୍‌ଗୁଡ଼ିକ ଅବ୍ୟବହୃତ ହୋଇ ରହୁଥିବାରୁ ଖୋଲା ଝରକା ଫାଙ୍କ ଦେଇ ପାରାମାନେ ଅନାୟାସରେ ଘର ଭିତରକୁ ପ୍ରବେଶ କରୁଥିଲେ। କେତୋଟି ଚେମେଣୀ ମଧ୍ୟ ରହୁଥିଲେ ସେ ଘରେ। ଝରକାର କାଚଟିଏ ଭାଙ୍ଗିଯାଇଥିଲା ଏବଂ ତା'ର ହୁକ୍‌ଟି ବନ୍ଦ କରି ହେଉନଥିଲା। ଗୋଟେ ରଶିରେ ଝରକାଟିକୁ ଟାଣି ବାନ୍ଧି ଦେଇଥିଲେ ବାପା। କାଚଭଙ୍ଗା ଝରକା ଫାଙ୍କକୁ କାଗଜପଟା ଦେଇ ବନ୍ଦ କରିଦେଇଥିଲେ।

"ଘର ସଫାସୁତୁରା ରଖିବୁ। ଅନ୍ତତଃ ସପ୍ତାହରେ ଥରେ ସବୁ ଝଡ଼ାଝଡ଼ି କରିବୁ। ସବୁଦିନ ଗାଧୋଇସାରି ଠାକୁରଙ୍କ ପାଖରେ ଧୂପଟିଏ ଜାଳିଦେବୁ। ଘରର ବାତାବରଣରୁ ସମସ୍ତ ଅପଶକ୍ତି ଦୂରେଇଯିବେ। କରିବୁ ନା ?।" ବ୍ୟାକୁଳ କଣ୍ଠରେ ବୋଉ କହିଥିଲା।

"ଚେଷ୍ଟା କରିବି।"

"ଚେଷ୍ଟା ନୁହେଁ - ଅଲବତ୍ କରିବୁ। ଏଠୁ ଗଲାପରେ ଆମେ ତୋର ବାହାଘର ବ୍ୟବସ୍ଥା କରିବୁ ଖୁବ୍ ଶୀଘ୍ର।"ବୋଉ ତା'ର ନିଷ୍ପତ୍ତି ଶୁଣାଇ ଦେଇଥିଲା।

"କହିଲି ନା - ମୋର ଏବେ ବାହା ହେବାର ନାହିଁ।" କୌସ୍ତୁଭ କହିଥିଲା।

"ଶ୍ରୀପର୍ଣ୍ଣାକୁ ବି ନୁହେଁ?" ମୁରୁକି ହସି ବୋଉ ପଚାରିଲା।

ହତବାକ୍ ହୋଇଯାଇଥିଲା କୌସ୍ତୁଭ। ସଲଜ୍ଜ ହସଟିଏ ହସି ନିରୁତ୍ତର ରହିଥିଲା। "ଆରେ ପାଗଳା - ବାପାମାଆ ହୋଇ ତୁମ ମନକଥା ଆମେ ଜାଣିବୁନି ତ ଆଉ କିଏ ଜାଣିବ? ଶ୍ରୀପର୍ଣ୍ଣା ଘରେ ବି ସମସ୍ତେ ରାଜି। ଆମେ ଏଠୁ ଗଲାପରେ ଆଗ ନିର୍ବନ୍ଧ ଦିନ ଠିକ୍ କରିବୁ। ତୁ ଚେଷ୍ଟା କରିବୁ - ଦିନେ ଦି' ଦିନ ପାଇଁ ସେତିକିବେଳେ ଆସିବାକୁ।" ବୋଉ କହିଥିଲା।

ଶ୍ରୀପର୍ଣ୍ଣା ସହିତ ବାହାଘର ଚୂଡ଼ାନ୍ତ ହେବା ପରେ ନିର୍ବନ୍ଧ ପାଇଁ ଦିନ ଧାର୍ଯ୍ୟ ହେଲା। ଛୁଟି ମିଳିଲାନି କୌସ୍ତୁଭକୁ। ନିର୍ବନ୍ଧରେ ବରକନ୍ୟାଙ୍କର ଉପସ୍ଥିତି ଅପରିହାର୍ଯ୍ୟ ହୋଇଥାଆନ୍ତା- ତେବେ ତା' ଅନୁପସ୍ଥିତିରେ ନିର୍ବନ୍ଧ ହୋଇପାରିନଥାନ୍ତା। ନିର୍ବନ୍ଧରେ ଛୁଟି ନେଲେ ବାହାଘର ବେଳକୁ ଆଉ ଛୁଟି ଦେଇ ପାରିବନି ବୋଲି ଜି.ଭି.ଏସ୍. ମୂର୍ତ୍ତି ରୋକ୍‌ଠୋକ୍ କହିଦେଲା। କୌସ୍ତୁଭର ରାଗ ଏଥର ସୀମା ଟପିଗଲା। ଏତେଦିନ ଯାଏ କରିବ କରିବ ବୋଲି ଯାହା ଭାବୁଥିଲା - ସେଇ କଥାଟି ହଠାତ୍ ସେ କରିବସିଲା। ବାହାଘର କଥା ସ୍ଥିର ହୋଇ ସାରିଛି, ନିମନ୍ତ୍ରଣ ପତ୍ର ବଣ୍ଟା ଚାଲିଛି, ସେତିକିବେଳେ ସେ ଚାକିରିରୁ ଇସ୍ତଫା ଦେଇ ଚାଲିଆସିଛି। ଏକଥା ଯିଏ ଶୁଣିଲେ ଆଖି ଟେକି ଦେଲେ। ପାଗଳ ନା କ'ଣ! ତୁରନ୍ତ ହାଇଦ୍ରାବାଦ ଯାଇ ବ୍ରାଞ୍ଚ ମ୍ୟାନେଜରର ଗୋଡ଼ହାତ ଧରି ଇସ୍ତଫା ପତ୍ର ଫେରାଇ ଆଣିବାକୁ ଅନେକ ଶୁଭେଚ୍ଛୁ ପରାମର୍ଶ ଦେଲେ। କୌସ୍ତୁଭ ସେ କଥା କାନରେ ପୂରେଇଲା ନାହିଁ।

କୌସ୍ତୁଭ ଯେ ପୂରାପୂରି ଅନିଶ୍ଚିତତା ଭିତରକୁ ଡେଇଁ ପଡ଼ିଥିଲା ତା' ନୁହେଁ। ଅନ୍ୟ କୌଣସି ଚାକିରିର ସନ୍ଧାନରେ ଥିଲା ସେ ବହୁତ ଦିନରୁ। ଇଣ୍ଟରନେଟ୍‌ରେ ସେଥିପାଇଁ ଚେଷ୍ଟା ମଧ୍ୟ କରୁଥିଲା ସେ। ମନ ମୁତାବକ ଚାକିରିଟିଏ ପ୍ରାୟ ହୋଇଯାଇଥିଲା ତା'ର। ବାହାଘର ପରେ ସେ ସେଇ ନୂଆ ଚାକିରିରେ ଯୋଗ ଦେଇଥିଲା। ସମସ୍ତେ କହିଲେ - ବୋହୂଟି ଲକ୍ଷ୍ମୀମନ୍ତ। ଘରକୁ ଆସୁ ଆସୁ ସ୍ୱାମୀର ଏତେ ଭଲ ଚାକିରି ହୋଇଗଲା। ମନେ ମନେ ଜି.ଭି.ଏସ୍. ମୂର୍ତ୍ତିକୁ ଧନ୍ୟବାଦ ଦେଇଥିଲା କୌସ୍ତୁଭ। ସିଏ ଯଦି ତାକୁ ହଇରାଣ କରି ନଥାନ୍ତା କୌସ୍ତୁଭ କ'ଣ ତା'ର ପୁରୁଣା ଚାକିରି ଛାଡ଼ିବାକୁ ବାଧ୍ୟ ହୋଇଥାଆନ୍ତା ନା ଏଭଳି ଲୋଭନୀୟ ଚାକିରିର ସନ୍ଧାନ ପାଇପାରିଥାଆନ୍ତା?

ଶୋଇବାକୁ ଚେଷ୍ଟା କରୁ କରୁ କେତେବେଳେ ଗାଢ଼ ନିଦରେ ଶୋଇଯାଇଥିଲା

କୌସ୍ତୁଭ। ହଠାତ୍ ଗୋଟାଏ ଗଁ ଗଁ ଶବ୍ଦରେ ତା'ର ନିଦ ଭାଙ୍ଗିଗଲା। ଗୋଟାପଣେ ସେ ଝାଳରେ ବୁଡ଼ି ଯାଇଥିଲା। ଭୟଙ୍କର ସ୍ୱପ୍ନଟିଏ ଦେଖୁଥିଲା ସେ। ଜି.ଭି.ଏସ୍. ମୂର୍ତ୍ତି ତା'ର ବଡ଼ ବଡ଼ ନଖ ଥିବା ପନ୍ଝାରେ କୌସ୍ତୁଭର ତଣ୍ଟିକୁ ଚିପି ଧରିଛି। ଗଁ ଗଁ ହୋଇ ଛାଟିପିଟି ହେଉଛି ସେ। ନିଦ ଭାଙ୍ଗିଯିବା ପରେ ସେ ବୁଝିପାରିଲା - ସେଇ ଶବ୍ଦ ତା' ନିଜ ପାଖରୁ ନୁହେଁ - ସେ ପାଖ ବର୍ଥରେ ଶୋଇଥିବା ଜି.ଭି.ଏସ୍. ମୂର୍ତ୍ତି ପାଖରୁ ହିଁ ଆସୁଛି। ଲୋକଟା ତାକୁ ଶାନ୍ତିରେ ଟିକେ ଶୁଆଇ ଦେବନି। ତାକୁ ହଇରାଣ କରିବାକୁ ଏଇଠି ମଧ୍ୟ ପହଞ୍ଚି ଯାଇଛି ସେ। ଗଁ ଗଁ ଶବ୍ଦଟା କ୍ରମେ ବଢ଼ିବାକୁ ଲାଗିଛି। ଉପର ବର୍ଥର ଯାତ୍ରୀମାନେ ବେଶ୍ ଆରାମରେ ଶୋଇ ଘୁଙ୍ଗୁଡ଼ି ମାରୁଛନ୍ତି। ଅନିଚ୍ଛା ସତ୍ତ୍ୱେ କମ୍ବଳ ଆଡ଼େଇ କଡ଼ ଲେଉଟାଇ ଚାହିଁଲା ସେ। ଝାପ୍‌ସା ଆଲୁଅରେ ସ୍ପଷ୍ଟ ଦିଶୁ ନଥିଲେ ମଧ୍ୟ ସେ ଜାଣିପାରିଲା ଲୋକଟି ପ୍ରବଳ କଷ୍ଟରେ ଏଭଳି ଶବ୍ଦ କରୁଛି।

"ମରୁ ସେ - ଏମିତି ଲୋକ ପୃଥିବୀର ଭାର। ମରିଗଲେ ଭଲ।" ମନେ ମନେ ଏକଥା କହି ପୁଣି ଥରେ କଡ଼ ଲେଉଟାଇବାକୁ ଯାଇ ଅଜାଣତରେ ବସିପଡ଼ିଲା ସେ। ନଇଁ କି ବସିବାକୁ ହେଲା ବର୍ଥ ଉପରେ।

"ଆର୍ ୟୁ ଓକେ ମିଷ୍ଟର ମୂର୍ତ୍ତି ?" ନ ପଚାରି ରହିପାରିଲାନି କୌସ୍ତୁଭ। "ଆଇ ଆମ୍ ସିଙ୍କିଙ୍ଗ୍ - ପ୍ଲିଜ୍ ହେଲ୍ପ ମି।" କହୁ କହୁ ଅଚେତନତା ମଧ୍ୟକୁ ବୁଡ଼ିଗଲେ ଭଦ୍ରଲୋକ। କୌସ୍ତୁଭ କ'ଣ କରିବ କିଛି ବୁଝିପାରୁନଥିଲା। ତା' ଆଗରେ ଜି.ଭି.ଏସ୍. ମୂର୍ତ୍ତି ନୁହେଁ - ଗୋଟେ ଅସହାୟ ରୋଗୀ - ଯାହାକୁ ତୁରନ୍ତ ସାହାଯ୍ୟ ନ କଲେ ହୁଏତ ସାଂଘାତିକ କିଛି ଘଟିଯାଇପାରେ। ବିଛଣାରୁ ତୁରନ୍ତ ଉଠିଯାଇ ଜି.ଭି.ଏସ୍. ମୂର୍ତ୍ତିଙ୍କ ପାଖରେ ନଇଁ ପଡ଼ି ଇଂରାଜୀରେ ପଚାରିଲା, "ମି. ମୂର୍ତ୍ତି, ଆପଣ କ'ଣ ଅସୁସ୍ଥ ?"

କୌଣସି ଉତ୍ତର ନ ପାଇ ତାଙ୍କ ହାତକୁ ଛୁଇଁ ତାଙ୍କୁ ଡାକିଲା ପୁଣି। "ମି. ମୂର୍ତ୍ତି - କ'ଣ ହେଇଛି ଆପଣଙ୍କର ?" ହାତକୁ ଛୁଇଁବା ମାତ୍ରେ ସେ ଜାଣି ପାରିଥିଲା ତାଙ୍କ ଦେହରେ ପ୍ରଚଣ୍ଡ ତାତି - ଜ୍ୱରରେ ପ୍ରାୟ ଅଚେତନ ଅବସ୍ଥା ତାଙ୍କର। କ'ଣ କରିବ ସେ ? ସହଯାତ୍ରୀମାନଙ୍କୁ ଚାହିଁଲା - ତା'ର ଆଖପାଖ ବର୍ଥମାନଙ୍କରେ ପର୍ଦ୍ଦା ଝୁଲୁଛି - ଏବଂ ପର୍ଦ୍ଦା ଅନ୍ତରାଳରୁ ଘୁମନ୍ତ ମଣିଷମାନଙ୍କର ବିଭିନ୍ନ ପ୍ରକାରର ଘୁଙ୍ଗୁଡ଼ିର ଶବ୍ଦ ଆସୁଛି। ସମସ୍ତେ ତ ନିଶ୍ଚିନ୍ତରେ ଶୋଇ ଯାଇଛନ୍ତି। ସିଏ କାହିଁକି ଉଠି ପଡ଼ିଲା କେଜାଣି। ବାଥ୍‌ରୁମ୍ ପର୍ଯ୍ୟନ୍ତ ଯାଇ ଦେଖି ଆସିଲା - ଜଣେ ବି ସହଯାତ୍ରୀ ଜାଗ୍ରତ ଅବସ୍ଥାରେ ନାହାନ୍ତି। ଫେରିଆସି ନିଜ ବର୍ଥରେ ବସିଲା। ପୁଣି ଥରେ ଘୋଡ଼ିଘାଡ଼ି ହୋଇ ଶୋଇଯିବ କି ? ରିଷ୍ଟୱାଚ୍‌କୁ ଚାହିଁଲା - ରାତି ଦୁଇଟା ଏବେ। ଆଖି କାନ ବନ୍ଦ କରି ଆଉ ଦି' ଘଣ୍ଟା ଶୋଇ ପଡ଼ିଲେ ସେ ଭୁବନେଶ୍ୱରରେ ପହଞ୍ଚିଯିବ। ଗାଡ଼ିରୁ ଓହ୍ଲେଇବା ବେଳକୁ

ତାକୁ ନେବା ପାଇଁ କେହି ନା କେହି ଅପେକ୍ଷା କରିଥିବେ। ସେମାନଙ୍କ ସହିତ ଘରେ ପହଞ୍ଚି ଆତ୍ମୀୟ ସ୍ୱଜନଙ୍କ ଗହଣରେ ହସ ଖୁସି ଆନନ୍ଦରେ ମଜ୍ଜିଯିବ ସେ। ଅଯଥାରେ ଜି.ଭି.ଏସ୍. ମୂର୍ତ୍ତି ଭଳି ଲୋକଟା ପାଇଁ ସେ କାହିଁକି ବିବ୍ରତ ହେଉଛି ! ଇଚ୍ଛା କରି ମଧ ଶୋଇ ପାରିଲାନି କୌସ୍ତୁଭ। ଜି.ଭି.ଏସ୍. ମୂର୍ତ୍ତି ଏବେ ଜ୍ୱରରେ ବାଉଳି ଚାଉଳି ହେଉଛନ୍ତି। ସେ କ'ଣ କହୁଥିଲେ - ସେଥିରୁ କିଛି ବି ବୁଝିପାରୁନଥିଲା କୌସ୍ତୁଭ। ତେଲୁଗୁ ଆଉ ଇଂରାଜୀ ମିଶା କିଛି କିଛି କଥା। ହୁଏତ ସେ ଗାଳି ଦେଉଥିଲେ କାହାକୁ। ମନେ ମନେ ହସିଲା କୌସ୍ତୁଭ। ଜ୍ୱରରେ ଅଚେତନ ଅବସ୍ଥାରେ ବି ବୁଢ଼ାର ପ୍ରକୃତି ଯାହାକୁ ସେଇଆ। ଏଥରକ ଗାଳି ଇଂରାଜୀରେ -। ନିଜର ଅଧସ୍ତନ କର୍ମଚାରୀମାନଙ୍କୁ ଗାଳି ଦେଉଥିବେ ତ - ଆଉ କାହାକୁ? ଶୟନେ, ସପନେ, ଜାଗରଣେ ବୁଢ଼ାର ଗୋଟିଏ ମାତ୍ର ସଉକ ଏଇଟା। କି ଅଦ୍ଭୁତ ମଣିଷଟେ ସତେ।

କୌସ୍ତୁଭର କାନ ଏଥର ଯାହା ଶୁଣିଲା - ବିଶ୍ୱାସ କରିପାରୁନଥିଲା ସେ। ଜି.ଭି.ଏସ୍. ମୂର୍ତ୍ତି କାନ୍ଦୁଥିଲେ। କାନ୍ଦି କାନ୍ଦି କାହାକୁ କହୁଥିଲେ ଖୁବ୍ ଅନୁନୟଭରା କଣ୍ଠରେ, "ଏଇ ଥରକ ମୋତେ କ୍ଷମା କରିଦେଇ ମୋ ସାଙ୍ଗରେ ଆସ। ତୋ ମାଆ ତୋତେ ଦେଖିବ ବୋଲି ମୃତ୍ୟୁ ଶଯ୍ୟାରେ ଅପେକ୍ଷା କରି ରହିଛି। ତୋ ପ୍ରତି ମୁଁ ବହୁତ ଅନ୍ୟାୟ କରିଛି। ପ୍ଲିଜ୍ - ସେସବୁ କଥା ଭୁଲିଯା। ତୋତେ ଆଉ ଜୀବନରେ କିଛି ବି ମାଗିବିନି କି ମୋ ପାଇଁ କିଛି କର ବୋଲି କହିବିନି। ଖାଲି ଥରଟେ - ଥରଟେ ଆସି ମାଆକୁ ଦେଖି ଯା।"

କ'ଣ ହେଲା କୌସ୍ତୁଭର। ସିଧା ଉଠିଗଲା ଜି.ଭି.ଏସ୍. ମୂର୍ତ୍ତିଙ୍କ ପାଖକୁ। ତାଙ୍କ କପାଳରେ ହାତ ରଖି ଡାକିଲା - "ମି. ମୂର୍ତ୍ତି - ମୁଁ ଆପଣଙ୍କୁ କିଛି ସାହାଯ୍ୟ କରିପାରେ?" ବିହ୍ୱଳ ଦୃଷ୍ଟିରେ ତାକୁ କିଛି ସମୟ ଚାହିଁବା ପରେ ତା' ହାତକୁ ଜାବୁଡ଼ି ଧରି ଭୋ ଭୋ ହୋଇ କାନ୍ଦି ଉଠିଲେ ମୂର୍ତ୍ତି।" ମୁଁ ଜାଣିଥିଲି ତୁ ନିଶ୍ଚୟ ଆସିବୁ। ମୋ ପାଇଁ ନ ହେଲେ ବି ତୋ ମାଆ ପାଇଁ ନିଶ୍ଚୟ ଆସିବୁ। ବହୁତ ବହୁତ ଧନ୍ୟବାଦ ପୁଅ। ତୋ ମାଆ ଏବେ ଶାନ୍ତିରେ ମରିପାରିବ।"

କୌସ୍ତୁରଭ ମୁଣ୍ଡ ଭିତରଟା ଗୋଳମାଳିଆ ହୋଇ ଯାଉଥିଲା। ହାଇଦ୍ରାବାଦରେ ଥିଲାବେଳେ ଜି.ଭି.ଏସ୍. ମୂର୍ତ୍ତିଙ୍କର ପାରିବାରିକ ଜୀବନ ବିଷୟରେ କିଛି କିଛି ଶୁଣିଥିଲା ସେ। ବାପାଙ୍କର ବ୍ୟବହାରରେ ଅତ୍ୟନ୍ତ ମର୍ମାହତ ହୋଇ ତାଙ୍କର ଏକମାତ୍ର ପୁଅ ଘର ଛାଡ଼ି ଚାଲି ଯାଇଥିଲା। ବାପା ମାଆଙ୍କ ସହିତ କୌଣସି ସମ୍ପର୍କ ସେ ରଖି ନଥିଲା। ନିଜ ପସନ୍ଦରେ ବାହା ହୋଇ ଚାକିରି ବାକିରି କରି ବେଶ୍ ଆନନ୍ଦରେ ଥିଲା ପୁଅ। ମୂର୍ତ୍ତି ଏକ ପ୍ରକାର ତେଜ୍ୟପୁତ୍ର କରି ଦେଇଥିଲେ ପୁଅକୁ। ମାଆଟି କିନ୍ତୁ ବାପପୁଅଙ୍କର

ମନୋମାଳିନ୍ୟରେ ଅସହାୟ ଭାବରେ ପେଷି ହୋଇ ଯାଉଥିଲେ । ସ୍ୱାମୀଙ୍କର ସବୁତକ ରାଗରୋଷ, ସମସ୍ତ କ୍ଷୋଭ ମଧ ତାଙ୍କରି ଉପରେ ଅଜାଡ଼ି ହୋଇ ପଡୁଥିଲା । ମାନସିକ ଅଶାନ୍ତି ଧୀରେ ଧୀରେ ତାଙ୍କୁ ରୁଗ୍ଣ କରିଦେଇ ଶେଷରେ ଶଯ୍ୟାଶାୟୀ କରିଦେଲା । ପାରିବାରିକ ଅଶାନ୍ତି ହେତୁ ଜି.ଭି.ଏସ୍. ମୂର୍ତ୍ତିଙ୍କର ସ୍ୱଭାବ ପ୍ରକୃତି ଦିନକୁ ଦିନ ଆହୁରି ରୁକ୍ଷ ହୋଇ ଯାଉଥିଲା । ଯୋଉ ପୁଅକୁ ସେ ତାଙ୍କ ଜୀବନର ଏକମାତ୍ର ପୁଞ୍ଜି ମନେକରି ତାକୁ ମନ ମୁତାବକ କରି ଗଢ଼ି ତୋଳିବାକୁ ଅଜସ୍ର ଅର୍ଥ ବ୍ୟୟ କରିବା ସହିତ ତାକୁ ନେଇ ଅନେକ ସ୍ୱପ୍ନ ଦେଖୁଥିଲେ - ତାଙ୍କର ସମସ୍ତ ସ୍ୱପ୍ନକୁ ଗୋଇଠା ମାରିଦେଇ ଚାଲିଗଲା ସେଇ ପୁଅ । ନିଜ ପୁଅର ବ୍ୟବହାରରେ କ୍ଷୁବ୍ଧ ହୋଇ ସମଗ୍ର ତରୁଣ ଜାତି ପ୍ରତି ବିରୂପ ମନୋଭାବ ପୋଷଣ କରୁଥିଲେ ଜି.ଭି.ଏସ୍. । ସେଇ ମନୋଭାବର ଶିକାର ହୋଇଥିଲେ କୌସ୍ତୁଭ ଏବଂ ତା'ର ତରୁଣ ସହକର୍ମୀ ବର୍ଗ ।

ବହୁତ କଷ୍ଟରେ ନିଜର ହାତ ଦୁଇଟିକୁ ମୂର୍ତ୍ତିଙ୍କ କବଳରୁ ଉଦ୍ଧାର କଲା କୌସ୍ତୁଭ । ଗୋଟାଏ ଦାମ୍ଭିକ ମଣିଷର ଏଇ ଅସହାୟ ରୂପ ତାକୁ ବିଚଳିତ କରିଦେଉଥିଲା । ତାଙ୍କୁ ସ୍ପର୍ଶ କରିବା ବେଳେ ସେ ଜାଣି ପାରିଥିଲା - ତାଙ୍କ ଦେହରେ ଶହେ ପାଞ୍ଚ ଡିଗ୍ରୀରୁ କମ୍ ଉତ୍ତାପ ନଥିବ । ସେଇଥିପାଇଁ ତ ବାଉଳି ଚାଉଳି ହେଉଛନ୍ତି । ପାଣି ବୋତଲ ବାହାର କରି ନିଜର ରୁମାଲରେ ଭିଜାଇ ମୂର୍ତ୍ତିଙ୍କ କପାଳରେ ରଖିଲା କୌସ୍ତୁଭ । ତା' ହାତକୁ ପୁଣି ଥରେ ଜାବୁଡ଼ି ଧରିଲେ ଜି.ଭି.ଏସ୍. । ଗୋଟିଏ ହାତ ପାଣିପଟି ଉପରେ ରଖି ଅନ୍ୟ ହାତଟିରେ ତାଙ୍କୁ ଧୀରେ ଧୀରେ ଥାପୁଡ଼ାଇ ଆଶ୍ୱାସନା ଦେଉଥିଲା କୌସ୍ତୁଭ ।

"ତୁ ମୋତେ ଛାଡ଼ି ଯିବୁନି ।" ଆଖି ବନ୍ଦ କରି ଅସ୍ପଷ୍ଟ ଭାବରେ କହିଲେ ଜି.ଭି.ଏସ୍. । କୌସ୍ତୁଭ ପାଣିପଟି ଦେଇ ଚାଲିଥିଲା । ଓଦା ରୁମାଲ୍ ରଖିବା ମାତ୍ରେ ପାଣି ସବୁ ବାଷ୍ପ ହୋଇ ଯାଉଥିଲା ଯେମିତି । ବାରମ୍ବାର ଓଦା କରିବାକୁ ପଡୁଥିଲା । ଗୁଣୁଗୁଣୁ ହୋଇ କ'ଣ ସବୁ କହି ଚାଲିଥିଲେ ଜି.ଭି.ଏସ୍. । କେତେବେଳେ ତେଲୁଗୁରେ ତ କେତେବେଳେ ଇଂରାଜୀରେ । ଧୀରେ ଧୀରେ ଗୁଣୁଗୁଣୁ ସ୍ୱର ବନ୍ଦ ହୋଇଗଲା । ନିଦ ହୋଇଗଲା ତାଙ୍କୁ ।

ପାଣିପଟି ଦେବା ପରେ ଜ୍ୱର ସାମାନ୍ୟ କମି ଯାଇଥିଲେ ବି ଉତ୍ତାପ ବେଶ୍ ରହିଥିଲା । ତାଙ୍କ ପାଖରେ କିଛି ଔଷଧ ଅଛି କି ନାହିଁ କୌସ୍ତୁଭକୁ ଜଣା ନାହିଁ । ଆଗରୁ ସେ ଅସୁସ୍ଥ ଥିଲେ ନା ଏଇ ରେଳଯାତ୍ରା ସମୟରେ ହଠାତ୍ ଅସୁସ୍ଥ ହୋଇ ପଡ଼ିଲେ ସେ କଥା କିଏ କହିବ ? ପୁଣି ତାଙ୍କର ଡାଇବେଟିସ୍, ହାଇ ବ୍ଲଡ୍ ପ୍ରେସର୍, ହାର୍ଟ ପ୍ରବ୍ଲେମ୍ ଇତ୍ୟାଦି ଯଦି ରହିଥିବ ଡାକ୍ତରଙ୍କ ସହିତ ପରାମର୍ଶ ନ କରି ମନଇଚ୍ଛା କୌଣସି ଔଷଧ ତାଙ୍କୁ ଦିଆଯାଇ ପାରିବ ନାହିଁ । ନିଜ ତରଫରୁ ସଦିଚ୍ଛାର ସହିତ ତାଙ୍କର ଭଲ କରିବାକୁ

ଯାଇ ଯଦି କିଛି ଅସୁବିଧା ହୋଇଯିବ - ଜି.ଭି.ଏସ୍. ଯୋଉ ପ୍ରକାର ଲୋକ - ସେ କାହାକୁ ବି ଛାଡ଼ିବନି। ସିଏ ଟିକେ ସଚେତନ ହେଲେ ସିନା କିଛି ପଚାରିହେବ। ଏବେ ସେ ଶୋଇଯାଇଛନ୍ତି ତ ଶୋଇଥାନ୍ତୁ।

ଗାଡ଼ିର ଗତି ମନ୍ଥର ହେଲାଣି। ରିଷ୍ଟୱାଚ୍‌କୁ ଚାହିଁ ସମୟ ଦେଖିଲା କୌସ୍ତୁଭ। ଚାରିଟା ବାଜିଲାଣି।

ଆଉ କିଛି ସମୟ ପରେ ଭୁବନେଶ୍ୱର ଷ୍ଟେସନ୍ ହୋଇଯିବ। ସୁଟ୍‌କେଶ୍‌ଟିକୁ ଚେନ୍‌ଲକ୍ ଖୋଲି ରଖିବାକୁ ହେବ। ନିଜ ଜାଗାକୁ ଯିବା ପାଇଁ ଉଠିଲା ବେଳକୁ କୌସ୍ତୁଭର ଗୋଟିଏ ହାତ ଜିଭିଏସ୍‌ଙ୍କର ଦୁଇ ହାତ ଭିତରେ ବନ୍ଦୀ। ଅତଳତଳ ପାଣିରେ ବୁଡ଼ି ଯାଉଥିବା ମଣିଷଟିଏ ହାତ ପାଖରେ ଯାହା କିଛି ପାଏ - ତାକୁ ହିଁ ସାହା ଭରସା ଭାବି ଜାବୁଡ଼ି ଧରିବା ଭଳି ତା'ର ହାତଟିକୁ ସେ ଧରି ରଖିଛନ୍ତି। କୌସ୍ତୁଭର ହୃଦୟ ତାଙ୍କ ପ୍ରତି ସମବେଦନାରେ ଜୁଡୁବୁଡୁ ହୋଇଗଲା। ନିଜ ବାପାଙ୍କ ମୁହଁ ଦିଶିଗଲା ତାକୁ। ଜି.ଭି.ଏସ୍. ମୂର୍ତ୍ତି ସହିତ ବାପାଙ୍କୁ ତୁଳନା କରାଯାଇ ପାରିବ ନାହିଁ। ଆକାଶ ପାତାଳ ତଫାତ୍ ତାଙ୍କ ବ୍ୟକ୍ତିତ୍ୱରେ। କିନ୍ତୁ ବାପା ତ ବାପା। ବାହାରକୁ ଯେତେ ରୁକ୍ଷ କଠିନ ମନେ ହେଉଥିଲେ ମଧ ପୁଅ ପାଇଁ ହୃଦୟ କନ୍ଦରରେ ସଯତ୍ନରେ ସାଇତା ହୋଇ ରହିଥିବା ସ୍ନେହ ଟିକକରେ ଫରକ୍ ନାହିଁ କିଛି। କୌସ୍ତୁଭର ବାପା ଅତ୍ୟନ୍ତ ମାର୍ଜିତ, ରୁଚି ସମ୍ପନ୍ନ, ଭଦ୍ର ମଣିଷ। ପରିପୂର୍ଣ୍ଣ ସଂସାର ନେଇ ସେ ଆନନ୍ଦରେ ଥାଆନ୍ତି। ଶାନ୍ତିରେ ଥାଆନ୍ତି। ଆଉ ଏଇ ମଣିଷଟି ଭାଗ୍ୟରେ କେବଳ ଅଶାନ୍ତି ଆଉ ଅସନ୍ତୋଷ। ସବୁ ଥାଇ ମଧ କାଙ୍ଗାଳ ଭଳି ଅବସ୍ଥା।

ଜି.ଭି.ଏସ୍. ମୂର୍ତ୍ତିଙ୍କୁ ଏମିତି ଅସହାୟ ଭାବରେ ଛାଡ଼ିଦେଇ ଯିବାକୁ ତା'ର ବିବେକ ବାଧା ଦେଉଥିଲା। ସିଏ ତା' ସହିତ ଯେଉଁଭଳି ବ୍ୟବହାର କରି ଥାଆନ୍ତୁନା କାହିଁକି କୌସ୍ତୁଭର ସଂସ୍କାର ତାକୁ ନିର୍ବିକାର ହେବାକୁ ଦେଉନଥିଲା। ତାଙ୍କୁ ସେ ନେଇଯିବ କି ସାଂଗରେ ? କିନ୍ତୁ ବାହାଘରିଆ ଗହଳିରେ କୋଉଠି ନେଇ ରଖିବ ତାଙ୍କୁ ? ହଁ ଏକାଥରେ କୌଣସି ନର୍ସିଂ ହୋମ୍‌ରେ ତାଙ୍କୁ ଆଡମିଟ୍ କରିଦେଲେ ହେବ। ତାଙ୍କର ଯୋଉ ଅବସ୍ଥା ସାଙ୍ଗରେ କେହି ନାହାନ୍ତି - ବାଟରେ ଯଦି ଆହୁରି ଅଧିକ ଖରାପ ହୋଇଯିବ ତାଙ୍କ ଦେହ - କିଏ ଦେଖିବ ତାଙ୍କୁ ? ହେଲେ ସିଏ ଯେମିତି ଅଖାଡୁଆ ଲୋକ - ତା'ର ଅଯାଚିତ ସାହାଯ୍ୟକୁ ଯେ ସେ ଠିକ୍ ଭାବରେ ଗ୍ରହଣ କରିବେ ସେ ଭରସା ମଧ ନାହିଁ। କ'ଣ ଏବେ କରିବ ସେ ?

କୌସ୍ତୁଭର ଉପର ବର୍ଥରେ ଶୋଇଥିବା ଲୋକ ଜଣକ ଖୁବ୍ ହୁସିଆରରେ ତଳକୁ ଓହ୍ଲାଇଲେ। ଟଏଲେଟ୍ ଗଲେ ହୁଏତ। କିଛି ସମୟ ପରେ ଫେରିଆସିଲେ।

କୌସ୍ତୁଭ ତା'ର ସୁଟ୍‌କେଶଟିକୁ ଧରି ବସି ରହିଥିବା ଦେଖି ସେ ହିନ୍ଦୀରେ ପଚାରିଲେ । "ଆପଣ କ'ଣ ଭୁବନେଶ୍ୱରରେ ଓହ୍ଲାଇବେ ?" କୌସ୍ତୁଭ ସମ୍ମତିସୂଚକ ମୁଣ୍ଡ ହଲାଇଲା । "ଆପଣଙ୍କ ସହିତ ସିଏ ଯିବେନି କି ?" ଜି.ଭି.ଏସ୍.ଙ୍କୁ ଲକ୍ଷ୍ୟ କରି କହିଲେ ଭଦ୍ରଲୋକ । ସିଏ କୁଆଡ଼େ ଯିବେ – ମୋତେ ଜଣା ନାହିଁ । "ହୁଏତ ହାଇଦ୍ରାବାଦ ଯାଉଛନ୍ତି ।" କୌସ୍ତୁଭ କହିଲା ।

"ସିଏ କ'ଣ ଆପଣଙ୍କର ରିଲେଟିଭ୍ ନୁହନ୍ତି ?" ଆଶ୍ଚର୍ଯ୍ୟ ପ୍ରକଟିତ ହେଲା ସହଯାତ୍ରୀଙ୍କ କଣ୍ଠରେ । "ନା – ସେ ମୋର ରିଲେଟିଭ୍ ନୁହନ୍ତି । ମୁଁ ହାଇଦ୍ରାବାଦରେ ଥିବାବେଳେ ତାଙ୍କୁ ଜାଣିଥିଲି ।" କୌସ୍ତୁଭ କହିଲା ।

"ସେ ଆପଣଙ୍କର କିଛି ନୁହନ୍ତି – ଅଥଚ ସାରାରାତି ଆପଣ ତାଙ୍କର ଯେଉଁଭଳି ସେବା କରୁଥିଲେ ମୁଁ ଭାବିଲି ଆପଣ ନିଶ୍ଚୟ ତାଙ୍କର ଖୁବ୍ ନିକଟ ସମ୍ପର୍କୀୟ", ସେ କହିଲେ । କୌସ୍ତୁଭ ନିରବ ରହିଲା । ଭଦ୍ରଲୋକ ତା'ହେଲେ ଉପରେ ଶୋଇ ଶୋଇ ତାଙ୍କୁ ଲକ୍ଷ୍ୟ କରିଛନ୍ତି ।

"ଭୁବନେଶ୍ୱରରେ ଘର ନା ଚାକିରି ?" କୌସ୍ତୁଭ ପାଖରେ ବସିଯାଇ ସେ ପଚାରିଲେ ।

"ଭୁବନେଶ୍ୱରରେ ଆମର ଘର । ଆମର ଅଧିକାଂଶ ସମ୍ପର୍କୀୟ ଭୁବନେଶ୍ୱରରେ ରହନ୍ତି । ମୋ ଚାକିରି କୋଲ୍‌କାତାରେ ।"

"କିଛି ଜରୁରୀ କାମରେ ଭୁବନେଶ୍ୱର ଆସିଛନ୍ତି ବୋଧହୁଏ ?"

"ହଁ, ମୋର ସାନଭଉଣୀର ବାହାଘର ଆଜି । କ'ଣ କରିବି କିଛି ଭାବି ପାରୁନି ।"

"ଏଥିରେ ଭାବିବାର କ'ଣ ଅଛି ? ଯୋଉଥିପାଇଁ ଆସିଛନ୍ତି – ସେଇଠିକୁ ତ ଯିବେ । ଭଉଣୀର ବାହାଘର ବୋଲି କଥା । କେତେ କ'ଣ ଦାୟିତ୍ୱ ଥିବ ଆପଣଙ୍କର । ୟା'ଙ୍କ ପାଇଁ ଭାବୁଛନ୍ତି କି ? ଆପଣ ନିଶ୍ଚିନ୍ତ ହୋଇ ଯାଆନ୍ତୁ । ସାରାରାତି ଆପଣ ଜଣେ ଅନାତ୍ମୀୟ ଲୋକକୁ କେତେ ଯତ୍ନର ସହିତ ସେବା କରି ପୁଣ୍ୟ ଅର୍ଜନ କରିଛନ୍ତି । ମୋତେ ବି ସେଇ ସୁଯୋଗ ଟିକେ ମିଳୁ । ମୁଁ ହାଇଦ୍ରାବାଦ ଯାଉଛି ମୋର ବ୍ୟବସାୟ କାମରେ । ତେଣୁ ସେ ପର୍ଯ୍ୟନ୍ତ ୟା'ଙ୍କର ପାଖେ ପାଖେ ରହିବି । ଦରକାର ପଡ଼ିଲେ ତାଙ୍କ ଘର ପର୍ଯ୍ୟନ୍ତ ଯାଇ ତାଙ୍କୁ ପହଞ୍ଚାଇ ଦେବି । ତାଙ୍କ ଘରର ଫୋନ୍ ନମ୍ବର ଯଦି ଜାଣିଥିବେ ତାଙ୍କ ଘରକୁ ଖବର ଦେଇ ଦେଇଥିବେ ।"

"ନା – ତାଙ୍କ ଘର ନମ୍ବର ମୋତେ ଜଣା ନାହିଁ – ଠିକଣା ବି ଜାଣିନି ।"

"ଠିକ୍ ଅଛି– ଇଏ ଉଠିଲା ପରେ ତାଙ୍କଠୁ ବୁଝିନେବି । ମୋର କାର୍ଡ ରଖନ୍ତୁ ।

ମୋତେ ଫୋନ୍ କରି ବୁଝିନେବେ ଭଦ୍ରଲୋକଙ୍କ ଖବର।"

ଭଦ୍ରଲୋକଙ୍କ ପ୍ରତି କୌସ୍ତୁଭର ମନ କୃତଜ୍ଞତାରେ ଭରିଗଲା। ପ୍ରଥମ ଦେଖାରେ ତାଙ୍କ ପ୍ରତି ତା'ର ଯେଉଁ ଧାରଣା ଜନ୍ମିଥିଲା - ସେ ଧାରଣା ପୂରାପୂରି ବଦଳି ଯାଇଥିଲା। ତାଙ୍କର ଭାରି ଭରକମ୍ ଶରୀରଟିରେ ମୁହଁଟି ଅତ୍ୟନ୍ତ କମନୀୟ ଓ ସ୍ନେହପ୍ରବଣ ମନେ ହେଉଥିଲା। ସ୍ମିତହାସଟି ମଧ୍ୟ ଖୁବ୍ ଅନ୍ତରଙ୍ଗ ଲାଗି ଥିଲା। ଆଖି ଦୁଇଟିରେ ସକାଳର ଆଲୁଅ ସ୍ୱଚ୍ଛତା ଓ ବିଶ୍ୱସ୍ତତା ହୋଇ ଝଲସି ଉଠୁଥିଲା। "ମି. ମୂର୍ତ୍ତି - ମୁଁ ଏବେ ଆସୁଛି।" ଜି.ଭି.ଏସ୍. ମୂର୍ତ୍ତିଙ୍କ କପାଳରେ ହାତ ରଖି କୌସ୍ତୁଭ କହିଲା। ତାଙ୍କୁ କିଛି ନ କହି ଚାଲି ଆସିବାକୁ ଚାହୁଁ ନ ଥିଲା ସେ। ହଲି ଦୋହଲି ଟ୍ରେନ୍‌ଟି ଏବେ ଭୁବନେଶ୍ୱର ଷ୍ଟେସନ୍‌ରେ ପହଞ୍ଚିଗଲା। ଭାରି ଭରକମ୍ ଭଦ୍ରଲୋକ (ଯାହାଙ୍କର ନାଁ ବ୍ରିଜେଶ୍ ଶର୍ମା ବୋଲି ଭିଜିଟିଂ କାର୍ଡରେ ଲେଖାଥିଲା)ଙ୍କ ସହିତ କରମର୍ଦ୍ଦନ କରି କୌସ୍ତୁଭ ନିଜର ସୁଟ୍‌କେଶ ଉଠାଇ ଯିବାକୁ ବାହାରିଲା।

"ଥ୍ୟାଙ୍କ୍ ୟୁ ମି. ଦାସ - ଥ୍ୟାଙ୍କ୍ ୟୁ ଭେରିମଚ୍।" ଅସ୍ପଷ୍ଟ କଣ୍ଠରେ କହିଲେ ଜି.ଭି.ଏସ୍.। କୌସ୍ତୁଭ ଭିତରେ ଚମକ ଖେଳିଗଲା। ଜି.ଭି.ଏସ୍. ମୂର୍ତ୍ତି କ'ଣ ଜାଣିଥିଲେ ତାଙ୍କ ପାଖରେ ତାଙ୍କର ପୁଅ ନୁହେଁ - କୌସ୍ତୁଭ ଦାସ ହିଁ ଥିଲା। ଆଶ୍ଚର୍ଯ୍ୟ।।

# ଘୁଙ୍ଗୁରୁ

ଏ କାହାଣୀ ପ୍ରାୟ ତିରିଶ ବର୍ଷ ପୂର୍ବର । ମିଷ୍ଟର ଦାସ ସେତେବେଳେ ରାଜ୍ୟ ସରକାରଙ୍କର ଜଳସେଚନ ବିଭାଗର ଜଣେ ପଦସ୍ଥ ଅଫିସର । ରାଜଧାନୀଠାରୁ ଅନେକ ଦୂରରେ ବଣଜଙ୍ଗଲ ଅଞ୍ଚଳରେ ଅବସ୍ଥାପିତ । ଯଦିଓ ସପରିବାର ସରକାରୀ ବଙ୍ଗଳାରେ ରହନ୍ତି, ତେବେ ପ୍ରାୟ ଅଧିକାଂଶ ସମୟ ତାଙ୍କୁ ଟୁର୍‌ରେ ଯିବାକୁ ପଡ଼େ । ତାଙ୍କ ଅଧୀନରେ ଥିବା ବିଭିନ୍ନ ଅଞ୍ଚଳ ପରିଦର୍ଶନ କରି ସରକାରଙ୍କୁ ରିପୋର୍ଟ କରିବା ସହିତ ସେସବୁ ଅଞ୍ଚଳରେ ଜଳସେଚନର କିଭଳି ସୁବିଧା ହୋଇପାରିବ ସେଇ ବ୍ୟବସ୍ଥା ମଧ୍ୟ ତାଙ୍କୁ କରିବାକୁ ହୁଏ । ଥରେ ତାଙ୍କର ପରିଦର୍ଶନ ଶେଷ କରି ଫେରିବାବେଳକୁ ସନ୍ଧ୍ୟା ଗଡ଼ିଗଲାଣି । ମନରେ ଆଶଙ୍କା – ଗଭୀର ଜଙ୍ଗଲ ରାସ୍ତାରେ ତାଙ୍କୁ ଫେରିବାକୁ ହେବ । ଡକାୟତମାନଙ୍କ ଅଞ୍ଚଳ ଭାବରେ କୁଖ୍ୟାତ ସେହି ସ୍ଥାନ । ସେଇ ବାଟଦେଇ ଯାଉଥିବା ଗାଡ଼ି, ମୋଟର ଅଟକାଇ ଲୁଟ୍‌ତରାଜ କରିବାର ଆଶଙ୍କା ସବୁବେଳେ ରହିଥାଏ । ଡକାୟତମାନଙ୍କର ନିର୍ଦ୍ଦୟତାର କିଛି ସୀମା ସରହଦ ଥାଏ ନା କ'ଣ ? ଟିକେ ଏପାଖ ସେପାଖ ହୋଇଗଲେ ଜୀବନ ନେଇଯିବାକୁ ସାମାନ୍ୟ ଦ୍ୱିଧା କରିବେ ନାହିଁ । ଅବଶ୍ୟ ଏ.ସି.ଡି.ଓ ସାହେବ ଭାବରେ ପ୍ରଖ୍ୟାତ ମି. ଦାସଙ୍କୁ ସମସ୍ତେ ଜାଣନ୍ତି ସେହି ଅଞ୍ଚଳରେ । ଜଳକଷ୍ଟ ଭରା ସେହି ଅଞ୍ଚଳରେ ଜଳସେଚନର ବ୍ୟବସ୍ଥା କରାଇ ପାରୁଥିବା ଏ.ସି.ଡି.ଓ ସାହେବ ଲୋକମାନଙ୍କ ପାଖରେ ଭଗବାନ ଥିଲେ ସତେ କି ! ତେଣୁ ତାଙ୍କ ପ୍ରତି ସେଭଳି ଆଶଙ୍କା ଅମୂଳକ । ତଥାପି ମଣିଷର ମନ ତ ! ତା' ଛଡ଼ା ସେହି ଅନ୍ଧକାରାଚ୍ଛନ୍ନ ନିବିଡ଼ ଅରଣ୍ୟାୟିତ ପରିବେଶର ମଧ୍ୟ କିଛି ପ୍ରଭାବ ନିଶ୍ଚିତ ଭାବରେ ରହିବ । ଜିପ୍‌ର ହେଡ୍‌ଲାଇଟ୍‌ରେ ଯେତିକି ଦୂର ରାସ୍ତା ଦେଖାଯାଏ – ସେତିକି ବ୍ୟତୀତ ଆଉ ସବୁ ଅନ୍ଧକାରମୟ । ଡ୍ରାଇଭରଟି ସ୍ଥାନୀୟ ଲୋକ, ପିଅନଟି ମଧ୍ୟ ।

"ଘନଶ୍ୟାମ – ଟିକେ ଗାଡ଼ିର ସ୍ପିଡ୍ ବଢ଼ାଅ । ନ ହେଲେ ଏଇ ଜଙ୍ଗଲ ଭିତରେ ରାତି ପାହିଯିବ ଯେ !" ମି. ଦାସ କହିଲେ । ଡ୍ରାଇଭର ଘନଶ୍ୟାମ ଗାଡ଼ିର ସ୍ପିଡ୍ ବଢ଼େଇଲା ।

ଯେତେ ଦୂର ଆଖି ପାଇବ - ଦେଖୁ ଦେଖୁ କେତେବେଳେ ଆଖି ଲାଗିଯାଇଥିଲା ମି. ଦାସଙ୍କର। ଖୁବ୍ ଜୋର୍‌ରେ ବ୍ରେକ୍ ମାରିଲା ଡ୍ରାଇଭର। କ'ଣ ହେଲା ? ଡକାୟତ ଆସିଗଲେ କି ?

"କ'ଣ ହେଲା ଘନଶ୍ୟାମ ?" ପଚାରିଲେ ମି. ଦାସ ଉତ୍କଣ୍ଠିତ ହୋଇ।

"କିଛି ଗୋଟେ ଧକ୍କା ଲାଗିଗଲା ସାର୍। ମୁଁ ଦେଖୁଛି।"

ମି. ଦାସ କିଛି କହିବା ପୂର୍ବରୁ ଘନଶ୍ୟାମ ଗାଡ଼ିରୁ ଓହ୍ଲାଇ ଯାଇ ଗାଡ଼ି ଆଗରେ କିଛି ଗୋଟାଏ ପଡ଼ିଥିବାର ଦେଖିଲା।

"ସାର୍, ମୟୂରଟାଏ ଜଖମ ହୋଇଯାଇଛି।" ଦୁଇ ହାତରେ ସେ ଉଠାଇ ଆଣିଥିଲା ଆହତ ମୟୂରଟିକୁ। ଜିପ୍ ପଛପଟେ ସେଇଟିକୁ ପକେଇଦେଇ ପୁଣିଥରେ ଗାଡ଼ି ଚଳେଇବାରେ ମନ ଦେଲା ଘନଶ୍ୟାମ। ଆଉ କୌଣସି ପ୍ରକାର ଅଘଟଣ ଘଟି ନ ଥିଲା ସେଦିନ। ରାତି ଗୋଟାଏ ପାଖାପାଖି ନିଜର ସରକାରୀ ବଙ୍ଗଳାରେ ପହଞ୍ଚିବା ପରେ ମିଷ୍ଟର ଦାସ ଘନଶ୍ୟାମକୁ ପଚାରିଲେ, "ଦେଖିଲୁ, ମୟୂରଟା ବଞ୍ଚିଛି କି ନାହିଁ ?"

"ବଞ୍ଚିଛି ଆଜ୍ଞା। ଆପଣ ଯାଆନ୍ତୁ ତା' କଥା ମୁଁ ବୁଝିବି। ଖାଲି ପେନ୍‌କିଲର୍ ବଟିକାଟିଏ ଦିଅନ୍ତୁ।"

ଘନଶ୍ୟାମକୁ ପେନ୍‌କିଲର୍ ବଟିକାଟିଏ ଦେଇ ମିଷ୍ଟର ଦାସ ଭିତରକୁ ଚାଲିଗଲେ। ସେ ପର୍ଯ୍ୟନ୍ତ ଶୋଇ ନଥିଲେ ପତ୍ନୀ ଶୁଭଲକ୍ଷ୍ମୀ। ଜିପ୍‌ର ଶବ୍ଦକୁ କାନେଇକି ରହିଥିଲେ ଯେମିତି। ଯେତେ ରାତି ହେଉ, ମିଷ୍ଟର ଦାସ ନ ଫେରିଲା ପର୍ଯ୍ୟନ୍ତ ସେ ଖାଇ ନ ଥିବେ କି ଶୋଇ ନ ଥିବେ। ମିଷ୍ଟର ଦାସ ବେଳେବେଳେ ବିରକ୍ତ ହୁଅନ୍ତି, "ମୋର କ'ଣ ଫେରିବାରେ କିଛି ଠିକ୍ ଠିକଣା ଅଛି ଯେ ନ ଖାଇ ନ ପିଇ ଜଗି ରହୁଛ। ତୁମ ଦେହ ଖରାପ ହେଲେ ପିଲାଙ୍କ କଥା କିଏ ବୁଝିବ ?" ଶୁଭଲକ୍ଷ୍ମୀ ନିରୁତ୍ତର ରହନ୍ତି। ସ୍ୱାମୀ ନ ଫେରିବା ପର୍ଯ୍ୟନ୍ତ ତାଙ୍କ ଭିତରେ ଉଦ୍‌ବେଗ ଓ ଆଶଙ୍କାର ଯେଉଁ ଉଦ୍‌ବେଳନ ଚାଲିଥାଏ, ସେଥିରେ ସେ ନିଶ୍ଚିନ୍ତ ହୋଇ ଶୋଇପାରିଲେ ତ !

ମିଷ୍ଟର ଦାସ ଧୁଆଧୋଇ ହୋଇ ପୋଷାକ ବଦଳାଇ ଆସିବା ବେଳକୁ ଖାଦ୍ୟ ଗରମ କରି ଶୁଭଲକ୍ଷ୍ମୀ ଡାଇନିଂ ଟେବୁଲ୍‌ରେ ବାଢ଼ି ଦେଇଥିଲେ ଦୁଇଜଣଙ୍କ ପାଇଁ। ପିଲା ତିନି ଜଣ ନିଶ୍ଚିନ୍ତ ନିଦ୍ରାରେ ଆଚ୍ଛନ୍ନ ଥିଲେ। କାର୍ଯ୍ୟବ୍ୟସ୍ତ ରହି ସେମାନଙ୍କ ପାଇଁ ମଧ ସମୟ ଦେଇପାରନ୍ତି ନାହିଁ ମିଷ୍ଟର ଦାସ। ଶୁଭଲକ୍ଷ୍ମୀ ହିଁ ସମସ୍ତ ଦାୟିତ୍ୱ ଖୁବ୍ ଯତ୍ନର ସହିତ ତୁଲେଇ ଦିଅନ୍ତି।

ଖାଇସାରିବା ପରେ ନିଜର କ୍ଲାନ୍ତ ଶରୀରଟିକୁ ବିଛଣାରେ ଲୋଟାଇଦେଲେ ମିଷ୍ଟର ଦାସ। ରୋଷେଇଘର କାମ ତୁଟାଇ ଶୁଭଲକ୍ଷ୍ମୀ କେତେବେଳେ ଶୋଇବା ଘରକୁ

ଆସିଲେ ତାଙ୍କୁ ଆଉ ଜଣା ନ ଥିଲା ।

ତା' ପରଦିନ ସକାଳେ ଉଠିବା ମାତ୍ରେ ମନେପଡ଼ିଗଲା ଗତ ରାତିର କଥା । କ'ଣ ହେଲା ସେଇ ଦୁର୍ଘଟଣାଗ୍ରସ୍ତ ମୟୂରଟିର ? ସେ ବିଛଣାରୁ ଉଠି ବାହାରକୁ ଆସିଲେ । ତାଙ୍କ ଅଗଣାରେ ଛୋଟକାଟିଆ ଗହଳିଟିଏ ଲାଗିଯାଇଥିଲା । ଆହତ ମୟୂରଟିର ଆଘାତପ୍ରାପ୍ତ ଗୋଡ଼ଟିକୁ ଦି'ଖଣ୍ଡ ବାଉଁଶ ପାତିଆରେ ବନ୍ଧା ହୋଇଥିଲା । କ'ଣ ସବୁ ଚେରମୂଳି ଔଷଧ ମଧ ଲଗାଯାଇଥିଲା ଖଣ୍ଡିଆ ଜାଗାରେ । ମୟୂରଟିର ବୟସ କମ୍ ହେତୁ ଭଲ ଭାବରେ ପର ଉଠି ନଥିଲା । ତଳେ ପଡ଼ିରହି ଢୁଲୁଢୁଲୁ କରି ଚାହୁଁଥିଲା । ସେ ଚାହାଣି ଯେମିତି ମିଷ୍ଟର ଦାସଙ୍କ ହୃଦୟକୁ ଛୁଇଁଗଲା । ଆହା -ବିଚରାକୁ ଖୁବ୍ କଷ୍ଟ ହେଉଥିବ ହୁଏତ ! ସେତିକିବେଳେ ଶୁଭଲକ୍ଷ୍ମୀ ଗୋଟେ ତାଟିଆରେ ଭାତ ଗଣ୍ଡାଏ ଆଣି ଥୋଇଲେ ମୟୂରଟି ପାଖରେ । ଖୁବ୍ ଯତ୍ନର ସହିତ  ତା'ର ଥଣ୍ଟକୁ ମେଲା କରି ଗୋଟେ ଛୋଟ ଚାମୁଚରେ ତାକୁ ଖୁଆଇବାକୁ ଚେଷ୍ଟା କଲେ । ଆହତ ମୟୂରଟି ଖୁବ୍ କ୍ଷୁଧାର୍ତ୍ତ ଥିଲା ନିଶ୍ଚୟ । ଶୁଭଲକ୍ଷ୍ମୀଙ୍କ ହାତରୁ ଖାଦ୍ୟ ଗ୍ରହଣ କରିବାରେ ଆଦୌ ସଂକୋଚ କଲା ନାହିଁ । ପତ୍ନୀଙ୍କର ଏହି ଅନ୍ନପୂର୍ଣ୍ଣା ରୂପଟିକୁ ଖୁବ୍ ଶ୍ରଦ୍ଧା କରନ୍ତି ମିଷ୍ଟର ଦାସ । ଉଡ଼ିଗଲା ଚଢ଼େଇଙ୍କର ପେଟ କଥା ବି ଜାଣିପାରନ୍ତି ଶୁଭଲକ୍ଷ୍ମୀ । ରାନ୍ଧିବାରେ ଯେମିତି ସେ ଅମୃତହସ୍ତା ଲୋକଙ୍କ ମନ ଜାଣି ଖୁଆଇବାରେ ମଧ ସେ ଧୁରନ୍ଧରା । ଆହତ ପକ୍ଷୀଟି ଖାଇବା ପରେ ଟିକେ ବଳ ପାଇଲା ହୁଏତ । କିଛି ସମୟ ପରେ ତା'ର ଭଙ୍ଗା ଗୋଡ଼ଟିକୁ ସଚଳ କରିବାକୁ ଚେଷ୍ଟା କଲା । ଦି' ଚାରିଥର ଚେଷ୍ଟା କରି ବିଫଳ ହେବା ପରେ ସେ ନିରାଶ ହୋଇ ପଡ଼ିରହିଲା ।

"ଏଇଟା ବଞ୍ଚିବ ତ ?" ମିଷ୍ଟର ଦାସ ପଚାରିଲେ ଘନଶ୍ୟାମକୁ । ଘନଶ୍ୟାମ କିଛି କହିବା ପୂର୍ବରୁ ତାଙ୍କର ରୋଷେଇଆ ସନାତନ ମୟୂରଟିକୁ ଟିକେ ଆଉଁଶି ଦେଇ କହିଲା, "ବଞ୍ଚିବ ଆଜ୍ଞା, ଭଲକି ବଞ୍ଚିବ । ଟିକେ ଟାଇମ୍ ଲାଗିବ ଭଲ ହେବାକୁ । ମୁଁ ତା' ଗୋଡ଼କୁ ବାଗେଇକି ବାନ୍ଧି ଦେଇଛି । ଔଷଧ ବି ଦେଇଛି । ପକ୍ଷୀଜାତି ତ – ଧକ୍କା ଖାଇ ଟିକେ ଡରିଯାଇଛି । ଦି' ଚାରିଦିନ ଯାଉ – ସେ ତା'ର ଆପେ ଉଠି ଚାଲିବ ଯେ ।" ସନାତନ କଣ୍ଠର ଦୃଢ଼ ବିଶ୍ୱାସ ଭଲ ଲାଗିଲା ମିଷ୍ଟର ଦାସଙ୍କୁ ।

"ହଉ, ତେବେ ଯା' ଦାୟିତ୍ୱ ତୁମ ଦୁହିଁଙ୍କ ଉପରେ ରହିଲା । ଯେମିତି ହେଲେ ବି ତାକୁ ଠିକ୍ କରାଇବ ।" ଘନଶ୍ୟାମ ଓ ସନାତନଙ୍କୁ ଚାହିଁ କହିଲେ ମିଷ୍ଟର ଦାସ ।

ଦୁଇ ଚାରିଦିନ ନୁହେଁ, ସପ୍ତାହକ ପରେ ମୟୂରଟି ତା'ର କାଠିବନ୍ଧା ଗୋଡ଼ରେ ଡେଙ୍ଗେଁ ଡେଙ୍ଗେଁ ଚାଲିବାକୁ ଚେଷ୍ଟା କଲା । ସମ୍ପୂର୍ଣ୍ଣ ଭାବରେ ସୁସ୍ଥ ହେବାକୁ କୋଡ଼ିଏ ପଚିଶ ଦିନ ଲାଗିଗଲା ତାକୁ । ଦିନେ ତା' ଗୋଡ଼ରୁ କାଠିବନ୍ଧା ବ୍ୟାଣ୍ଡେଜ୍ ବାହାର କରିଦେଲା

ସନାତନ। ଏବେ ମୟୂରଟି କେବଳ ଅଗଣାରେ ନୁହେଁ - ସାରା ଘର, କମ୍ପାଉଣ୍ଡ ଯାକ ନିର୍ଭୟରେ ଘୂରି ବୁଲିଲା। ମିଷ୍ଟର ଦାସଙ୍କୁ ଦେଖିବା ମାତ୍ରେ ଯୋଉଠି ଥିଲେ ବି ଧାଇଁ ଆସିବ। ତାଙ୍କ ଚାରିପାଖରେ ଘେରାଏ ବୁଲିଯିବ। ପଶୁପକ୍ଷୀମାନେ ବି ବୁଝିପାରନ୍ତି ତାଙ୍କୁ କେହି ସ୍ନେହ କରିବାର କଥା। ଶୁଭଲକ୍ଷ୍ମୀ ଭାତ କ୍ଷୀର ଗୋଳେଇ ରଖିଦେଲେ ଖୁସିରେ ଖାଇଦେବ। କ୍ରମେ ତା' ଦେହରେ ପର ଭର୍ତ୍ତି ହୋଇଗଲା। ଲମ୍ବା ପୁଚ୍ଛଟି ମଧ୍ୟ ଦୃଶ୍ୟମାନ ହେଲା, ଯୋଉଥିରେ କେହି ଚିତ୍ର କରିଦେବା ଭଳି ମୟୂରଚନ୍ଦ୍ରିକା ସବୁ ସଜେଇ ହୋଇ ରହିଥିଲା। ଲମ୍ବା ପୁଚ୍ଛଟିକୁ ଭୂମିରେ ଲୋଟାଇ ରାଜକୀୟ ଠାଣିରେ ମୟୂରଟି ଯେତେବେଳେ ଚାଲିଯାଉଥିଲା, ଦେଖଣାହାରିଙ୍କର ନୟନ ମନ ଭରି ଯାଉଥିଲା।

ଘରର ଜଣେ ସଦସ୍ୟ ଭଳି ହୋଇଯାଇଥିଲା ମୟୂରଟି। ମିଷ୍ଟର ଦାସଙ୍କର ତିନିଟି ପୁଅ ଝିଅ। ବଡ଼ ପୁଅ ମୋନୁ ପାଞ୍ଚ ବର୍ଷର, ତା'ଠୁ ଦି' ବର୍ଷ ସାନ ଝିଅ ଟିନା। ମୋନୁ ଓ ଟିନାଙ୍କ ପାଇଁ ମୟୂରଟି ଥିଲା ଜୀବନ୍ତ ଖେଳନାଟିଏ। ଆଉ ସବା ସାନ ପୁଅ ସୋନୁ, ଯାହାର ବୟସ ମାତ୍ର ଛ' ମାସ; ସିଏ ମଧ୍ୟ ମୟୂରଟିକୁ ଦେଖିଲେ ଜୋର୍‌ରେ ଜୋର୍‌ରେ ଗୋଡ଼ହାତ ଛାଟି ତା'ର ଖୁସି ଜାହିର୍ କରେ। ମୟୂରଟି ବି କୁନି ପୁଅର ଆଖପାଖରେ ରହିବାକୁ ଭଲପାଏ, ଯେମିତିକି ସେ ତା'ର ଜଗୁଆଳି ହୋଇଯାଇଥିଲା ମନକୁ ମନ। ସୋନୁ ପାଖକୁ ଯିଏ ମଧ୍ୟ ଆସିବ 'କଅ କଅ' ଶବ୍ଦ କରି ମୟୂରଟି ତାକୁ ଗୋଡ଼ାଇଯିବ। ମିଷ୍ଟର ଦାସ କହନ୍ତି, ମୟୂରଟା ବୋଧେ କୁକୁର ପାଳଟି ଯାଇଛି। ଥରେ ବେଙ୍ଗଟିଏ ଡେଇଁ ଡେଇଁ ସୋନୁ ଆଡ଼କୁ ଆସିବାର ଦେଖି ମୟୂରଟି ତା'ର କର୍କଶ ସ୍ୱରରେ ଚିତ୍କାର କରି ତାକୁ ଘଉଡ଼ାଇବାକୁ ଚେଷ୍ଟା କଲା। ତଥାପି ସେ ନ ଯିବାରୁ ତାକୁ ଚଞ୍ଚୁରେ ଟେକିଆଣି ବାହାରେ ଫିଙ୍ଗିଦେଇ ଆସିଲା। ସୋନୁ ସେତେବେଳେ ପେଟେଇବା ପରେ ଟିକେ ଟିକେ ହାମୁଡ଼େଇବାକୁ ଚେଷ୍ଟା କରୁଥିଲା। ଖଟରେ ଶୁଆଇଲେ କାଳେ ତଳକୁ ଖସିପଡ଼ିବ ବୋଲି ତାକୁ ତଳେ ସଉପ ପାରି ଶୁଆଇଦେଇ ଶୁଭଲକ୍ଷ୍ମୀ ଘର କାମରେ ମନ ଦେଉଥିଲେ। ମୟୂରଟି ସେଇ ଆଖପାଖରେ ବୁଲାବୁଲି କରୁଥିଲା। ମିଷ୍ଟର ଦାସଙ୍କର ବାପା କିଛିଦିନ ପାଇଁ ପୁଅ ପାଖକୁ ଆସିଥିଲେ। ମୟୂରଟିଏ ଘରସାରା ଖୋଲା ଭାବେ ବୁଲୁଥିବାର ଦେଖି ସେ ବ୍ୟସ୍ତ ହୋଇପଡ଼ିଲେ। କହିଲେ, "ଯେତେହେଲେ ଏ ମୟୂରଟି ବଣର ଜନ୍ତୁ। ଚଞ୍ଚୁ ମାରିଦେବ କି ନଖରେ ଆମ୍ପୁଡ଼ି ଦେବ ଛୁଆଟାକୁ ଏକୁଟିଆ ଛାଡ଼ି ଚାଲିଯାଉଛ ?" ନା - ସେଭଳି ଆଶଙ୍କା କାହାର ନଥିଲା - ସୋନୁର ସ୍ନେହମୟୀ ଜନନୀଙ୍କର ମଧ୍ୟ ନୁହେଁ। 'ଘୁଙ୍ଗୁରୁ' ସତେ ଅବା ତାଙ୍କର ଆଉ ଗୋଟେ ସନ୍ତାନ। ତା'ଠାରୁ କୌଣସି ପ୍ରକାର ବିପଦର ଆଶଙ୍କା କରାଯାଇ ନପାରେ। ହଁ - ମୟୂରଟିକୁ ନାଁଟିଏ ମିଳିଯାଇଥିଲା 'ଘୁଙ୍ଗୁରୁ'। ବଡ଼ପୁଅ ମୋନୁ ମୟୂରର ଗୋଡ଼ରେ ଛୋଟ ଛୋଟ

ଘୁଙ୍ଗୁର ବି'ଟା ପିନ୍ଧେଇ ଦେଇଥିଲା । ସେ ଯୁଆଡ଼େ ମଧ ଯାଉଥିଲା, ଝୁମ୍‌ଝୁମ୍ ଶବ୍ଦରେ ତା'ର ଉପସ୍ଥିତି ବୁଝି ହେଉଥିଲା । ଘୁଙ୍ଗୁରୁ ବି ଜାଣିଯାଇଥିଲା ନିଜର ପରିଚୟ । ଘୁଙ୍ଗୁରୁ ବୋଲି ଡାକିଦେବା ମାତ୍ରେ ସେ 'କଅ କଅ କଅ' ରାବି ଯୋଉଠି ଥିଲେ ବି ଆସି ପହଞ୍ଚିଯାଉଥିଲା ।

ମିଷ୍ଟର ଦାସ ସେଠାକାର ରେଞ୍ଜରଙ୍କୁ ଘୁଙ୍ଗୁରୁ ବିଷୟରେ ସମସ୍ତ କଥା ଜଣାଇଥିଲେ । ବନ୍ୟପ୍ରାଣୀଙ୍କୁ ଘରେ ଅଟକାଇବା ଅପରାଧରେ ତାଙ୍କୁ କେହି ଦୋଷୀ ସାବ୍ୟସ୍ତ କରୁ, ଏକଥା ସେ ଚାହୁଁ ନଥିଲେ । ରେଞ୍ଜର ସାହେବ ଖୁବ୍ ଆଗ୍ରହରେ ସବୁକଥା ଶୁଣିଥିଲେ ଏବଂ ମୟୂରଟିକୁ ଦେଖିବା ପାଇଁ ମିଷ୍ଟର ଦାସଙ୍କ ବଙ୍ଗ୍‌ଲୋକୁ ଆସିଥିଲେ । ମୟୂରଟି ସ୍ୱାଧୀନ ଭାବରେ ବୁଲାଚଲା କରୁଛି ଏବଂ ମଝିରେ ମଝିରେ ଜଙ୍ଗଲକୁ ଚାଲିଯାଉଛି । ଖାଇବା ବେଳ ହେଲେ ଘରକୁ ଚାଲିଆସୁଛି । ଏହା ଦେଖି ରେଞ୍ଜରସାହେବ କହିଥିଲେ, "ମୟୂରଟାକୁ ବାନ୍ଧିକି ତ ରଖିନାହାନ୍ତି, ତେଣୁ ନିଶ୍ଚିନ୍ତ ରହନ୍ତୁ ।" ମଝିରେ ମିଷ୍ଟର ଦାସ ଚେଷ୍ଟା କରିଥିଲେ ତାକୁ ନେଇ ବଣରେ ଛାଡ଼ିଦେବାକୁ । ତା'ର ଗୋଡ଼ ଠିକ୍ ହେବା ପରେ ତାକୁ ଜିପ୍‌ରେ ନେଇ ଜଙ୍ଗଲ ଭିତରେ ଛାଡ଼ିଦେଇ ଆସିଥିଲେ । ସେ ଅଫିସ୍‌ରୁ ଫେରିବାବେଳକୁ ଦେଖିଲେ ମୟୂରଟି ତାଙ୍କ ଅଗଣାରେ ବୁଲୁଛି । ଦୁଇ ତିନିଥର ଏଭଳି ତାକୁ ନେଇ ଗଭୀର ଜଙ୍ଗଲରେ ଛାଡ଼ିବା ଏବଂ କିଛି ସମୟ ପରେ ସେ ତାଙ୍କ ପଛେ ପଛେ ଆସି ଘରେ ପହଞ୍ଚିଯିବା ଦେଖି ସେ ଦିଗରେ ଆଉ ଚେଷ୍ଟା କଲେ ନାହିଁ । କ୍ରମେ ତାଙ୍କ ପରିବାରର ସମସ୍ତଙ୍କର ଅତ୍ୟନ୍ତ ପ୍ରିୟ ସଦସ୍ୟ ହୋଇଗଲା ମୟୂରଟି ।

ଘୁଙ୍ଗୁରୁର ଠାଣିଟି ଭାରି ମର୍ଯ୍ୟାଦାବନ୍ତ, ରାଜକୀୟ ମନେହୁଏ । ଚାଲିବା ସମୟରେ ବେକ ଭାଙ୍ଗି ସେ ଯେତେବେଳେ ଚାହେଁ, ଅତ୍ୟନ୍ତ ମନଲୋଭା ଦିଶେ ସେଇ ଭଙ୍ଗୀଟି । ଆଉ ତା'ର ସର୍ବାଙ୍ଗ – ତରଙ୍ଗାୟିତ କରି ଯେତେବେଳେ ତା'ର ଚିତ୍ରିତ ପୁଚ୍ଛକୁ ବିସ୍ତାରିତ କରିଦିଏ, ସେଇ ଅପରୂପ ଦୃଶ୍ୟଟି କାହାକୁ ଭଲା ମୁଗ୍ଧ ନ କରିବ । ମେଘ ଦେଖିଲେ ମୟୂର ନୃତ୍ୟ କରେ ବୋଲି ସମସ୍ତେ ଜାଣନ୍ତି । ମାତ୍ର ମିଷ୍ଟର ଦାସ କିମ୍ବା ତାଙ୍କ ପରିବାରର କୌଣସି ସଦସ୍ୟ ଘୁଙ୍ଗୁରୁକୁ ନାଚିବାକୁ ନିର୍ଦ୍ଦେଶ ଦେଲେ, ତୁରନ୍ତ ସେ ତା'ର ନୃତ୍ୟଭଙ୍ଗୀରେ ଠିଆ ହୋଇଯାଏ ।

ଘୁଙ୍ଗୁରୁ ଏବେ ତିନି ଚାରିଦିନ ଗାଏବ୍ ହୋଇଯାଏ । ବଡ଼ ହେଲାଣି ଘୁଙ୍ଗୁରୁ । ସନାତନ କହେ, "ସେ ଏବେ ତା'ର ସାଥୀ ଖୋଜିବାକୁ ଯାଉଛି ବଣକୁ ।" ତାକୁ ତ ବାନ୍ଧିକି ରଖାଯାଇ ନାହିଁ । ତେଣୁ ତା' ଖୁସିରେ ସେ ଯୁଆଡ଼େ ଇଚ୍ଛା ଯାଏ, ପୁଣି ତା'ର ମନକୁ ମନ ଫେରିଆସେ । ଘୁଙ୍ଗୁରୁକୁ ନ ଦେଖିଲେ କିନ୍ତୁ ସମସ୍ତଙ୍କର ମନ ଖରାପ ହୋଇଯାଏ । ଫେରିଆସି ସେ ପୁଣି ଗୋଳେଇ ପୋଳେଇ ହୁଏ ଶୁଭଲକ୍ଷ୍ମୀଙ୍କ ପାଖରେ ।

ଶୁଭଲକ୍ଷ୍ମୀ ଅଭିମାନ କରି କହନ୍ତି, "ରହିଗଲୁନି ସିଆଡ଼େ - ତୋର ସାଙ୍ଗସାଥୀଙ୍କ ପାଖରେ। ପୁଣି କାହିଁକି ମାୟା ଲଗେଇବାକୁ ଆସିଲୁ ଆମ ପାଖକୁ ?" ଶୁଭଲକ୍ଷ୍ମୀ ତାକୁ ଖାଇବାକୁ ନ ଦେବା ଯାଏ ସେ ତାଙ୍କ ପାଖ ଛାଡ଼େ ନାହିଁ। ବଡ଼ପୁଅ ମୋନୁ କହେ, "ମାମା ଘୁଙ୍ଗୁରୁକୁ ବହୁତ ବହୁତ ଖାଇବାକୁ ଦେଇ ବଳୁଆ କରିଦିଅ। ମୁଁ ତା' ପିଠିରେ ବସି କାର୍ତ୍ତିକଙ୍କ ପରି ବୁଲିବି।" ଝିଅ ଟିନା କହେ, "ଆଉ ମୁଁ?" ମୋନୁ କହେ, "ତୁ ଗୋଟେ ମୂଷା ଯୋଗାଡ଼ କରି ତା' ପିଠିରେ ବସି ଗଣେଶ ହୋଇଯା।" ଟିନା ଜିଦ୍ ଧରି ବସେ, "ମୁଁ ବି ବସିବି ଘୁଙ୍ଗୁରୁ ଉପରେ।" ସେମାନଙ୍କ ଝଗଡ଼ା ଶୁଣି ଘୁଙ୍ଗୁରୁ ତା'ର ବେକ ଭାଙ୍ଗି ଦୁହିଁଙ୍କୁ ଚାହେଁ। ଶୁଭଲକ୍ଷ୍ମୀ କହନ୍ତି, "ଘୁଙ୍ଗୁରୁ ତ ତୁମ ଦୁହିଁଙ୍କଠୁ ସାନ। ତୁମେ ତା' ପିଠିରେ ବସିଲେ ସେ କ'ଣ ସମ୍ଭାଳି ପାରିବ ?"

ମୋନୁ ବିଜ୍ଞତା ପ୍ରଦର୍ଶନ କରି କହେ, "ମାମା, ମୁଁ ଜାଣିଛି, ଠାକୁରମାନଙ୍କର କିଛି ଓଜନ ନଥାଏ। ସେଇଥିପାଇଁ ତ କିଏ ମୟୂର ଉପରେ ବସନ୍ତି ତ କିଏ ହଂସ ଉପରେ। ଏଡ଼େ ବଡ଼ ପେଟୁ, ମୋଟୁ ଗଣେଶ ଠାକୁର, କୁନି ମୂଷାଟି ଉପରେ ବସି ବୁଲନ୍ତି। ଲକ୍ଷ୍ମୀ ପେଚା ଉପରେ ବସନ୍ତି। ଆଉ କେତେ ଜଣ ଠାକୁର ତ ପଦ୍ମଫୁଲ ଉପରେ ବସିଥାନ୍ତି। ସେ ଫୁଲ ପାଣିରେ କାହିଁକି ବୁଡ଼ିଯାଏନି ଜାଣିଛ ? କାହିଁକିନା ଠାକୁରମାନଙ୍କର ସତରେ କିଛି ଓଜନ ନଥାଏ।"

"ଆରେ ବାଃ - ମୋ ପୁଅର କେତେ ବୁଦ୍ଧି ସତେ। ହଁ, ଠାକୁରମାନଙ୍କର ଓଜନ ଥାଉ କି ନ ଥାଉ - ତୁମର ତ ଓଜନ ଅଛି। ଭୁଲ୍‌ରେ ବି ଘୁଙ୍ଗୁରୁ ଉପରେ ବସିବାକୁ ଚେଷ୍ଟା କରିବନି। ସେ ତା' ଥଣ୍ଟରେ ଖୁମ୍ପିଦେବ, ନ ହେଲେ ତା' ନଖରେ ରାମ୍ପୁଡ଼ିଦେବ। ତା' ଗୋଡ଼ରେ କେତେ ବଡ଼ ବଡ଼ ନଖ ରହିଛି ଦେଖୁଛ ତ !"

"ତୁମେ କାହିଁକି ନେଲ୍‌କଟର୍‌ରେ ତା' ଗୋଡ଼ର ନଖ କାଟିଦେଉନ ଯେ। ତା' ସ୍କୁଲ୍‌ରେ ତା' ଟିଚର୍ ତାକୁ ବହୁତ ଗାଳି ଦେଉଥିବେ ନଖ ବଢ଼ିଥିବାରୁ।" ମୋନୁ କହେ। ସେ ଭାବେ, ଘୁଙ୍ଗୁରୁ ବୋଧେ ଜଙ୍ଗଲ ଭିତରେ ତା' ସ୍କୁଲକୁ ଚାଲିଯାଉଛି। ତା'ର ଏଇ ଭାବନା ଶୁଭଲକ୍ଷ୍ମୀଙ୍କୁ ଆମୋଦିତ କରେ।

ସେଥର ଏକ ପାରିବାରିକ ଉତ୍ସବରେ ଯୋଗଦେବା ପାଇଁ ସପରିବାର ମିଷ୍ଟର ଦାସଙ୍କୁ ଆଠଦିନ ପାଇଁ ରାଉରକେଲା ଯିବାକୁ ପଡ଼ିଲା। ସେମାନେ ଯିବାବେଳେ ଘୁଙ୍ଗୁରୁ ନ ଥିଲା। ଜଙ୍ଗଲ ବୁଲିବାକୁ ଚାଲିଯାଇଥିଲା। ଶୁଭଲକ୍ଷ୍ମୀ ବ୍ୟସ୍ତ ହେଲେ। ଫେରିଆସି ତାଙ୍କୁ ଖୋଜିବ ଘୁଙ୍ଗୁରୁ। ତାଙ୍କ ହାତରୁ ଖାଦ୍ୟ ନ ଖାଇବା ଯାଏ ଅଥୟ ହେଉଥିବ। ଘନଶ୍ୟାମ ମଧ୍ୟ ସେମାନଙ୍କ ସହିତ ଯାଉଥିଲା। ତେଣୁ ରୋଷେଇଆ ସନାତନକୁ ବାରମ୍ବାର କରି କହିଥିଲେ ଘୁଙ୍ଗୁରୁ କଥା ବୁଝିବାକୁ। ସନାତନ ଉପରେ ତାଙ୍କର ଭରସା ଥିଲା। ତା'ରି

ସେବା ଯତ୍ନରେ ତ ଆହତ ମୟୂରଟି ପୂରାପୂରି ସୁସ୍ଥ ହୋଇପାରିଥିଲା । ସନାତନ ତାଙ୍କୁ ଭରସା ଦେଇଥିଲା, "ଆପଣ ଯାଆନ୍ତୁ ମାଆ, ନିଶ୍ଚିନ୍ତ ହୋଇ ଯାଆନ୍ତୁ । ଘୁଙ୍ଗୁରୁ କଥା ମୋତେ ଲାଗିଲା ।"

ମୋନୁର ଖୁବ୍ ଆଗ୍ରହ ଥିଲା ଘୁଙ୍ଗୁରୁକୁ ସାଙ୍ଗରେ ଧରି ରାଉରକେଲା ଯିବାକୁ । ମାତ୍ର ତା'ର ବାପା ମାଆ ଏଥିରେ ରାଜି ନ ଥିଲେ । ଗଲାବେଳେ ବି ଘୁଙ୍ଗୁରୁକୁ ନ ଦେଖି ମୋନୁର ମୁହଁ ଶୁଖିଗଲା ।

ରାଉରକେଲାରୁ ମିଷ୍ଟର ଦାସ ଫେରିଆସିବା ପରେ ମଧ୍ୟ ଘୁଙ୍ଗୁରୁର ଦେଖାଦର୍ଶନ ମିଳି ନ ଥିଲା । ସନାତନକୁ ପଚାରିବାରୁ ସେ କହିଲା, "ଘୁଙ୍ଗୁରୁ ବଣକୁ ଚାଲିଗଲା ସାର୍ । ସେ ବୋଧେ ଆଉ ଫେରିବ ନାହିଁ । ତା'ର ସଙ୍ଗୀ ପାଇଗଲା କି କ'ଣ ।"

ଘୁଙ୍ଗୁରୁର ଅନୁପସ୍ଥିତିରେ ଖାଲି ଖାଲି ଲାଗେ ଚାରିଆଡ଼ । ପିଲାମାନେ ମୁହଁ ଶୁଖାନ୍ତି । ଶୁଭଲକ୍ଷ୍ମୀ କହନ୍ତି, "ଆମେ ସମସ୍ତେ ତାକୁ କେତେ ଆପଣାର କରିଥିଲୁ । ସମସ୍ତଙ୍କୁ ଭୁଲି ଚାଲିଗଲା ?"

ମିଷ୍ଟର ଦାସ ତାଙ୍କୁ ସାନ୍ତ୍ୱନା ଦେଇ କହନ୍ତି, "ହଁ – ସିଏ ତ ମୟୂରଟାଏ, ପକ୍ଷୀ ଜାତି, ଅଣ୍ଡାରୁ ଫୁଟି ଡେଣା ଲାଗିଗଲେ ଚଢ଼େଇଛୁଆ ଆଉ ବାପା ମାଆଙ୍କୁ ବି ଫେରି ଚାହାନ୍ତିନି । ମଣିଷ ଛୁଆ ଆଉ କୋଉ ଅଲଗା କି ? ପିଲାମାନେ ପାଠଶାଠ ପଢ଼ି ବଡ଼ ହୋଇ ଚାକିରି ବାକିରି କରି ବାହାସାହା ହେଲା ପରେ ବାପାମାଆଙ୍କ ପାଖରେ ଆଉ କିଏ ରହୁଛନ୍ତି ସବୁଦିନ ? ହଉ, ଯିଏ ଯୋଉଠି ଥାଆନ୍ତୁ, ଖୁସିରେ ଥାଆନ୍ତୁ । ଆମ ଘୁଙ୍ଗୁରୁକୁ ବି ଭଗବାନ ଭଲରେ ରଖନ୍ତୁ ।"

ଶୁଭଲକ୍ଷ୍ମୀ ଦୀର୍ଘଶ୍ୱାସ ପକାନ୍ତି । ପିଲାମାନେ ଘୁଙ୍ଗୁରୁ ବିଷୟରେ ପଚାରି ପଚାରି ବ୍ୟସ୍ତ ବିବ୍ରତ କରିପକାନ୍ତି ତାଙ୍କୁ । ଅଗତ୍ୟା ତାଙ୍କୁ କହିବାକୁ ପଡ଼େ, "ଘୁଙ୍ଗୁରୁ ବାହା ହୋଇଗଲା । ତା' ସ୍ତ୍ରୀକୁ ନେଇ ସେ ଆଉ ଗୋଟେ ଜଙ୍ଗଲକୁ ଚାଲିଯାଇଛି ।"

"ମିଛକଥା – ସିଏ ତ ମୋଠୁଁ ସାନ । ମୋର ତ ବାହାଘର ହୋଇନି – ତା'ର କେମିତି ବାହାଘର ହେବ ?" ମୋନୁ କହେ ।

"ମୟୂରମାନେ ଜଲ୍‌ଦି ବାହା ହୋଇଯାଆନ୍ତି ।" ଶୁଭଲକ୍ଷ୍ମୀ ବୁଝାନ୍ତି ତାକୁ ।

"ମୁଁ ବି ବାହାହେବି – ମୋ ବାହାଘର ଭୋଜିକୁ ଘୁଙ୍ଗୁରୁ ତା' ସ୍ତ୍ରୀକୁ ନେଇକି ଆସିବ ।" ମୋନୁ ଘୋଷଣା କରେ । ଘୁଙ୍ଗୁରୁକୁ ଫେରାଇ ଆଣିବା ପାଇଁ ତା'ର ପିଲାବୁଦ୍ଧିରେ ଏଇ ଗୋଟିକ ଉପାୟ ସେ ପାଉଛିପାରେ । ତାକୁ କେମିତି ବୁଝାଇବେ ଭାବିପାରନ୍ତିନି ଶୁଭଲକ୍ଷ୍ମୀ ।

ଦିନେ ମିଷ୍ଟର ଦାସଙ୍କର ୱାଚ୍‌ମ୍ୟାନ୍ ଆସି ତାଙ୍କ ପାଖରେ ଠିଆହେଲା । ତାକୁ

ଦେଖିଲେ ଜଣାପଡୁଥିଲା, ସେ କିଛି କହିବାକୁ ଚାହୁଁଛି । ତା'ର କିଛି ଗୁହାରି ଥିବ - ଆପତ୍ତି ଅଭିଯୋଗ ଥିବ ।

"କିଛି କହିବ ଦୀନବନ୍ଧୁ ?' ମିଷ୍ଟର ଦାସ ପଚାରିଲେ ।

"ହଜୁର୍ ।"

"କୁହ ।"

ଚାରିଆଡ଼କୁ ସନ୍ତର୍ପଣରେ ଅନାଇ ଦୀନବନ୍ଧୁ କହିଲା, "ଘୁଙ୍ଗୁରୁ ବଣକୁ ଯାଇନି ହଜୁର୍ - ତାକୁ ଖାଇ ଦେଇଛନ୍ତି ।"

"ଖାଇ ଦେଇଛନ୍ତି ! କିଏ ?" ମିଷ୍ଟର ଦାସ ଚମକି ପଡ଼ିଲେ ।

"ହଜୁର - ଆପଣଙ୍କ ରୋଷେଇଆ ସନାତନ ଆଉ ତା'ର ସାଙ୍ଗମାନେ । ଆପଣ ତ ମାଆଙ୍କୁ ନେଇ ରାଉରକେଲା ଗଲେ । ଘନଶ୍ୟାମ ବି ଗଲା ଆପଣଙ୍କ ସାଙ୍ଗରେ । ଆପଣ ଯିବା ପରେ ସନାତନ ଘୁଙ୍ଗୁରୁ କଥା ଠିକ୍ ଠିକ୍ ବୁଝୁଥିଲା ହଜୁର୍ । ଦିନେ ତା'ର ଦି' ଜଣ ସାଙ୍ଗ ଆସିଲେ । ତା' ରୁମ୍‌ରେ ବସି ମଦ ପିଇଲେ । ଦିନବେଳାଟା । ଘୁଙ୍ଗୁରୁ ସେଇଠି ବୁଲୁଥିଲା । ଖାଇବ ବୋଲି ଆସିଥିଲା । ସନାତନର ସାଙ୍ଗମାନଙ୍କର ତା' ଉପରେ ଆଖି ପଡ଼ିଲା । ସେମାନେ ତାକୁ ମାରିକି ଖାଇବେ ବୋଲି କହିଲେ । ସନାତନ ଆଗ ଜମା ରାଜିହେଉ ନ ଥିଲା । ହେଲେ ହଜୁର - ମଦ ପିଇଲେ ମୁଣ୍ଡର ଠିକଣା ଥାଏ ନା କ'ଣ ? ସନାତନ ଡାକିଲାରୁ ଘୁଙ୍ଗୁରୁ କେତେ ବିଶ୍ୱାସରେ ତା' ପାଖକୁ ଚାଲିଗଲା । କେଡ଼େ ଅବିଶ୍ୱାସୀ କାମ କଲା ସେ ହଜୁର୍ - ନିଜର ପିଲା ଭଳି ଯାହାକୁ ପାଳିଥିଲେ - ତାକୁ ସେ ମାରିକି ଖାଇଦେଲା ।" ଦୀନବନ୍ଧୁର କାଠୁଆ ମୁହଁରେ ସବୁବେଳେ ନିର୍ଲିପ୍ତ ଦିଶୁଥିବା ଆଖି ଦୁଇଟି ପାଣିଚିଆ ଦିଶୁଥିଲା ।

ମିଷ୍ଟର ଦାସ କିନ୍ତୁ କଥାଟିକୁ ଗ୍ରହଣ କରିବାକୁ ପ୍ରସ୍ତୁତ ନ ଥିଲେ । ସନାତନ ଓ ଦୀନବନ୍ଧୁଙ୍କର କିଛି ନା କିଛି କଥା ନେଇ ସବୁବେଳେ କଳିକଜିଆ ହୋଇଥାଏ । ସେଇଥିପାଇଁ ହୁଏତ ସନାତନ ନାଁରେ ଦୀନବନ୍ଧୁ ଏଭଳି ଏକ ସଙ୍ଗିନ୍ ଅଭିଯୋଗ ଆଣୁଛି । ମିଷ୍ଟର ଦାସଙ୍କ ଆଖିରେ ତା' ପ୍ରତି ଅବିଶ୍ୱାସର ଭାବ ବୁଝିପାରି ଦୀନବନ୍ଧୁ ତା'ର ଆଖି ଛୁଇଁଲା । ଠାକୁରଙ୍କ ରାଣ ପକେଇଲା । ତଥାପି ମିଷ୍ଟର ଦାସ ତାକୁ ବିଶ୍ୱାସ କରିପାରୁ ନ ଥିଲେ । ଯୋଉ ସନାତନ ରାତି ଅଧରେ ଉପଚାର କରି ମୟୂରଟିକୁ ବଞ୍ଚାଇଥିଲା, ତା'ର ଭଙ୍ଗା ଗୋଡ଼କୁ ଭଲ କଲା, ତାକୁ ଯତ୍ନ ନେଇ ବଡ଼ କଲା - ସିଏ ପୁଣି ତାକୁ ମାଉଁସ କରି ଖାଇଥିବ, ଏକଥା କେମିତି ବିଶ୍ୱାସ କରିବେ ସେ ? ?

"ହଜୁର୍ ମୋ କଥାକୁ ଅବିଶ୍ୱାସ କରୁଛନ୍ତି ତ ଚାଲନ୍ତୁ ଦେଖିବେ ସେଇ ଝରଣା ପାଖ ଶଙ୍ଖ ତଳେ ଘୁଙ୍ଗୁରୁର ଡେଣା, ଗୋଡ଼ ସବୁ ପଡ଼ିଥିବ ।" ଦୀନବନ୍ଧୁ କହିଲା ।

ଅଗତ୍ୟା ମିଷ୍ଟର ଦାସଙ୍କୁ ଦୀନବନ୍ଧୁ ସହିତ ଯିବାକୁ ହେଲା । ଗଲାବେଳେ କିନ୍ତୁ ମନେ ମନେ ପାଞ୍ଚୁଥିଲେ ଦୀନବନ୍ଧୁର କଥା ମିଛ ହିଁ ହୋଇଥାଉ । ମାତ୍ର ପୋଲତଳେ ପହଞ୍ଚି ଯାହା ଦେଖିଲେ ତାଙ୍କର ଆଖି ବିସ୍ଫାରିତ ହୋଇଗଲା । ସେଇ ଛୋଟିଆ ପୋଲତଳେ ବିଛାଡ଼ି ହୋଇ ପଡ଼ିଥିଲା ମୟୂର ପରଗୁଡ଼ିକ । ହଁ - ବଣଜଙ୍ଗଲ ଜାଗା, ହୁଏତ ଆଉ କେଉଁ ମୟୂରର ପର ହୋଇ ନଥିବ କାହିଁକି ? କିନ୍ତୁ ଇଏ କ'ଣ ? ସେଇ ମୟୂରଚନ୍ଦ୍ରିକା ଥିବା ପରଗୁଡ଼ିକ ପାଖରେ ମୟୂରର ଦୁଇଟି ଗୋଡ଼ ବି ପଡ଼ିଥିଲା; ଯୋଡଥିରେ ଏବେ ବି ବନ୍ଧା ହୋଇ ରହିଥିଲା ଘୁଙ୍ଗୁର ଦୁଇଟି । ଛାତି ଫଟାଇ ଆର୍ତ୍ତନାଦ ବାହାରି ଆସିବ ସତେ କି ! ଦୀନବନ୍ଧୁ ସହାୟତାରେ ସେଇ ପର ତଥା ଗୋଡ଼ ଦୁଇଟିକୁ ସଂଗ୍ରହ କରି ମିଷ୍ଟର ଦାସ ବଙ୍ଗ୍‌ଲୋକୁ ଫେରିଲେ । ସନ୍ଧ୍ୟା ଉତ୍ତୀର୍ଣ୍ଣ ହୋଇଯାଇଥିଲା । ହିଂସ୍ରଜନ୍ତୁମାନଙ୍କର ଭୟ ଥିଲେ ବି ହାତରେ ଧରିଥିବା ଚାରିସେଲିଆ ଟର୍ଚ୍ଚଟିକୁ ଜଳାଇବାକୁ ତାଙ୍କ ହାତରେ ବଳ ପାଉନଥିଲା ।

କଥାଟି ପ୍ରଘଟ ହୋଇଯାଇଥିଲା । ଘନଶ୍ୟାମ ସନାତନକୁ ବାଡ଼େଇ ବାଡ଼େଇ ମିଷ୍ଟର ଦାସଙ୍କ ପାଖକୁ ଆଣିଥିଲା । କାନ୍ଦି କାନ୍ଦି ମିଷ୍ଟର ଦାସଙ୍କ ଗୋଡ଼ ତଳେ ପଡ଼ିଯାଇଥିଲା ସନାତନ ।

"ମୋତେ ଗୁଳି କରିଦିଅନ୍ତୁ ସାର୍ - ମୁଁ ମହାପାପୀ, ଘୁଙ୍ଗୁରୁକୁ ମୁଁ ଖାଇଦେଇଛି ।"

"କେମିତି ତୁ ଏକଥା କରିପାରିଲୁରେ ଚଣ୍ଡାଳ ! ଯାହାକୁ ଏତେ କଷ୍ଟ କରି ବଞ୍ଚେଇଲୁ - ତାକୁ କେମିତି ମାରି ଖାଇବାକୁ ତୋର ମନ ହେଲା ? କେମିତି ତୋ ହାତ ଗଲା ତାକୁ ମାରିବାକୁ ? ତୁ ଏବେ ହିଁ ମୋ ଆଖି ଆଗରୁ ଚାଲିଯା, ଆଉ କେବେ ବି ତୋ ମୁହଁ ମୋତେ ଦେଖେଇବୁନି ।" ନିଜର କ୍ଷୋଭ, କ୍ରୋଧ ତଥା ଦୁଃଖକୁ କେମିତି ନିୟନ୍ତ୍ରଣରେ ରଖିବେ ଭାବିପାରୁ ନ ଥିଲେ ମିଷ୍ଟର ଦାସ ।

ଶୁଭଲକ୍ଷ୍ମୀ ଆସି ଠିଆ ହୋଇଥିଲେ ତାଙ୍କ ପାଖରେ । ଆଖିରୁ ଝରି ପଡୁଥିବା ଲୁହଧାର ଆଉ ବାଧା ବନ୍ଧନ ମାନୁ ନ ଥିଲା । ପିଲାମାନେ ଏକଥା ଜାଣିଲେ କି ପ୍ରତିକ୍ରିୟା ହେବ ସେମାନଙ୍କର କୋମଳ ମନରେ - ଏକଥା ଭାବି ସେ ବ୍ୟାକୁଳ ହୋଇପଡୁଥିଲେ । ଏହି ମର୍ମନ୍ତୁଦ ସତ୍ୟକୁ ସେ ଜଣାଇପାରିବେ ତ ସେମାନଙ୍କୁ ? ପିଲାମାନେ ଘୁଙ୍ଗୁରୁର ଦେହାବଶେଷକୁ ନ ଦେଖନ୍ତୁ, ସେଥିପାଇଁ ଦୀନବନ୍ଧୁକୁ କହି ବଙ୍ଗ୍‌ଲୋ ପରିସରରେ ବଡ଼ ଗାତଟିଏ ଖୋଳାଇଲେ । ଘୁଙ୍ଗୁରୁର ଡେଣା, ପୁଚ୍ଛ, ଗୋଡ଼ ଆଦି ଦେହାବଶେଷକୁ ସମାଧିସ୍ଥ କଲାବେଳେ ଘର ଭିତରୁ ବାହାରି ଆସିଲା ମୋନୁ । ବାରଣ୍ଡାରେ ଠିଆହୋଇ ପ୍ରାୟାନ୍ଧକାର ଅଗଣାରେ ମାଟି ଖୋଳା ହେଉଥିବାର ଦେଖି ସେ ପଚାରିଲା - "ସେଠି କି ଗଛ ଲଗାହେବ - ବାପା ?"

"ଘୁଙ୍ଗୁରୁ" ମିଷ୍ଟର ଦାସଙ୍କ ପାଟିରୁ ଅକସ୍ମାତ୍ ବାହାରିଗଲା। ଆଖି ତାଙ୍କର ଲୋତକାପ୍ଳୁତ ହୋଇଯାଇଥିଲା।

ତାଙ୍କ କଥା ଶୁଣି ମୋନୁ ହସି ହସି କହିଲା, "ବାପା, ଘୁଙ୍ଗୁରୁମାନେ ଗଛରେ ଫଳନ୍ତିନି, ଗଛରେ ବସନ୍ତି। ଘୁଙ୍ଗୁରୁ ଆମକୁ ଭୁଲିଗଲା - ଆମେ ବି ତାକୁ ଭୁଲିଯିବା। ଭୁଲିଯିବା ନା ବାପା ?" ମୋନୁର ସ୍ୱର ଶେଷ ଆଡ଼କୁ କାନ୍ଦୁରା ଶୁଭିଲା କି ? ନା ଇଏ ତାଙ୍କ ମନର ଅନୁରଣନ ! ଘୁଙ୍ଗୁରୁର ସମାଧି ଉପରେ ମାଟି ଘୋଡ଼େଇ ଦେଉ ଦେଉ ଆଖିରୁ କେତେ ଟୋପା ଲୁହ ଝରିପଡ଼ିଲା ସେଇ ମାଟି ଉପରେ।

# ସୁନାଝିଅ

ସୁନାଝିଅର ଷ୍ଟାମ୍ପଟିଏ ମୁଣ୍ଡରେ ଲଗେଇ ଅପର୍ଣ୍ଣା ଜୀବନସାରା କେବଳ କଷ୍ଟ ହିଁ ପାଇ ଆସିଛି। କେହି ହେଲେ ତା' କଥା ଭାବିବାକୁ ଜରୁରୀ ମନେକରି ନାହାନ୍ତି। ତା' ପାଇଁ ସମସ୍ତଙ୍କର ସେଇ ଗୋଟିଏ ମନ୍ତବ୍ୟ, "ସିଏ ଆମର ସୁନାଝିଅ। କୋଉ କଥାକୁ ସେ ମନାକରେ ନାହିଁ କି କୋଉ କଥା ପାଇଁ ଅଝଟ ଲଗାଏ ନାହିଁ। ଯାହା ହେଲେ ବି ତା'ର ଚଳିଯିବ। ଯେକୌଣସି ପରିସ୍ଥିତିରେ ମଧ୍ୟ ସେ ନିଜକୁ ଖାପ ଖୁଆଇ ନେବ। କୋଉ କଥାରେ ତା'ର ଛଳ ନାହିଁ। କାହାରି ପାଇଁ ତା' ମନରେ ଛନ୍ଦ କପଟ ନାହିଁ।" ନିଜ ସମ୍ପର୍କରେ ଏଭଳି ମନ୍ତବ୍ୟ ଶୁଣିଲେ ଅପର୍ଣ୍ଣା ଓଠରେ ଫିକା ହସଟିଏ ଉଙ୍କି ମାରି ପୁଣି ଲିଭିଯାଏ। ନିଜର ଏଇ ଅତିମାତ୍ରାରେ ନିରୀହ ସ୍ୱଭାବ ଯୋଗୁଁ ପିଲାଟି ଦିନରୁ ସେ ଖୁବ୍ କଷ୍ଟ ପାଇ ଆସିଛି ମନରେ। କାହାକୁ କିଛି ମାଗି ପାରିନି। ଅଳି କରିପାରିନି କାହା ପାଖରେ। ଏଇଟା ଖାଇବିନି, ଏଇଟା ପିନ୍ଧିବିନି, ଏଇଟା ନ ହେଲେ ମୋର ଚଳିବନି ବୋଲି ଜିଦ୍ କରିପାରେନି ସେ। ସେଇଥିପାଇଁ ସବୁଠୁ ବେଶି ଅବହେଳାର ଶିକାର ସିଏ ହିଁ ହୋଇଆସିଛି। ସୁନାଝିଅମାନେ କ'ଣ କୌଣସି କଥାର ପ୍ରତିବାଦ କରନ୍ତି ? ସେମାନେ ସବୁ ପରିସ୍ଥିତିରେ ନିଜକୁ ଚଳାଇ ନିଅନ୍ତି କିଛି ଆପତ୍ତି ଅଭିଯୋଗ ନ କରି। ସୁନାଝିଅ ବୋଲି ତା' କଥା କେହି ଭାବିବେନି ? କୌଣସି କ୍ଷେତ୍ରରେ ତାକୁ ଗୁରୁତ୍ୱ ଦିଆଯିବନି ? ସୁନାଝିଅ କ'ଣ ମଣିଷ ନୁହେଁ ? ତା'ର କ'ଣ ମନ ବୋଲି କିଛି ନାହିଁ ? ତା' ହୃଦୟରେ କୌଣସି ଅନୁଭବ ନାହିଁ ? ତା' ନିଜର ଇଚ୍ଛା, ଖୁସି ବୋଲି କିଛି ନାହିଁ ? ସମସ୍ତଙ୍କର ଇଚ୍ଛାର ଭାର ସେ ବୋହି ଚାଲିଥିବ ଜୀବନସାରା ? ତା' ଇଚ୍ଛାର କୌଣସି ମୂଲ୍ୟ ଦେବେନି କେହି ?

ଅପର୍ଣ୍ଣାର ଭାଇ ନାହିଁ, ତିନି ଭଉଣୀ ସେମାନେ। ସବୁଠୁ ବଡ଼ ସୁପର୍ଣ୍ଣା, ତା' ପରେ ଅପର୍ଣ୍ଣା, ସବା ସାନ ଭଉଣୀ ସୁକନ୍ୟା। ସୁପର୍ଣ୍ଣା ତାଙ୍କ ପରିବାରର ପ୍ରଥମ ସନ୍ତାନ ତଥା ଦେଖିବାକୁ ଖୁବ୍ ସୁନ୍ଦର ବୋଲି ପ୍ରଥମରୁ ଅତିରିକ୍ତ ଗେହ୍ଲା କରି ମୁହଁବଡ଼ା

କରିଦେଇଥିଲେ ସମସ୍ତେ। କୌଣସି କଥାରେ ସନ୍ତୁଷ୍ଟ ହୁଏ ନାହିଁ ସେ। ରୋକ୍‌ଠୋକ୍ ଭାବରେ ମୁହଁ ଉପରେ କଡ଼ା କଡ଼ା କଥା ସେ କହିଦେଇପାରେ। ନବାବଙ୍କୁ ମଧ୍ୟ ଜବାବ୍ ଦେବାର ଝିଅ ସେ। ସିଏ ଯାହା ଚାହିଁବ ତାହା ହେବ ହିଁ ହେବ। ଯୋଉ ପୋଷାକ ଚାହିଁବ ପିନ୍ଧିବ। ଯୋଉ ଖାଦ୍ୟ ଖାଇବାକୁ ଇଚ୍ଛା କରିବ ତୁରନ୍ତ ଦିଆ ନ ଗଲେ ପ୍ରଳୟ କରିବ। ଯେତେବେଳେ ଯୁଆଡ଼େ ଯିବାକୁ ଇଚ୍ଛା କରିବ, ସେ ନିଶ୍ଚୟ ଯିବ। ବିନମ୍ରତା, ସହନଶୀଳତା, ଧୈର୍ଯ୍ୟ, ସହାନୁଭୂତି ଇତ୍ୟାଦି ନାରୀସୁଲଭ ଗୁଣ ତା' ଠାରେ କାଣିଚାଏ ହେଲେ ନଥିଲା। ବାପା ସବୁବେଳେ କହିବେ, "ସୁପର୍ଣ୍ଣା ଯଦି ଝିଅ ନ ହୋଇ ପୁଅ ହୋଇଥାଆନ୍ତା, ଭଲ ହୋଇଥାଆନ୍ତା।"

ପୁଅଟିଏ ପାଇଁ ସେଇ ଚିରନ୍ତନ ଲାଳସା ବାପା ବୋଉଙ୍କର ଥିଲା। ସୁପର୍ଣ୍ଣା ପ୍ରଥମ ସନ୍ତାନ। ଯାହା ହେଲେ ମଧ୍ୟ ଚଳିଗଲା। ଅପର୍ଣ୍ଣା ବେଳକୁ କିନ୍ତୁ ସମସ୍ତଙ୍କ ମନ ପିତା ହୋଇଗଲା। ପୁଣି ଗୋଟାଏ ଝିଅ ! କ'ଣ କହିବେ ? ଫୋପାଡ଼ି ତ ପାରିବେ ନାହିଁ ନିଜ ରକ୍ତଗଢ଼ା ସନ୍ତାନକୁ। କିନ୍ତୁ ରଙ୍ଗ ରୂପ ଟିକକ ଯଦି ଭଲ ହୋଇଥାଆନ୍ତା ! ସୁପର୍ଣ୍ଣା ଚଣ୍ଡୀ, ଉଦଣ୍ଡୀ, ମୁହଁଖୋର୍ ଯାହା ହୋଇଥିଲେ ବି ତା'ର ଅପୂର୍ବ ସୁନ୍ଦର ରୂପର ମାୟାରେ ସମସ୍ତ ଅବିଗୁଣ ଲୁଚି ଯାଉଥିଲା। ତା' ତୁଳନାରେ ଅପର୍ଣ୍ଣା ଥିଲା ଖୁବ୍ ସାଧାରଣ। ରୂପ, ରଙ୍ଗ ସବୁଥିରେ।ପିଲାଟି ଦିନରୁ ଏକ ନ୍ୟୂନତାବୋଧ ତାକୁ ଆବୋରି ବସିଥିଲା। ସେ ଯେମିତି ଅବାଞ୍ଛିତ - ଅନାହୂତ ତଥା ଅନଧିକାର ପ୍ରବେଶ କରିଛି ଏ ସଂସାରରେ। ପିଲାଟି ଦିନରୁ ଏକଦମ୍ ଚୁପ୍। ନିହାତି ଦରକାର ନ ପଡ଼ିଲେ ସେ ପାଟି ଖୋଲେ ନାହିଁ। ତା'ର ଏଇ ନିରୀହପଣ ଯେମିତି ସୁପର୍ଣ୍ଣା ପାଇଁ ଆମୋଦର ସାମଗ୍ରୀ ଥିଲା। ନିରୋଳାରେ ହେଉ ବା ସମସ୍ତଙ୍କର ଉପସ୍ଥିତିରେ ହେଉ, ଅପର୍ଣ୍ଣାକୁ ନାନା ପ୍ରକାର ଯନ୍ତ୍ରଣା ଦେଇ ସେ କନ୍ଦାଇବାର ପ୍ରଚେଷ୍ଟା କରୁଥିଲା। ଅପର୍ଣ୍ଣା କୋଉ ସହଜରେ କାନ୍ଦି ବି ପାରୁଥିଲା ? ଅନ୍ୟମାନଙ୍କ ଆଗରେ କାନ୍ଦିବାରେ ବି ସେ ସଂକୋଚ ଅନୁଭବ କରୁଥିଲା। ତେଣୁ ତା' ଉପରେ ସୁପର୍ଣ୍ଣାର ଅତ୍ୟାଚାର ଆହୁରି ବଢ଼ି ଯାଉଥିଲା।

ଅପର୍ଣ୍ଣା ଜନ୍ମ ହେବାର ଦୁଇ ବର୍ଷ ପରେ ପୁତ୍ର କାମନା କରି ପୁଣି ଗୋଟିଏ କନ୍ୟା ସନ୍ତାନକୁ ଏ ପୃଥିବୀକୁ ଆଣିଥିଲେ ତା'ର ଜନ୍ମଦାତ୍ରୀ। ପୁତ୍ରକାମୀ ପିତାମାତାଙ୍କର ତୃତୀୟ କନ୍ୟା ଭାବରେ ଜନ୍ମ ହୋଇଥିଲେ ବି ନିଜକୁ ଆଦୌ ବିଚାରୀଟିଏ କରିନଥିଲା ସୁକନ୍ୟା। ତା'ର ରଙ୍ଗ ରୂପ ସୁପର୍ଣ୍ଣାକୁ ଟପି ଯାଇଥିଲା। ଅନନ୍ୟା ରୂପସୀ ଝିଅଟିକୁ ଯିଏ ବି ଦେଖୁଥିଲା - ଆଖି ଫେରାଇ ପାରୁନଥିଲା ସହଜରେ। ଖୁବ୍ ଛୋଟ ବେଳୁ ନିଜର ସୌନ୍ଦର୍ଯ୍ୟର ଆକର୍ଷଣ ସମ୍ପର୍କରେ ସୁକନ୍ୟା ବୁଝିପାରିଥିଲା। ତା' ସହିତ ସେ ସଚେତନ ଥିଲା ନିଜର ଦାବୀ ଓ ଅଧିକାର ନେଇ। ବେଶ୍ ଦମ୍ଭ ତଥା ଦୃଢ଼ତାର ସହିତ ସେ ଯୁକ୍ତି

କରିପାରୁଥିଲା ସମସ୍ତଙ୍କ ସହିତ । କେବଳ ସୁପର୍ଣ୍ଣାକୁ ଯାହା ଟିକେ ଡରୁଥିଲା ସେ, କାରଣ ସୁପର୍ଣ୍ଣା କଥାକଥାକେ ତା' ଉପରକୁ ହାତ ଉଠାଇ ଦେଉଥିଲା । ସୁକନ୍ୟାକୁ ନିଜର ପ୍ରତିଦ୍ୱନ୍ଦ୍ୱୀ ଭାବି ଈର୍ଷାରେ ଜର୍ଜରିତ ହୋଇ ଯାଉଥିଲା ସୁପର୍ଣ୍ଣା । ପାଠ ପ୍ରତି ବିଶେଷ ଆଗ୍ରହ ନଥିଲା ସୁପର୍ଣ୍ଣା କିମ୍ବା ସୁକନ୍ୟାର । କହିବାକୁ ଗଲେ ଅପର୍ଣ୍ଣା ହିଁ ଭଲ ପଢୁଥିଲା ତିନିଜଣଙ୍କ ମଧ୍ୟରୁ । କିନ୍ତୁ ତାକୁ ପଢ଼ିବାର ସୁଯୋଗ ମିଳିଲେ ତ । ଛୋଟବେଳେ ତା'ର ଅକ୍ଷର ଭଲ ଥିଲା ବୋଲି ସୁପର୍ଣ୍ଣା ପାଇଁ ତାକୁ ହସ୍ତାକ୍ଷର ଲେଖିବାକୁ ପଡୁଥିଲା । ସୁପର୍ଣ୍ଣାର ଘରପାଠତକ ଅନେକ ଦିନ ଯାଏ ଅପର୍ଣ୍ଣା ହିଁ କରିବାକୁ ବାଧ୍ୟ ହେଉଥିଲା । ନିଜ ପାଠ ପଢ଼ିବାକୁ ସମୟ ପାଉନଥିଲା  ଅପର୍ଣ୍ଣା । ଶୋଷ ଲାଗିଲେ ନିଜ ହାତରେ ପାଣି ଗିଲାସଟେ ଆଣି ପିଏ ନାହିଁ ସୁପର୍ଣ୍ଣା । ଅପର୍ଣ୍ଣାକୁ ବରାଦ କରେ ତାକୁ ପାଣି ଆଣି ଦେବାକୁ । ଏମିତିକି ପିଠି କୁଣ୍ଡେଇ ହେଲେ ବି ଅପର୍ଣ୍ଣାକୁ ସେ ଡାକ ପକାଏ ତା'ର ପିଠି କୁଣ୍ଡେଇ ଦେବାକୁ । ସାନଭଉଣୀ ନୁହେଁ - ଅପର୍ଣ୍ଣା ଯେମିତି ତା'ର ଚାକରାଣୀ ଥିଲା ।

ସବା ସାନଭଉଣୀ ସୁକନ୍ୟାର ଅଧିକାଂଶ ସମୟ ବିତୁଥିଲା ସାଜସଜ୍ଜାରେ । ଦର୍ପଣ ପାଖରେ ବସି ନିଜକୁ ଦେଖି ସେ ମୁଗ୍ଧ ହୁଏ । ନିଜର ସୁନ୍ଦରତା ବଜାୟ ରଖିବା ପାଇଁ ତଥା ନିଜକୁ ଆହୁରି ସୁନ୍ଦର କରିବା ପାଇଁ ଯାହା ଯାହା ଆବଶ୍ୟକ, ସେସବୁ ତ ସେ ନିଶ୍ଚୟ କରୁଥିଲା । ତା' ସହିତ ତା'ର ସବୁଠାରୁ ପ୍ରିୟ କାର୍ଯ୍ୟ ଥିଲା ସୁନ୍ଦର ସୁନ୍ଦର ପୋଷାକ ପିନ୍ଧିବା ତଥା ସିନେମା ପତ୍ରିକା ପଢ଼ିବା । ବୋଉ ତ ପ୍ରାୟ ଅଧିକାଂଶ ସମୟରେ ଅସୁସ୍ଥ ହୋଇ ଖଟରେ ଶୋଇ ରହିଥାଏ । ଭୁଲ୍‌ରେ ବି ବଡ଼ଝିଅ ବା ସାନଝିଅକୁ କୌଣସି କାମର ବରାଦ ସେ କରେ ନାହିଁ । ବୋଉର ସମସ୍ତ ପ୍ରତ୍ୟାଶା ଅପର୍ଣ୍ଣା ନିକଟରେ । ତେଣୁ ଘରର ସବୁତକ କାମ ଅପର୍ଣ୍ଣାକୁ ହିଁ କରିବାକୁ ହୁଏ । କାମ କରିବାକୁ ଭଲପାଏ ସେ । ଘରକୁ ପରିଚ୍ଛନ୍ନ ରଖିବାରେ ସେ ଆନନ୍ଦ ପାଏ । ରୋଷେଇଘରେ ପଶି ନାନା ପ୍ରକାର ରାନ୍ଧଣାର ପରୀକ୍ଷା ନିରୀକ୍ଷା କରିବାକୁ ମଧ୍ୟ ଭଲଲାଗେ ତାକୁ । ପରିତୃପ୍ତିର ସହିତ କାହାକୁ ଖାଇବାକୁ ଦେଇ ପାରିଲେ ତା' ମନରେ ଖୁସି ଭରିଯାଏ । କିନ୍ତୁ ନିଜ ଖୁସିରେ କିଛି କରିବା ଆଉ ଜବରଦସ୍ତ ତା' ଉପରେ ଅନେକଗୁଡ଼ାଏ ଦାୟିତ୍ୱ ଲଦି ହୋଇଯିବା ମଧ୍ୟରେ ତଫାତ୍ ଅଛି ନିଶ୍ଚୟ । ବିଚାରୀ ବୋଉଟିର ଅସହାୟତା ଆଉ ନିରୁପାୟତାର କଥା ତା' ବ୍ୟତୀତ ଆଉ କେହି ବି ବୁଝିପାରନ୍ତି ନାହିଁ । ନିଜକୁ କଷ୍ଟ ଲାଗୁଥିଲେ ମଧ୍ୟ ସମସ୍ତେ ଭଲରେ ଥାଆନ୍ତୁ, କାହାର କିଛି ଅସୁବିଧା ନ ହେଉ, କିଛି କଷ୍ଟ ନ ହେଉ ଏତିକି କଥା ତା' ମନରେ ଥାଏ ବୋଲି ନିଜ ଭାଗରେ କେବଳ ଦୁଃଖତକ ସାଉଁଟିଥାଏ ଅପର୍ଣ୍ଣା । ଦୁଃଖ ପାଇଲେ ବି କାହାକୁ କହେ ନାହିଁ ସେ । ଚୁପ୍‌ଚାପ୍ ସବୁ ଅବହେଳା, ସବୁ ଅତ୍ୟାଚାର ବରଦାସ୍ତ କରିଯାଏ । ନିଜ ଘରକଥା କାହାକୁ କହିବ ? ବାପାବୋଉ ତ ତା' ନିଜର,

ଭଉଣୀମାନେ ବି ତା' ନିଜର। ବାହାର ଲୋକଙ୍କ ଆଗରେ ଘରକଥା କହି ନିଜକୁ ଛୋଟ କରିବ କାହିଁକି ?

ଘରକୁ ଯାହା କିଛି ଭଲ ଜିନିଷ ଆସିବ ସମସ୍ତେ ବାଛି ବାଛି ନେଇଯିବା ପରେ ଯାହା ବଳିବ ସେଇଟା ଅପର୍ଣ୍ଣାର। ବୋଉ ବି କହିବ, "ମା' ଅପୁ, ତୁ ଟିକେ ରହିଯା। ସେ ଚଣ୍ଡୀ, ଚାମଣ୍ଡୀ ଆଗ ତାଙ୍କର ନେଇ ସାରନ୍ତୁ, ତା'ପରେ ତୁ ନେବୁ। ନ ହେଲେ ତୋ ପାଇଁ ବାପା ପୁଣି ଥରେ ନେଇ ଆସିବେ।" ସେଇ 'ପୁଣିଥରେ' ନେଇ ଆସିବା ଆଉ ସମ୍ଭବ ହୁଏ ନାହିଁ କେବେ। ବଳକା ଜିନିଷରେ ଅପର୍ଣ୍ଣା ସନ୍ତୁଷ୍ଟ ହେଲା ତ ଭଲକଥା, ନ ହେଲେ ମନ ମାରି ରହେ। ପିଲାଦିନେ ଲୁଚେଇ ଲୁଚେଇ କାନ୍ଦୁଥିଲା। କାହାକୁ କିଛି କହିପାରୁନଥିଲେ ବି ବାପାବୋଉଙ୍କ ଉପରେ ପ୍ରଚଣ୍ଡ ଅଭିମାନ ହେଉଥିଲା। କେବେ କେବେ ତା'ର ସନ୍ଦେହ ହେଉଥିଲା - ସିଏ ହୁଏତ ସେମାନଙ୍କର ନିଜର ଝିଅ ନୁହେଁ। ତାକୁ କୋଉଠୁ ଗୋଟେଇ ଆଣି ଦୟାକରି ପାଳିଛନ୍ତି। ନିଜର ଅଧିକାର ସାବ୍ୟସ୍ତ କରିବାକୁ ସେଇଥିପାଇଁ ସେ ସାହସ କରିପାରେନା। ବଡ଼ ହେବା ବେଳକୁ ସମସ୍ତଙ୍କର ଅବହେଳାକୁ ବରଦାସ୍ତ କରିବାରେ ସେ ଅଭ୍ୟସ୍ତ ହୋଇଯାଇଥିଲା।

ସୁପର୍ଣ୍ଣାର ବାହାଘର ବେଶ୍ ଜାକଜମକରେ ହେଲା। ବଡ଼ ଘର, ଜ୍ୱାଇଁଙ୍କର ବଢ଼ିଆ ଚାକିରି, ରଜାପୁଅ ଭଳି ସୁଦର୍ଶନ ରୂପ - ଏ ସବୁ ସତ୍ତ୍ୱେ ସୁପର୍ଣ୍ଣା ଏ ପ୍ରସ୍ତାବରେ ପ୍ରଥମେ ରାଜି ନଥିଲା। ଅନ୍ୟ କାହାର ପସନ୍ଦକୁ ନିଜର କରିବା ଅଭ୍ୟାସ ନଥିଲା ତା'ର। କେଜାଣି କେମିତି ସେ ଏ ପ୍ରସ୍ତାବରେ ରାଜି ହୋଇଯାଇଥିଲା। ତା'ର ଆଖିଝଲସା ସୌନ୍ଦର୍ଯ୍ୟରେ ବରପକ୍ଷ ଏମିତି ମୁଗ୍ଧ ହୋଇଯାଇଥିଲେ ଯେ ଯୌତୁକ ବାବଦରେ କିଛି ବୋଲି କିଛି ଡିମାଣ୍ଡ୍ କରିନଥିଲେ। କିନ୍ତୁ ସବୁତକ ଡିମାଣ୍ଡ ଥିଲା ସୁପର୍ଣ୍ଣାର। ସବୁବେଳେ ଯାହା କରିଆସିଛି - ବାହାଘରବେଳେ ମଧ୍ୟ ସେଇ ପ୍ରକାର ଆଚରଣ କରିଥିଲା ସେ। ତା' ବାପାଙ୍କର ଦେଇପାରିବାର କ୍ଷମତା ବିଷୟରେ ତ ସେ ଆଦୌ ଚିନ୍ତା କରିନଥିଲା; ତା'ପରେ ବାପାଙ୍କର ଆଉ ଦିଓଟି ଝିଅଙ୍କୁ ଯେ ବାହା କରିବାକୁ ଅଛି - ସେ କଥା ମଧ୍ୟ ସେ ମନରୁ ପୋଛି ଦେଇଥିଲା। ତା'ର ଅଦ୍ଭୁତ ଜିଦ୍ ଆଗରେ ବାପା ନଇଁବାକୁ ବାଧ୍ୟ ହୋଇଥିଲେ। ବାପାଙ୍କୁ ଏକ ପ୍ରକାର କାଙ୍ଗାଳ କରିଦେଇ ସୁପର୍ଣ୍ଣା ଶାଶୂଘରକୁ ଯାଇଥିଲା। ଯୋଉମାନଙ୍କ କୋଳରେ ଜନ୍ମ ହେବା ପରଠାରୁ ଅତ୍ୟନ୍ତ ଆଦର ଯତ୍ନରେ ଲାଳିତ ହୋଇ ଆସିଥିଲା - ସେମାନଙ୍କର ସୁବିଧା ଅସୁବିଧା କଥା ସେ କେବେ ମଧ୍ୟ ବୁଝିବାକୁ ଚାହିଁ ନଥିଲା। ବାପା ମାଆ ହୋଇଛନ୍ତି ତ ତା'ର ସମସ୍ତ ଇଚ୍ଛା ପୂରଣ କରିବାକୁ ସେମାନେ ବାଧ୍ୟ। ଦେଇପାରିବେନି ଯଦି ଜନ୍ମ ଦେଉଥିଲେ କାହିଁକି ?

ସ୍ୱାର୍ଥପରତାରେ ସୁପର୍ଣ୍ଣାଠାରୁ ଆଉ ପାଦେ ଆଗେଇଗଲା ସୁକନ୍ୟା। ସୁପର୍ଣ୍ଣା

ବାହାଘରର ଅଳ୍ପଦିନ ପରେ ବାପାଙ୍କୁ ତା' ବାହାଘର ଦାୟିତ୍ୱରୁ ପୂରାପୂରି ମୁକ୍ତ କରିଦେଇ ଘରଛାଡ଼ି ଚାଲିଯାଇଥିଲା ସୁକନ୍ୟା। ଜଣେ ବିବାହିତ ଚଳଚ୍ଚିତ୍ର ଅଭିନେତାଙ୍କର ଦ୍ୱିତୀୟା ପତ୍ନୀ ହେବା ପାଇଁ ସେ ଘର ଛାଡ଼ିଥିଲା। ଏଭଳି ଗୋଟିଏ ପ୍ରସ୍ତାବରେ ବାପା କେବେ ବି ରାଜି ହୋଇନଥାନ୍ତେ। ନିଜର ଇଚ୍ଛା ପୂରଣ ପାଇଁ କାହାରି ସମର୍ଥନର ପ୍ରୟୋଜନ ସେ କେବେ ହେଲେ ଅନୁଭବ କରିନାହିଁ। ତା' ଜୀବନ କେବଳ ତା' ନିଜର। ସିଏ ଯେମିତି ଚାହିଁବ - ନିଜ ଜୀବନକୁ ସେହିଭଳି ଭାବରେ କଟାଇବାର ଅଧିକାର ତା'ର ନିଶ୍ଚୟ ରହିଛି। ସୁପର୍ଣ୍ଣା ବାହାଘର ପରେ ବାପା ଯେ ତାଙ୍କର ଅନ୍ୟ ଝିଅମାନଙ୍କୁ ଭଲ ଜାଗାରେ ବାହାଘର କରିପାରିବେ – ସେ ବିଶ୍ୱାସ ନଥିଲା ସୁକନ୍ୟାର। ବାପାମାଆଙ୍କ ପ୍ରତି ଦୟାକରି ଚିଠିଟିଏ ଲେଖିଦେଇ ସେ ରାତିର ଅନ୍ଧକାର ଭିତରେ ନିଜକୁ ହଜାଇ ଦେଇଥିଲା।

ଯୁବତୀ ଝିଅଟିଏ ଘରୁ ଚାଲିଗଲେ ଘରଲୋକମାନଙ୍କର ଅବସ୍ଥା କ'ଣ ହୁଏ କେବଳ ଭୁକ୍ତଭୋଗୀ ହିଁ ଜାଣନ୍ତି ସେ କଥା। କାହାକୁ କହି ହେଉନଥିବ କି ସହି ହେଉନଥିବ। ନିଜ ରକ୍ତର ସନ୍ତାନ ପ୍ରତି ମୁହଁରେ ଯେତେ ନିର୍ମମ କଥା କହିଲେ ମଧ୍ୟ ହୃଦୟ ବିଦୀର୍ଣ୍ଣ ହୋଇଯାଏ ପ୍ରଚଣ୍ଡ କୋହ ଆଉ ଲୁହରେ। ସୁପର୍ଣ୍ଣାର ସ୍ୱାର୍ଥପରତା ବାପାଙ୍କୁ ଆର୍ଥିକ ସଂକଟରେ ପକାଇଥିଲା। ସୁକନ୍ୟା କିନ୍ତୁ ତାଙ୍କର ସାମାଜିକ ପ୍ରତିଷ୍ଠା, ମାନ, ସମ୍ମାନକୁ ଧ୍ୱସ୍ତବିଧ୍ୱସ୍ତ କରିଦେଇଥିଲା। ଏ ଘଟଣାରେ ବାପା ଖୁବ୍ ଭାଙ୍ଗିପଡ଼ିଥିଲେ। ବୋଉର ଅସୁସ୍ଥତା ଆହୁରି ବଢ଼ିଯାଇଥିଲା। ଖୁବ୍ ଧୈର୍ଯ୍ୟର ସହିତ ବାପାବୋଉଙ୍କୁ ସମ୍ଭାଳି ନେବାକୁ ଆପ୍ରାଣ ଉଦ୍ୟମ କରିଥିଲା ଅପର୍ଣ୍ଣା।

ଅସୁସ୍ଥ ବାପାବୋଉଙ୍କୁ ଦେଖିବା ପାଇଁ ସୁପର୍ଣ୍ଣା କେବେ କେବେ ଆସୁଥିଲା ତା' ସ୍ୱାମୀ ଅନିମେଷଙ୍କ ସାଙ୍ଗରେ। ଅପର୍ଣ୍ଣା ତା'ର ସାଧ୍ୟ ମତେ ଚେଷ୍ଟା କରୁଥିଲା ସେମାନଙ୍କର ଚର୍ଚ୍ଚା କରିବାକୁ। ଅନିମେଷ ଖୁବ୍ ଅମାୟିକ ମଣିଷ। ଯାହା ପ୍ରତି ତାଙ୍କର ଯାହା କର୍ତ୍ତବ୍ୟ ସେଥିରେ ସେ ଆଦୌ ହେଳା କରନ୍ତି ନାହିଁ। ସେଭଳି ମଣିଷଙ୍କ ସଂସ୍ପର୍ଶରେ ଆସିବା ପରେ ମଧ୍ୟ ସୁପର୍ଣ୍ଣାର କିଛି ପରିବର୍ତ୍ତନ ହୋଇନଥିଲା। ଝିଅଦିନରେ ଅପର୍ଣ୍ଣାକୁ ପ୍ରତିକଥାରେ ଏବଂ କାର୍ଯ୍ୟରେ ଆହତ କରିବାରେ ଏକ ଅଦ୍ଭୁତ ଆନନ୍ଦ ପାଉଥିଲା ସୁପର୍ଣ୍ଣା। ଶାଶୂଘରେ କିନ୍ତୁ ତା'ର ଏଭଳି ଇଚ୍ଛା ପୂରଣର ଆଦୌ ସୁଯୋଗ ନଥିଲା। ନିଜର ପ୍ରକୃତି ଅନୁଯାୟୀ ଘରେ କାମ କରୁଥିବା ଲୋକମାନଙ୍କୁ କେବେ କେବେ ବିରକ୍ତ ହୋଇ କଟୁକଥା କହି ପକାଉଥିଲା ସୁପର୍ଣ୍ଣା। ଏ କଥା ଲକ୍ଷ୍ୟ କରି ଅନିମେଷଙ୍କ ବୋଉ ତାକୁ ପାଖକୁ ଡାକି ଗମ୍ଭୀର ହୋଇ କହିଥିଲେ, "ଆଜିକାଲି କାମ କରିବା ପାଇଁ ଭଲ ଲୋକ ମିଳିବା ଖୁବ୍ କଷ୍ଟ। ସେଥିପାଇଁ ସେମାନଙ୍କୁ ଖୋସାମତ କରି ରଖିବାକୁ ହୁଏ। ସେମାନଙ୍କ ସହିତ ତୁମେ ଯେମିତି ବ୍ୟବହାର କରୁଛ, ସେମାନେ କେହି ହେଲେ ରହିବେନି ଏ ଘରେ।

ସେତେବେଳେ ଆମକୁ ସବୁ କାମ ନିଜେ କରିବାକୁ ପଡ଼ିବ। ଯଦି କାହା କାମ ତୁମ ମନକୁ ନ ଯାଉଛି, ତୁମେ ମୋତେ କହିବ, ମୁଁ କରିଦେବି।" ଶାଶୂଙ୍କ କଥାରେ ପ୍ରତିବାଦ କରିବା ଭଳି ସାହସ ନଥିଲା ସୁପର୍ଣ୍ଣାର। ଖୁବ୍ ବ୍ୟକ୍ତିତ୍ୱମୟୀ ସମ୍ଭ୍ରାନ୍ତ ମହିଳା ସେ। କଥାବାର୍ତ୍ତା, ବ୍ୟବହାର ସବୁକିଛି ମାର୍ଜିତ, ରୁଚିସମ୍ପନ୍ନ। କେବଳ ଶାଶୂ କାହିଁକି - ତାଙ୍କ ପରିବାରର ପ୍ରତ୍ୟେକ ସଦସ୍ୟ ସେହିଭଳି। ସୁପର୍ଣ୍ଣା ଯେମିତି ବେଖାପ ସେମାନଙ୍କ ଭିତରେ। ନିଜର ନିଷ୍ଫଳ ଆକ୍ରୋଶ ସେ ଆଉ କୋଉଠି ପ୍ରକାଶ କରିବ ? ହାତ ପାଆନ୍ତାରେ କେବଳ ଅନିମେଷଙ୍କୁ ପାଏ। ତାଙ୍କରି ଉପରେ ଛିଣ୍ଡାଇ ଦିଏ ସବୁ ରାଗ। ସୁପର୍ଣ୍ଣାର କୌଣସି କଥା ଅନିମେଷ ଦେହକୁ ନିଅନ୍ତି ନାହିଁ। ବରଂ ପ୍ରଚଣ୍ଡ ବଦରାଗୀ ପତ୍ନୀକୁ ଶାନ୍ତ କରିବା ପାଇଁ ବିଭିନ୍ନ ଉପାୟ ବାହାର କରନ୍ତି। ସେଇଥିପାଇଁ ସୁପର୍ଣ୍ଣାକୁ ନେଇ ତା'ର ବାପା ବୋଉଙ୍କ ପାଖକୁ ଆସନ୍ତି। ବାପଘରକୁ ଆସିବାକୁ କୋଉ ଝିଅ ଖୁସି ହୁଏ ନାହିଁ ? କିନ୍ତୁ ଯେଉଁମାନଙ୍କ ମନରେ ଅଶାନ୍ତି ବସା ବାନ୍ଧି ରହିଥାଏ ସେମାନେ କେବେ ବି କୋଉଠି ଶାନ୍ତି ପାଇପାରନ୍ତି ନାହିଁ। ନିଜେ ଅଶାନ୍ତି ହେବା ସହିତ ଅନ୍ୟମାନଙ୍କୁ ମଧ୍ୟ ଅଶାନ୍ତି ଦିଅନ୍ତି।

ଅପର୍ଣ୍ଣା ପ୍ରତି ସୁପର୍ଣ୍ଣାର ଦୁର୍ବ୍ୟବହାର ଏବଂ ଅପର୍ଣ୍ଣାର ଅସୀମ ସହିଷ୍ଣୁତାକୁ ଲକ୍ଷ୍ୟ କରିଥିଲେ ଅନିମେଷ। କେମିତିକା ଝିଅଟିଏ ସତେ - ଛାତି ଚିରି ହୋଇଗଲେ ବି ପଦେ ହେଲେ କିଛି କହିବ ନାହିଁ ପ୍ରତିବାଦ କରି। ଅପର୍ଣ୍ଣା ପ୍ରତି ସ୍ନେହ ଓ ସହାନୁଭୂତିରେ ଅନିମେଷଙ୍କ ମନ ଭରିଯାଏ। ସୁପର୍ଣ୍ଣାର ଦୁର୍ବ୍ୟବହାରର କ୍ଷତିପୂରଣ ସ୍ୱରୂପ ସେ ଅନେକ ମଜା ମଜା କଥା କହି ଅପର୍ଣ୍ଣାକୁ ହସାଇବାକୁ ଚେଷ୍ଟା କରନ୍ତି। ତାକୁ ଥଟାରେ 'ସାନରାଣୀ' ବା 'ସାନଘରଣୀ' ବୋଲି ସମ୍ବୋଧନ କରନ୍ତି। ଶ୍ୱଶୁରଘରକୁ ଆସିବାବେଳେ ଅପର୍ଣ୍ଣା ପାଇଁ କିଛି ଉପହାର ନେଇ ଆସିଥାଆନ୍ତି। ନିଜ ପସନ୍ଦର ଗଳ୍ପ ଉପନ୍ୟାସ ବହି, ପୁରୁଣା ହିନ୍ଦୀ ସିନେମାର ବଛା ବଛା ଗୀତ ଥିବା କ୍ୟାସେଟ୍ ବା ସିଡି ଦେଖିଲେ ଅପର୍ଣ୍ଣାର ସୁନ୍ଦର ଆଖି ଦୁଇଟିରେ କୃତଜ୍ଞତାର ଭାବ ଫୁଟିଉଠେ। ସୁପର୍ଣ୍ଣା କିନ୍ତୁ ବରଦାସ୍ତ କରିପାରେ ନାହିଁ ଅନିମେଷଙ୍କର ଅପର୍ଣ୍ଣା ପ୍ରତି ରହିଥିବା ଅନାବିଳ ସ୍ନେହ ଓ ସହାନୁଭୂତିକୁ। ପ୍ରଚଣ୍ଡ ଈର୍ଷାରେ ସେ ଜଳିଯାଏ। ଯାହାକୁ ସେ ସବୁବେଳେ ତୁଚ୍ଛ ମଣିଆସିଛି, ରୂପ, ଗୁଣ କୋଉଥିରେ ବି ତା' ସହିତ ଯିଏ ତୁଳନୀୟ ନୁହେଁ, ଅନିମେଷ ତାକୁ ଏତେ ଗୁରୁତ୍ୱ ଦେଉଛନ୍ତି କାହିଁକି ? ଏଥିରେ ତା'ର ମର୍ଯ୍ୟାଦା ହାନି ହେଉନାହିଁ କି ? ବାପଘରେ ଯେତିକି ସମୟ ରହେ ସୁପର୍ଣ୍ଣା ତା'ର ସ୍ୱାମୀକୁ ଆଖିରେ ଆଖିରେ ଜଗିଥାଏ। କିଛି ନା କିଛି କାମର ବରାଦ କରି ଅପର୍ଣ୍ଣାକୁ ଅନିମେଷଙ୍କ ପାଖରୁ ଦୂରେଇ ରଖିବାକୁ ଚେଷ୍ଟା କରିଥାଏ। ଅପର୍ଣ୍ଣା ପ୍ରତି ସୁପର୍ଣ୍ଣାର ସମସ୍ତ ଈର୍ଷା ଓ ଅସୂୟା ସତ୍ତ୍ୱେ ଅତ୍ୟଧିକ ଭରସା ମଧ୍ୟ ରହିଥିଲା ତା' ଉପରେ। ବିଶ୍ୱାସ ଥିଲା ତା'ର ସେବାପରାୟଣ ସ୍ୱଭାବ ଓ କର୍ତ୍ତବ୍ୟନିଷ୍ଠା ଉପରେ। ତେଣୁ ସୁପର୍ଣ୍ଣା

ତା'ର ପ୍ରଥମ ସନ୍ତାନର ଜନ୍ମ ବେଳକୁ ଅପର୍ଣ୍ଣାକୁ ହିଁ ଲୋଡ଼ିଥିଲା। ଅପର୍ଣ୍ଣା ତା' ପାଖରେ ରହିଲେ ତା'ର କିମ୍ବା ତା' ପିଲାର ସେବା ଯତ୍ନରେ ଆଦୌ ତ୍ରୁଟି ରହିବ ନାହିଁ। ଅସୁସ୍ଥା ବୋଉକୁ ବାପାଙ୍କ ହେପାଜତରେ ଛାଡ଼ିଦେଇ ଅପର୍ଣ୍ଣା ଆସିଥିଲା ବଡ଼ଭଉଣୀର ସେବା କରିବାକୁ। ସିଜରିଆନ୍ ହୋଇ ପୁଅଟିଏ ହେଲା ସୁପର୍ଣ୍ଣାର। ପିଲାଟି ବେଶ୍ ସୁସ୍ଥ ସବଳ ହୋଇଥିଲା। ସୁପର୍ଣ୍ଣା ମଧ ପ୍ରାୟ ଠିକ୍‌ଠାକ୍ ଥିଲା। ବିଛଣାରୁ ଉଠିବାକୁ ସୁପର୍ଣ୍ଣା ଚାହୁଁନଥିଲା। ଛୁଆକୁ କ୍ଷୀର ଦେବାକୁ ମଧ ଇଚ୍ଛା କରୁନଥିଲା ସେ। ଅପର୍ଣ୍ଣା ସାରା କ୍ଷଣ ତା' ପାଖରେ ରହି ତା' କଥା ଓ ତା' ପୁଅର କଥା ବୁଝୁଥିଲା। ହସ୍‌ପିଟାଲର ଷ୍ଟାଫ୍‌ଙ୍କ ଉପରେ ସୁପର୍ଣ୍ଣାର ଭରସା ନଥିଲା ନା ଅପର୍ଣ୍ଣାକୁ ଦିନରାତି ଖଟାଇବାରେ ସେ ଆନନ୍ଦ ପାଉଥିଲା ? ନର୍ସିଂହୋମ୍‌ରୁ ଘରକୁ ଆସିବା ପରେ ମଧ ଅପର୍ଣ୍ଣାକୁ ଛାଡ଼ିନଥିଲା ସୁପର୍ଣ୍ଣା। ଶାଶୂଘରେ କାହାକୁ ହେଲେ ବିଶ୍ୱାସ କରି ପାରୁନଥିଲା ସେ। ତେଣୁ ସେମାନେ ସ୍ୱତଃପ୍ରବୃତ୍ତ ଭାବରେ ପୁଅର ଦାୟିତ୍ୱ ନେବାକୁ ଚାହିଁଲେ ମଧ ଶାଶୂଘରର କୌଣସି ସଦସ୍ୟଙ୍କୁ ପୁଅର ଦାୟିତ୍ୱ ନ ଦେଇ ଅପର୍ଣ୍ଣାକୁ ହିଁ ଦେଇଦେଇଥିଲା ପୁଅର ସମସ୍ତ ଦାୟିତ୍ୱ।

ବୋଉ ପାଇଁ ଅପର୍ଣ୍ଣା ଚିନ୍ତିତ ଥିଲେ ବି ନିରୁପାୟ ଥିଲା ସେ। ସୁପର୍ଣ୍ଣାର ଇଚ୍ଛା ହିଁ ସବୁବେଳେ ପ୍ରାଧାନ୍ୟ ପାଇ ଆସିଛି। ବାପା ନୂଆ ନାତିଟିକୁ ଆସି ଦେଖିଯିବାବେଳେ ଅପର୍ଣ୍ଣାକୁ କହି ଯାଇଛନ୍ତି ବୋଉ ପାଇଁ ବ୍ୟସ୍ତ ନ ହେବାକୁ। ଲୋକଟିଏ ସେ ରଖିଛନ୍ତି ଘରର ସବୁ କାମ କରିବା ସହିତ ବୋଉର ପାଖେ ପାଖେ ରହିବାକୁ। ବିଶ୍ୱାସୀ ଏବଂ ସତ୍ ଲୋକଟିଏ। ତେଣୁ ସୁପର୍ଣ୍ଣା ଚାହୁଁଥିବା ଯାଏ ଅପର୍ଣ୍ଣା ତା' ପାଖରେ ଥାଉ।

ସୁପର୍ଣ୍ଣା ଚାହୁଁଥିବା ଯାଏ ଅପର୍ଣ୍ଣା ରହିବ ତା' ପାଖରେ। ଅପର୍ଣ୍ଣାର କିଛି କହିବାର ନାହିଁ ଏଥିରେ। ତା'ର ଚାହିଁବା ନ ଚାହିଁବା ଉପରେ କିଛି ଯାଏ ଆସେ ନାହିଁ। ସୁପର୍ଣ୍ଣାର ପାଖାପାଖି ରହିବା ଯେ କି କଷ୍ଟକର କଥା – ତାହା ଭୁକ୍ତଭୋଗୀ ହିଁ କହିପାରିବ। ଅବଶ୍ୟ ନୂଆ ଛୁଆଟିର ଆବିର୍ଭାବରେ ଅନେକ ଦୁଃଖ ଭୁଲିଯାଇଛି ସେ। ଖେଳନା କଣ୍ଢେଇଟିଏ ସତେ ଅବା ମିଳିଯାଇଛି ତାକୁ। ତାକୁ ଇ ନେଇ ମାତି ରହିଥାଏ ସେ।

ଅପର୍ଣ୍ଣା ଆସି ଅନିମେଷଙ୍କ ଘରେ ରହିବା ପରେ ତାଙ୍କ ଘରର ପରିବେଶ ବଦଳିଗଲା। ସୁପର୍ଣ୍ଣା ଖୁବ୍ କର୍ମକୁଣ୍ଠ ସ୍ୱଭାବର। ତା'ର ରୁକ୍ଷ କଥାବାର୍ତ୍ତା ତଥା ଆତ୍ମକୈନ୍ଦ୍ରିକ ସ୍ୱାର୍ଥପର ମନୋଭାବ ଯୋଗୁଁ ଘରେ ସବୁବେଳେ ଏକ ଅସ୍ୱସ୍ତିକର ବାତାବରଣ ରହୁଥିଲା। ଶାଶୂ ତାଙ୍କର ସୋସିଆଲ୍ ଓ୍ୱାର୍କ ନେଇ ଯେତେ ପର୍ଯ୍ୟନ୍ତ ସମ୍ଭବ ବାହାରେ ବାହାରେ ରହୁଥିଲେ। ଘରେ ରହିଲେ ତ ମୁହଁଖୋର ଉଗ୍ର ସ୍ୱଭାବର ବୋହୂଟି ସହିତ ଉଚ୍ଚବାଚ ହେବ ହିଁ ହେବ। ତେଣୁ ବାହାରେ ରହିବା ହିଁ ନିରାପଦ। ଶ୍ୱଶୁର ମଧ କୋଉ କଥାରେ ମୁଣ୍ଡ ପୂରାଉ ନଥିଲେ। ଚାକର ବାକର ତାଙ୍କ ମନଇଚ୍ଛାରେ ଘର ଚଳାଉଥିଲେ। ଅପର୍ଣ୍ଣା

ପ୍ରଥମେ ଘରଗୁଡ଼ିକର ପରିଚ୍ଛନ୍ନତା ପ୍ରତି ଦୃଷ୍ଟି ଦେଲା। ଅସଜଡ଼ା ପରିବେଶକୁ ତା'ର ନିପୁଣ ହାତର ସ୍ପର୍ଶରେ ସୁନ୍ଦର ଭାବରେ ସଜାଡ଼ି ଦେଲା। କାମ କରିବା ଲୋକମାନଙ୍କ ପ୍ରତି ତା'ର ସଦିଚ୍ଛା ପୂର୍ଣ୍ଣ ବ୍ୟବହାରରେ ସମସ୍ତେ ତା'ର ଅନୁଗତ ହୋଇଯାଇଥିଲେ। ତା'ର ନିର୍ଦ୍ଦେଶ ମତେ ସବୁକିଛି କରିବା ପାଇଁ ପ୍ରସ୍ତୁତ ଥିଲେ ସମସ୍ତେ। ରୋଷେଇଘର ପ୍ରତି ମଧ୍ୟ ତା'ର ନଜର ପଡ଼ିଲା। କାମ କରିବା ଲୋକମାନଙ୍କ ସହିତ ମିଶି ସେ ରୋଷେଇ ଘରର ମଧ୍ୟ ରୂପାନ୍ତର କରିଦେଲା। ସବୁକିଛି ସଫା ସୁତୁରା, ଚକ୍‌ଚକ୍। ସବୁଦିନ ଭିନ୍ନ ଭିନ୍ନ ପ୍ରକାରର ଜଳଖିଆ ପ୍ରସ୍ତୁତ ହେଲା। ଭାତ ତରକାରୀର ସ୍ୱାଦ ମଧ୍ୟ ବଦଳିଗଲା। ପ୍ରକୃତ ସ୍ୱାଦ ତ ଖାଦ୍ୟରେ ନଥାଏ; ସେଇ ଖାଦ୍ୟ ପ୍ରସ୍ତୁତ କରିଥିବା ଲୋକଟିର ମନୋଭାବରେ ହିଁ ରହିଥାଏ। ଅପର୍ଣ୍ଣାର ସ୍ନେହ ସ୍ପର୍ଶରେ ଅନିମେଷଙ୍କ ଘରର ସମଗ୍ର ପରିବେଶ ରୂପାନ୍ତରିତ ହୋଇଯାଇଥିଲା।

ସୁପର୍ଣ୍ଣା ପ୍ରାୟ ସୁସ୍ଥ ହୋଇଯାଇଥିଲା। ନିଜେ ନିଜେ ଉଠି ଚଲାବୁଲା କରି ପାରୁଥିଲା। ତା'ର ଅଗୋଚରରେ ଅନିମେଷଙ୍କ ପରିବାର ମଧ୍ୟରେ ଅପର୍ଣ୍ଣା ଯେ ଏକ ସ୍ୱତନ୍ତ୍ର ସ୍ଥାନ ଦଖଲ କରିସାରିଲାଣି ଏକଥା ହୃଦୟଙ୍ଗମ କରି ସେ ଈର୍ଷାରେ ନୀଳ ପଡ଼ିଯାଇଥିଲା। ଅନିମେଷଙ୍କୁ ସିନା ସେ ନଜରରେ ରଖିଥିଲା, ଘରର ଅନ୍ୟ ସମସ୍ତଙ୍କ ହୃଦୟରେ ସେ କ'ଣ ବାଡ଼ବତା ଦେଇପାରିବ ? ଯୋଉ ଶାଶୂ ତା' ସହିତ ହସିକି ପଦେ କଥା କହନ୍ତି ନାହିଁ, ଅପର୍ଣ୍ଣା ପାଖରେ ବସି ପ୍ରିୟବାନ୍ଧବୀ ଭଳି ଘଣ୍ଟା ଘଣ୍ଟା ଗପନ୍ତି। ଶ୍ୱଶୁର ମଧ୍ୟ ତା' ଉପରେ ଅଧିକାର ସାବ୍ୟସ୍ତ କରି କହନ୍ତି, "ମା' ଅପୁ, ମୋ ପାଇଁ ସ୍ପେଶାଲ୍ ଚା' କପେ କରିଦେବୁ ?" କିମ୍ବା "ମୋ ତୁଳସୀ ମାଳିଟା ଛିଣ୍ଡି ଯାଇଛି, ଗୁନ୍ଥି ଦେ ତ !" ଚାକର ଚାକରାଣୀମାନେ ଆସି ପଚାରିବେ, "ସାନମା', ପରିବା କ'ଣ କଟା ହେବ ?" ନଚେତ୍ "ବଜାରରୁ କ'ଣ ଆସିବ ତାଲିକା କରିଦିଅ।" ଅପର୍ଣ୍ଣାକୁ 'ସାନମା' ବୋଲି ଡାକିବାକୁ ଏମାନଙ୍କୁ କିଏ କହିଛି ? ଅନିମେଷ ଥଟ୍ଟାରେ ତାକୁ 'ସାନରାଣୀ' ଡାକିବା ଶୁଣି ଏମାନେ ବି ଅପର୍ଣ୍ଣାକୁ 'ସାନମା' କରିଦେଲେ ନା କ'ଣ ? ତା' ଶାଶୂଙ୍କୁ ସମସ୍ତେ 'ମା' ବୋଲି ଡାକନ୍ତି। ସୁପର୍ଣ୍ଣାକୁ 'ବୋହୂମା' ବୋଲି ଡାକନ୍ତି। କିନ୍ତୁ ଅପର୍ଣ୍ଣାକୁ 'ସାନମା' ଡାକିବାରେ କି ଯଥାର୍ଥତା ଅଛି ? ନା - ତାକୁ ଶୀଘ୍ର ବିଦା କରିବାକୁ ପଡ଼ିବ। ଅପର୍ଣ୍ଣା ଅଛି ବୋଲି ତ ତା' ପୁଅ ବି ତାକୁ ମାଆ ବୋଲି ଚିହ୍ନୁନାହିଁ।

ସୁପର୍ଣ୍ଣା ଯାହା ଭାବେ - ତାକୁ କାର୍ଯ୍ୟକାରୀ କରିବାକୁ ଆଦୌ ବିଳମ୍ବ କରେ ନାହିଁ। ପୁଅର ଯତ୍ନ ନେବା ପାଇଁ ଜଣେ ଆୟା ଯୋଗାଡ଼ କରିବା ପରେ ଅପର୍ଣ୍ଣାକୁ ପଠାଇଦେଲା ଘରକୁ। ସମସ୍ତେ ପ୍ରତିବାଦ କରୁଥିଲେ, ଆୟା ଆସିଲା ତ କ'ଣ ହେଲା ? ଅପର୍ଣ୍ଣା ଏଥର ବି' ଚାରିଦିନ ଦାୟିତ୍ୱମୁକ୍ତ ହୋଇ ଆରାମ କରୁ। ଏତେ ଦିନ ରହିଲା

ଏଠି। ସୁପର୍ଣ୍ଣା ଓ ତା'ର ପୁଅ ସହିତ ସମଗ୍ର ପରିବାର ପାଇଁ କେତେ କ'ଣ କରିଛି ସେ। ତାକୁ କ'ଣ ସେମିତି ଖାଲି ଖାଲି ପଠେଇଦେବେ ଘରକୁ ? ସୁପର୍ଣ୍ଣା କାହା କଥା ଶୁଣିଲା ନାହିଁ। ଅନିମେଷ ଘରେ ନଥିବାବେଳେ ଡ୍ରାଇଭର ସହିତ ଗାଡ଼ିରେ ତାକୁ ପଠେଇଦେଲା ବାପଘରକୁ। କାହିଁକି ସେ ଆଉ ରହିବ ଏଠି ? ଯୋଉଥିପାଇଁ ସେ ଆସିଥିଲା – ସେ କାମ ତ ସରିଲାଣି। ବାପା ବୋଉ ତେଣେ ହଇରାଣ ହେଉଥିବେ ଯେ ! ଅପର୍ଣ୍ଣା ବାପା ବୋଉଙ୍କ ପାଖକୁ ଫେରି ଆସିବାର ସାତଦିନ ହୋଇନଥିଲା, ଅନିମେଷ ଆସି ପହଞ୍ଚିଲେ ତାକୁ ନେବା ପାଇଁ। ଆୟାର କାମ ମନକୁ ନ ଯିବାରୁ ତାକୁ ଚାରିଦିନରେ ବାହାର କରିଦେଲା ସୁପର୍ଣ୍ଣା। ଜିଦ୍‌ରେ ପୁଅର ସବୁ କାମ ନିଜେ କରି ନିଜର ଦେହ ଖରାପ କରିବା ସହିତ ପୁଅର ମଧ ଅବସ୍ଥା ସାଂଘାତିକ ହୋଇଯାଇଛି। ସୁପର୍ଣ୍ଣାର ପୁଅ ଆଖି ଖୋଲିବା ପାଖରୁ ଯେଉଁ ମୁହଁଟିକୁ ସବୁଠାରୁ ଆପଣାର ମନେ କରିଆସିଛି – ସେ ମୁହଁଟିକୁ ସେ ହୁଏତ ଖୋଜୁଛି। କାନ୍ଦି କାନ୍ଦି ତା'ର ଅବସ୍ଥା ଖରାପ। ଅପର୍ଣ୍ଣାକୁ ଯେମିତି ହେଲେ ବି ଯିବାକୁ ପଡ଼ିବ। ପୁଅ କଥା ଭାବି ଆଖିରେ ଲୁହ ଛଳକି ଆସିଲେ ମଧ ଅପର୍ଣ୍ଣା ମନରେ ଖୁବ୍ ଅଭିମାନ ହେଲା। ଏମାନେ ତାକୁ କ'ଣ ଭାବନ୍ତି ? ସିଏ କ'ଣ ଗୋଟେ ଚାବିଦିଆ କଣ୍ଢେଇ ନା ରୋବଟ୍ ହୋଇଛି ଯେ ତାକୁ ଯିଏ ଯେମିତି ଚାହିଁବ – ସେହିଭଳି ବ୍ୟବହାର କରିପାରିବ ? ଦରକାର ହେଲେ ବଡ଼ ସରାଗରେ ନେଇଯିବେ – କାମ ସରିଗଲେ ପୁଣି ତାକୁ ଫୋପାଡ଼ି ଦେଇ ଯିବେ ! କିନ୍ତୁ କାହା ପାଖରେ ଅଭିଯୋଗ କରିବ ସିଏ ? ବାପା ବୋଉ ତ ବଡ଼ଝିଅର କଥାକୁ ସବୁବେଳେ ଆଜ୍ଞା ଅବଧାନ କରି ରହିଥାଆନ୍ତି। ପୁଣି ବଡ଼ଲୋକ ଜ୍ୱାଇଁ ଆସି ଦୁଆରେ ପହଞ୍ଚି ତାଙ୍କୁ କୃତାର୍ଥ କରିଛନ୍ତି। ଅପର୍ଣ୍ଣାର ଏଠି ଅବା କି କାମ ଅଛି ଯେ ଯିବାକୁ ମନା କରିବ ? ବାଧ୍ୟ ହୋଇ ସେ ଅନିମେଷଙ୍କ ସାଙ୍ଗରେ ଗଲା।

ତାଙ୍କ ଘରେ ପହଞ୍ଚି ପୁଣି ଥରେ ସମସ୍ତ ଦାୟିତ୍ୱ ହାତକୁ ନେଲା। ଦି' ଦିନରେ ସବୁ ସୁବ୍ୟବସ୍ଥିତ ହୋଇଗଲା। ପୁଅର ଦେହ ଭଲ ହୋଇଗଲା। ସୁପର୍ଣ୍ଣାର ଜ୍ୱର ଛାଡ଼ିଗଲା। ସବୁ ସଜାଡ଼ି ହୋଇ ଆସିଲା ବେଳକୁ ସୁପର୍ଣ୍ଣା ଯେ ଅପର୍ଣ୍ଣା ସହିତ ଏଭଳି ଶତ୍ରୁତା କରିବସିବ ଏକଥା କେହି ସ୍ୱପ୍ନରେ ବି ଭାବିନଥିଲେ। ବାଥ୍‌ରୁମ୍‌ରେ ଗୋଡ଼ ଖସିଯାଇ ସୁପର୍ଣ୍ଣା ପଡ଼ିଗଲା। ଖୁବ୍ ଜୋର୍‌ରେ ମୁଣ୍ଡ ବାଡ଼େଇ ହୋଇ ହାମରେଜ୍ ହୋଇଗଲା ସେଇଥିରେ ସେ ଚାଲିଗଲା। ଯିବା ପୂର୍ବରୁ ଥରଟିଏ ବହୁତ କଷ୍ଟରେ ଆଖି ଖୋଲିଥିଲା ସେ ଏବଂ ଅସ୍ଫୁଟ କଣ୍ଠରେ କହିଥିଲା, "ଅପୁ... ମୋ ପୁ..." ଅଧା କଥା ଆଉ ସମ୍ପୂର୍ଣ୍ଣ କରିପାରିନଥିଲା ସୁପର୍ଣ୍ଣା। ତା'ର ଅତି ନିକଟରେ ଠିଆ ହୋଇଥିବା ଅପର୍ଣ୍ଣା କାଠ ପାଲଟି ଯାଇଥିଲା ଘଟଣାର ଆକସ୍ମିକତାରେ। ଦୁଷ୍ଟ ହେଉ, ମୁଖରା, ହେଉ, ସ୍ୱାର୍ଥପର ହେଉ, ସୁପର୍ଣ୍ଣା ତା'ର ନିଜର ବଡ଼ଭଉଣୀ। ତାକୁ କଷ୍ଟ ଦିଏ, ଅପମାନିତ କରେ ବୋଲି ସେ

କେବେ ତା'ର ମୃତ୍ୟୁ କାମନା କରିନଥିଲା। ମରିଯିବା ପରେ ମଧ ଅପର୍ଣ୍ଣାକୁ ଖାଇ ଭିତରକୁ ଠେଲିଦେଇ ଗଲା ସିଏ !

ସୁପର୍ଣ୍ଣାର ମୃତ୍ୟୁ ଖବର ପାଇ ବାପା ତୁରନ୍ତ ଚାଲି ଆସିଥିଲେ। ପ୍ରଥମ ସନ୍ତାନର ମୃତ୍ୟୁଶୋକରେ ମୁହ୍ୟମାନ ହୋଇପଡ଼ିଥିଲେ ସେ। କିନ୍ତୁ ଦୁର୍ଘଟଣା ତ ଦୁର୍ଘଟଣା। ସେଥିପାଇଁ କାହାକୁ ମଧ ଦୋଷ ଦେଇନଥିଲେ ଈଶ୍ୱରଙ୍କ ବ୍ୟତୀତ। ବୋଉକୁ ପ୍ରଥମେ ଜଣା ହୋଇନଥିଲା ସୁପର୍ଣ୍ଣାର ଚାଲିଯିବା କଥା। କିନ୍ତୁ ଜଣାଇବାକୁ ତ ହେବ। ଜାଣିବା ପରେ ପୂରାପୂରି ଶଯ୍ୟାଶାୟୀ ହୋଇଗଲା ସେ। ସୁପର୍ଣ୍ଣାର ଶୁଦ୍ଧିଘରକୁ ବାପା ଏକୁଟିଆ ଆସିଥିଲେ। ଶୁଦ୍ଧିକ୍ରିୟା ସରିବା ପରେ ଅପର୍ଣ୍ଣାକୁ ସାଙ୍ଗରେ ନେଇଯିବାକୁ ଚାହିଁଲେ ସେ। ଅନିମେଷଙ୍କ ଘରେ କିନ୍ତୁ ସମସ୍ତେ ଚାହୁଁଥିଲେ ଅପର୍ଣ୍ଣା ସବୁଦିନ ପାଇଁ ରହିଯାଉ ସେଇଠି। ସୁପର୍ଣ୍ଣାର ଶୂନ୍ୟସ୍ଥାନ ପୂରଣ କରିବା ପାଇଁ ତା'ଠାରୁ ଆଉ ଅଧିକ ଯୋଗ୍ୟତା କାହାର ଥିଲା ? ଘରର ବୋହୂ ନ ହୋଇ ମଧ ବୋହୂର ସମସ୍ତ କର୍ତ୍ତବ୍ୟ ସେ କରୁଥିଲା। ପୁଅର ମାଆଠାରୁ ବଳି ମାଆ ସେ ହୋଇଯାଇଥିଲା। ଅନିମେଷ ବିପତ୍ନୀକ ହେଲେ ମଧ ପାତ୍ର ହିସାବରେ କିଛି ମନ୍ଦ ନଥିଲେ। ଅପର୍ଣ୍ଣା କାନରେ ଅନ୍ୟମାନଙ୍କର ଆଲୋଚନା କିଛି କିଛି ପଡୁଥିଲା। ଖୁବ୍ ଅସ୍ୱସ୍ତିବୋଧ କରୁଥିଲା ସେ। ସେଇଥିପାଇଁ ବାପାଙ୍କ ସାଙ୍ଗରେ ଯିବାକୁ ସେ ତତ୍ପର ହୋଇ ବାହାରି ପଡ଼ିଲା। ଆସିବା ପୂର୍ବରୁ ତା' କୋଳରେ ସୁପର୍ଣ୍ଣାର ପୁଅକୁ ଦେଇ ଅନିମେଷଙ୍କ ବୋଉ କହିଥିଲେ, "ଯାଉଛୁ ଯଦି ତୋ ପୁଅକୁ ନେଇ ଯା। ତୋ ଛଡ଼ା ତ ସେ ଆଉ କାହା ପାଖରେ ବି ରହୁନାହିଁ। ଆମେ ତାକୁ କେମିତି ସମ୍ଭାଳିବୁ ଏଠି ? ତା' ମାଆ ବି ତ ତୋତେ ହିଁ ଦେଇଯାଇଛି ତାକୁ।"

କୁନି ପୁତୁରାଟିକୁ ଘରକୁ ଆଣି ଖୁବ୍ ଯତ୍ନରେ ରଖିଥିଲା ଅପର୍ଣ୍ଣା। ମାଆର ଅଭାବ ତାକୁ ଜାଣିବାକୁ ଦେଇନଥିଲା। ପୁଅକୁ ଦେଖିବାକୁ କେବେ କେବେ ଅନିମେଷ ଆସୁଥିଲେ। ସାଙ୍ଗରେ ନେଇ ଆସୁଥିଲେ ପୁଅର ଦରକାରୀ ଜିନିଷ ସବୁ। ପୋଷାକପତ୍ରଠାରୁ ଖେଳନା ଯାଏ। ସମ୍ଭବ ହେଉଥିଲେ ପୁଅର ଖାଦ୍ୟ ମଧ ସେ ଯୋଗାଇ ଦିଅନ୍ତେ। ମାତ୍ର ସେମିତି କଲେ ତାଙ୍କର ଶାଶୂ ଶ୍ୱଶୁର ମନଦୁଃଖ କରିବେ। ଅନିମେଷଙ୍କର ପୁଅ ହେଲେ ସେମାନଙ୍କର ମଧ ପ୍ରଥମ ନାତି ସିଏ। ସୁପର୍ଣ୍ଣାର ଅବର୍ତ୍ତମାନରେ ନାତି 'ରିତୁଲ୍' ସହିତ ଖୁବ୍ ବେଶି ସମ୍ପୃକ୍ତ ହୋଇଯାଇଥିଲେ ସେମାନେ। ନାତିର କାମ କରିବେ ବୋଲି କନ୍ୟା ବିୟୋଗଜନିତ ଶୋକାଚ୍ଛନ୍ନ ଅବସ୍ଥାରୁ ନିଜକୁ ମୁକୁଳାଇ ଆଣିଥିଲେ ଅପର୍ଣ୍ଣାର ବୋଉ। ମନ ଦୃଢ଼ କରି ବିଛଣାରୁ ତଳକୁ ଆସିବାରେ ସଫଳ ହେଲେ। ସୁପର୍ଣ୍ଣା ତା'ର ଜୀବଦ୍ଦଶାରେ କାହାକୁ କେବେ ଟିକିଏ ଖୁସି ଦେଇଥିଲା କି ନାହିଁ, ମୃତ୍ୟୁ ପୂର୍ବରୁ କିନ୍ତୁ ସମସ୍ତଙ୍କ ପାଇଁ ସୁନ୍ଦର ଉପହାରଟିଏ ରଖିଦେଇ ଗଲା। ସବୁକିଛି ଦୁଃଖ, ଶୋକ, ସନ୍ତାପ ପଲକ ମାତ୍ରକେ

ଅନ୍ତର୍ହିତ ହୋଇଯାଉଥିଲା 'ରିତୁଲ୍'ର ସୁନ୍ଦର ତଥା ସୁକୁମାର ମୁହଁଟିକୁ ଚାହିଁଦେଲେ। ଅନିମେଷଙ୍କର ବାପା ବୋଉ ମଧ୍ୟ ନାତିକୁ ଦେଖିବାକୁ ପ୍ରାୟ ଆସୁଥିଲେ ନିୟମିତ। ଆସିଲେ ସେମାନେ ସହଜରେ ଯାଉନଥିଲେ। କେବଳ ନାତିର ଆକର୍ଷଣ ନଥିଲା, ଅପର୍ଣ୍ଣା ପ୍ରତି ମଧ୍ୟ ଖୁବ୍ ସ୍ନେହ ଥିଲା ସେମାନଙ୍କର। ତାକୁ ନେଇ ସେମାନଙ୍କର ଯାହା ପ୍ରତ୍ୟାଶା ରହିଛି – ସେ କଥା ସିଏ ବୁଝିପାରୁନଥିଲା ତା' ନୁହେଁ। ସେଇଥିପାଇଁ ତ ଅନିମେଷଙ୍କ ଘରେ ରହିବା ସମୟରେ ଅପର୍ଣ୍ଣା ଯେମିତି ସହଜ ସ୍ୱଚ୍ଛନ୍ଦ ଭାବରେ ସେମାନଙ୍କ ସହିତ ମିଶୁଥିଲା – ଏବେ ଆଉ ସେଭଳି ସ୍ୱଚ୍ଛନ୍ଦତା ସେ ଅନୁଭବ କରିପାରୁ ନଥିଲା। ବରଂ ଅସ୍ୱସ୍ତି ଅନୁଭବ କରୁଥିଲା। ଅନିମେଷଙ୍କୁ ସେ ବହୁତ ଶ୍ରଦ୍ଧା କରେ, ସମ୍ମାନ କରେ। ତାକୁ ନେଇ ସେ ଯେଉଁ ଥଟ୍ଟା ମଜା କରୁଥିଲେ ସୁପର୍ଣ୍ଣା ଥିଲାବେଳେ ସେ ସବୁ ସେ ଖୁସିରେ ବରଦାସ୍ତ କରୁଥିଲା। ମାତ୍ର ତାଙ୍କୁ ନେଇ ଆଉ କିଛି ଭାବି ପାରୁନଥିଲା। ସୁପର୍ଣ୍ଣା ଚାଲିଯିବା ପରେ ଅନିମେଷ ଟିକେ ଗମ୍ଭୀର ହୋଇଯାଇଛନ୍ତି। ଏବେ ଆଉ ତାକୁ ଥଟ୍ଟା କରନ୍ତି ନାହିଁ। ଅପର୍ଣ୍ଣା କିନ୍ତୁ ତାଙ୍କୁ ଦେଖିଲେ ଏବେ ସଂକୁଚିତ ହୋଇଯାଏ।

ରିତୁଲର ହସକାନ୍ଦ, ଭୋକ, ଶୋଷ, ଅଭିଯୋଗ, ଅଭିମାନ ସବୁକିଛି ବୁଝିପାରୁଥିଲା ଅପର୍ଣ୍ଣା। ପୁଅ ପେଟେଇଲା, ଆଣ୍ଠେଇଲା, ଏଣେତେଣେ ଘରସାରା ବୁଲିଲା, ଜିନିଷ ପତ୍ର ଅସଜଡ଼ା କଲା, ଭାଙ୍ଗିଲା, ଏଣୁତେଣୁ ଜିନିଷ ନେଇ ପାଟିରେ ପୂରେଇଲା। ସବୁ କଥାରେ ଅପର୍ଣ୍ଣାର ତୀକ୍ଷ୍ଣ ଦୃଷ୍ଟି। ରିତୁଲର ଟିକିଏ କ'ଣ ଅସୁବିଧା ହୋଇଗଲେ ଅପର୍ଣ୍ଣା ଖୁବ୍ ବ୍ୟାକୁଳ ହୋଇଉଠୁଥିଲା। କ୍ରମେ ସେ ଭୁଲିଯିବାକୁ ବସିଲା ଯେ ରିତୁଲକୁ ସେ ଜନ୍ମ ଦେଇନାହିଁ ବୋଲି। ପୁଅକୁ କୋଳରେ ଧରି ଥାପୁଡ଼ାଇ ଥାପୁଡ଼ାଇ ଶୁଆଇବାବେଳେ ତା'ର କୁମାରୀ ହୃଦୟଟି ମାତୃତ୍ୱର ଅନାବିଳ ଆନନ୍ଦର ମାଧୁର୍ଯ୍ୟରେ ଉଦ୍‌ଭାସିତ ହୋଇଉଠେ।

ହଠାତ୍ ରିତୁଲ୍‌କୁ ଜ୍ୱର ହୋଇଗଲା। ତିନି ଚାରିଦିନ ଯାଏ ଜ୍ୱର ଛାଡ଼ିଲା ନାହିଁ। ଅପର୍ଣ୍ଣା ଖୁବ୍ ବିବ୍ରତ ହୋଇପଡ଼ିଲା। ଖିଆପିଆ ଭୁଲି ଦିନରାତି ପୁଅକୁ ଆବୋରି ପଡ଼ି ରହିଲା। ବାପା କି ବୋଉ ଯେତେ କହିଲେ ମଧ୍ୟ ମୁହୂର୍ତ୍ତକ ପାଇଁ ରିତୁଲ୍‌କୁ ଛାଡ଼ି ସେ କୁଆଡ଼େ ଯାଉ ନଥିଲା। ତା' ନିଜର ବି ଦେହ ଖରାପ ହୋଇଯିବ – ଏକଥା ସେ ଭାବୁନଥିଲା। ବରଂ ଯଦି ସମ୍ଭବ ହୁଅନ୍ତା ରିତୁଲର ସବୁତକ ରୋଗକଷ୍ଟ ସେ ନିଜ ଭିତରକୁ ନେଇ ଆସନ୍ତା। ବିଚରା ଅବୋଧ ଶିଶୁଟି – ସିଏ କ'ଣ ତା' କଷ୍ଟର କଥା ମୁହଁ ଖୋଲି କହିପାରୁଛି। କଷ୍ଟ ହେଲେ କାନ୍ଦି କାନ୍ଦି ଅପର୍ଣ୍ଣାକୁ ହିଁ ଜାବୁଡ଼ି ଧରୁଛି – ସିଏ ହିଁ ତା'ର ପରମ ଆଶ୍ରୟ। ଖବର ପାଇ ଅନିମେଷ ଆସିଥିଲେ ଜଣେ ଡାକ୍ତରଙ୍କୁ ସାଙ୍ଗରେ ଧରି। ପୁଅକୁ ଭଲ ଭାବରେ ପରୀକ୍ଷା କରି 'ଭାଇରାଲ୍ ଫିଭର୍' ବୋଲି ଡାକ୍ତର କହିଲେ। ଔଷଧପତ୍ର ତଥା ପରିଚର୍ଯ୍ୟା ସମ୍ପର୍କରେ କିଛି ଉପଦେଶ ଦେଇ ଡାକ୍ତର ଚାଲିଗଲେ।

ରିତୁଲର ଜ୍ୱରତପ୍ତ ମୁହଁଟିକୁ ଚାହିଁ ଅନିମେଶ ଖୁବ୍ ବ୍ୟାକୁଳତା ଅନୁଭବ କରୁଥିଲେ। ଅସୁସ୍ଥ ପୁଅ ପାଖରେ ସବୁ ସମୟ ରହି ପାରୁନାହାନ୍ତି ବୋଲି ତାଙ୍କୁ ବହୁତ ଖରାପ ଲାଗୁଥିଲା। ତାଙ୍କ ବାପା ବୋଉ ମଧ ବାରମ୍ୱାର ଆସି ନାତିକୁ ଦେଖିଯାଉଥିଲେ ବି ସବୁବେଳେ ଚିନ୍ତିତ ରହୁଥିଲେ। ଯଥାଶୀଘ୍ର ଏହାର ଏକ ବିହିତ ପ୍ରତିକାର କରିବାକୁ ସମସ୍ତେ ଏକମତ ହୋଇଥିଲେ। ଅପର୍ଣ୍ଣାର ଆନ୍ତରିକ ସେବା ଯତ୍ନ ତଥା ଡାକ୍ତରଙ୍କର ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ରିତୁଲ୍ ସୁସ୍ଥ ହୋଇଗଲା। ଦେହ ଭଲ ହୋଇଗଲା ପରେ ମଧ ଅନିମେଷଙ୍କ ଅନୁରୋଧରେ ଡାକ୍ତର ଆସି ନିୟମିତ ଭାବରେ ରିତୁଲକୁ ଦେଖିଯାଉଥିଲେ।

ବିଧିବଦ୍ଧ ଭାବରେ ଅନିମେଷଙ୍କ ବାପା ବୋଉ ଦିନେ ଅପର୍ଣ୍ଣାକୁ ବୋହୂ କରି ନେବା ପାଇଁ ତା'ର ବାପାବୋଉଙ୍କ ନିକଟରେ ପ୍ରସ୍ତାବ ଦେଇଥିଲେ। ଏମିତି ଏକ ପ୍ରସ୍ତାବ ପାଇଁ ଯେମିତି ଅପେକ୍ଷା କରି ରହିଥିଲେ ଅପର୍ଣ୍ଣାର ବାପା ବୋଉ। ତୁରନ୍ତ ସମ୍ମତି ଜଣାଇଦେଲେ। ଅପର୍ଣ୍ଣାକୁ ଥରଟିଏ ପଚାରିବାର ଆବଶ୍ୟକତା ଅନୁଭବ କଲେ ନାହିଁ। ସିଏ କ'ଣ କହିବ ଯେ ? ଏ ଯାଏଁ କୋଉ କଥାରେ ସେ ଅବାଧ ହୋଇଛି ନା କ'ଣ ? ସିଏ ତ ଆମର ସୁନାଝିଅ। ପୁଣି ଅନିମେଷ କ'ଣ ପାତ୍ର ହିସାବରେ କିଛି ଖରାପ ? ସେ ଅପର୍ଣ୍ଣାକୁ ବହୁତ ପସନ୍ଦ କରନ୍ତି। ଆଗରୁ ଯାହା ଥିଲା - ଏବେ ତାଙ୍କ ପୁଅର ଦାୟିତ୍ୱ ନେବା ପାଖରୁ ଅପର୍ଣ୍ଣା ବ୍ୟତୀତ ଆଉ କାହାକୁ ସେ କାହିଁକି ବାହା ହେବେ ? ଅପର୍ଣ୍ଣାକୁ ପୁଣି ଅନିମେଷଙ୍କ ଘରେ ସମସ୍ତେ ଭଲପାଆନ୍ତି। ସେଇଠି ଯେ ସେ ଖୁବ୍ ଭଲରେ ରହିବ - ଏଥିରେ ସନ୍ଦେହ କ'ଣ ?

ଅପର୍ଣ୍ଣାର ବାହାଘର କଥା ନେଇ ବାପା ବୋଉ ଖୁବ୍ ଉତ୍ସାହିତ ହୋଇପଡ଼ିଥିଲେ। ବଡ଼ଝିଅ ମରିବାର ବର୍ଷ ପୂରିବାକୁ ସେମାନେ ଅପେକ୍ଷା କରିଥିଲେ। ପ୍ରସ୍ତୁତି କିନ୍ତୁ ଆରମ୍ଭ ହୋଇଯାଇଥିଲା ମଝିଆ ଝିଅର ବାହାଘର ପାଇଁ। ସେମାନଙ୍କର ଶେଷ କାମ ଏଇଟା। ବନ୍ଧୁବାନ୍ଧବ ସମସ୍ତଙ୍କୁ ଡାକିବେ। ଭଲ ଭାବରେ ଚର୍ଚ୍ଚା କରିବେ। ଏ ପର୍ଯ୍ୟନ୍ତ ଅପର୍ଣ୍ଣାର ପସନ୍ଦ ଅପସନ୍ଦକୁ କେବେ ହେଲେ ଗୁରୁତ୍ୱ ଦେଇନଥିବା ବାପା ବୋଉ ଏବେ ତାକୁ ସବୁକଥାରେ ପଚାରୁଥିଲେ। କୋଉ ରଙ୍ଗର ଶାଢ଼ି କିଣା ହେବ, କୋଉ ଡିଜାଇନ୍‌ର ଗହଣା ତିଆରି ହେବ, ଆହୁରି କେତେ କ'ଣ ପଚାରୁଥିଲେ। ଅପର୍ଣ୍ଣା ନିରୁତ୍ତର ରହୁଥିଲା। ଖୁବ୍ ବିଷଣ୍ଣ ବୋଧ କରୁଥିଲା ସେ। ଲୁଚାଇ ଲୁଚାଇ କାନ୍ଦୁଥିଲା। ଅନିମେଷଙ୍କୁ ବିବାହ କରିବାକୁ ସେ ଆଦୌ ପ୍ରସ୍ତୁତ ନଥିଲା। ଅନେକ ଥର ସେ ଭାବିଛି ତା'ର ମନୋଭାବ ଅନିମେଷଙ୍କୁ ଜଣାଇଦେବ। ମାତ୍ର କଥା ସବୁ ତା' ତଣ୍ଟି ପାଖରେ ଅଟକି ଯାଇଛି। କିଛି କହିପାରିନି ସେ। ଲେଖିକି ଜଣାଇଦେବ ବୋଲି ଭାବିଛି। କିନ୍ତୁ କଲମ ଧରିବସିବା ପରେ ଶବ୍ଦ ଖୋଜି ପାଇନି ନିଜକୁ ପ୍ରକାଶ କରିବାର। ଅଗତ୍ୟା ନିଜକୁ ପରିସ୍ଥିତି ହାତରେ

ଛାଡ଼ି ଦେଇଛି ନିରୁପାୟ ହୋଇ। ପ୍ରତି ମୁହୂର୍ତ୍ତରେ ତାକୁ ଆତଙ୍କିତ କରୁଛି ସୁପର୍ଣ୍ଣାର ସ୍ମୃତି। କୋଉ ସାହସରେ ସେ ଅଧିକାର କରିବ ସୁପର୍ଣ୍ଣାର ସଂସାର, ତା'ର ସ୍ୱାମୀ, ତା'ର ବିଛଣା, ତା'ର ଜିନିଷ ପତ୍ର। ଅନିମେଷଙ୍କ ପ୍ରତି ତା'ର ଯଥେଷ୍ଟ ଶ୍ରଦ୍ଧା ରହିଛି, ସମ୍ମାନ ରହିଛି। ଖୁବ୍ ଭଲ ମଣିଷଟିଏ ସେ। କିନ୍ତୁ ସ୍ୱାମୀ ଭାବରେ କେବେ ତାଙ୍କୁ ଭାବିପାରିବନି ଅପର୍ଣ୍ଣା। ତା'ହୃଦୟର କୋଉ ନିଭୃତ କୋଣରେ ଆଉ ଜଣଙ୍କୁ ନେଇ ମିଠା ସ୍ୱପ୍ନଟିଏ ଅଙ୍କୁରିତ ହୋଇସାରିଥିଲା। ତାଙ୍କରି ପାଇଁ ମନେ ମନେ ମାଳା ଗୁନ୍ଥୁଥିଲା ସେ। ଅବଶ୍ୟ ତାକୁ ଜଣାନଥିଲା, ଯାହା କଥା ସିଏ ନ ଭାବି ରହିପାରୁନଥିଲା, ଯାହାଙ୍କର ଆସିବା ମୁହୂର୍ତ୍ତକୁ ଉଚାଟ ହୋଇ ସେ ଚାହିଁ ରହୁଥିଲା - ତାଙ୍କ ମନରେ ଅପର୍ଣ୍ଣା ପାଇଁ ସେଭଳି କିଛି ଭାବନା ଥିଲା କି ନାହିଁ। ନୀରବରେ ସେ ତାଙ୍କୁ ତା' ଜୀବନର ଅଧୀଶ୍ୱର ଭାବରେ ହୃଦୟ ସିଂହାସନରେ ଅଭିଷିକ୍ତ କରିସାରିଥିଲା।

ରିତୁଲ୍‌ର ଜନ୍ମଦିନ ପାଖେଇ ଆସୁଥିଲା। ସୁପର୍ଣ୍ଣାର ବର୍ଷକିଆ ଶ୍ରାଦ୍ଧ ଯାଇନଥିବାରୁ କିଛି ଦିନ ଗଡ଼ାଇ ଜନ୍ମଦିନ ପାଳନ କରାଯିବାକୁ ସ୍ଥିର ହୋଇଥିଲା। ସୁପର୍ଣ୍ଣାର ମୃତ୍ୟୁ ପରେ ତାଙ୍କ ଘରେ ଆଉ କୌଣସି ଉତ୍ସବର ଆୟୋଜନ ହୋଇନାହିଁ। ଶ୍ରାଦ୍ଧ ଯିବା ପରେ ରିତୁଲ୍ ପାଇଁ ଗୋଟେ ସତ୍ୟନାରାୟଣ ପୂଜା ହେବ ଏବଂ ତା'ପରେ ଜନ୍ମଦିନ ଆଳରେ କିଛି ବନ୍ଧୁବାନ୍ଧବଙ୍କର ସମାବେଶ। ସେଇ ଉତ୍ସବରେ ଅନିମେଷ ଏବଂ ଅପର୍ଣ୍ଣାଙ୍କର ବିବାହ ସମ୍ପର୍କରେ ଘୋଷଣା କରାଯିବ। ସମସ୍ତେ ବହୁତ ଖୁସି ଥିଲେ। କେବଳ ଦୁଃଖରେ ଭାଙ୍ଗି ପଡୁଥିଲା ଅପର୍ଣ୍ଣା। ତା' ମନରୁ ସରସତା ଟିକକ ହଜି ଯାଇଥିଲା। ଏକ ଅସହାୟ ନିରୁପାୟତା ଭିତରେ ଛଟପଟ ହେଉଥିଲା ସେ।

ରିତୁଲ୍‌ର ଜନ୍ମଦିନ ଉତ୍ସବରେ ଦୁଇଟିଯାକ ପରିବାରର ଅଧିକାଂଶ ବନ୍ଧୁବାନ୍ଧବ ଉପସ୍ଥିତ ଥିଲେ। ଅନିମେଷଙ୍କ ଘର ଖୁବ୍ ସୁନ୍ଦର ଭାବରେ ସଜା ହୋଇଥିଲା। ଲନ୍‌ରେ ଆୟୋଜନ କରାଯାଇଥିଲା ପାର୍ଟିର। ଅପର୍ଣ୍ଣାକୁ ବାଧ୍ୟ କରି କିଛି ସାଜସଜ୍ଜା କରାଯାଇଥିଲା। ଚମ୍ପାରଙ୍ଗର ସିଲ୍‌କ ଶାଢ଼ିଟିରେ ଖୁବ୍ ସ୍ନିଗ୍ଧ ଦିଶୁଥିଲା ସେ। ଏତେ ଲୋକବାକ ଗହଳି ଭିତରେ ଡରିଯାଇ ରିତୁଲ୍ ଅପର୍ଣ୍ଣାକୁ ଜାବୁଡ଼ି ଧରିଥିଲା। ରିତୁଲ୍‌କୁ ଟିକେ ଧରିବାକୁ, ଆଦର କରିବାକୁ ସମସ୍ତେ ଆଗ୍ରହ ପ୍ରକାଶ କରୁଥିଲେ ମଧ୍ୟ ସେ କାହାରି ପାଖକୁ ଯାଉନଥିଲା। ଅନିମେଷ ଚମତ୍କାର ସୁଟ୍‌ଟିଏ ପିନ୍ଧିଥିଲେ। ଖୁବ୍ ଖୁସି ଦିଶୁଥିଲେ ସେ। ବାରମ୍ବାର ଚାହୁଁଥିଲେ ପୁଅକୁ ଆଉ ଅପର୍ଣ୍ଣାକୁ। କେକ୍ କଟାହେବା ବେଳେ ବି ରିତୁଲ୍ ତଳକୁ ଓହ୍ଲାଇଲା ନାହିଁ ଅପର୍ଣ୍ଣା କୋଳରୁ। ରିତୁଲ୍‌ର ହାତକୁ ଧରି ଅପର୍ଣ୍ଣା ହିଁ କେକ୍ କାଟିଲା। ତା'ର ଖୁବ୍ ପାଖରେ ଠିଆ ହୋଇଥିଲେ ଅନିମେଷ। କେକ୍‌ରୁ ଛୋଟିଆ ଖଣ୍ଡଟିଏ ଉଠାଇନେଇ ପୁଅ ପାଟିରେ ଛୁଆଁଇ ଅପର୍ଣ୍ଣା ପାଟି ପାଖରେ ଟେକି ଧରିଲେ ସେ। ତାଙ୍କ ହାତରୁ କେକ୍

ଖଣ୍ଡଟି ଧରିନେଇ ଖୁବ୍ ଧୀରେ ପାଟିରେ ପକାଇଲା ଅପର୍ଣ୍ଣା। ଅନିମେଷ ତାକୁ ଚାହିଁ ହସିଦେଲେ। ଅପର୍ଣ୍ଣା ଆଖି ତଳକୁ କଲା। ଅନିମେଷଙ୍କ ବୋଉ ଆଗେଇ ଆସିଲେ ସେମାନଙ୍କ ପାଖକୁ। ନାତିକୁ ଗେଲ କରି କହିଲେ, "ଆଜି ମୋ ନାତିକୁ ମୁଁ ମାଆଟିଏ ଉପହାର ଦେଉଛି।" ଗହଣା ଡବାରୁ ସୁନ୍ଦର ଡିଜାଇନ୍‌ର ହାରଟିଏ ବାହାର କରି ଅପର୍ଣ୍ଣାକୁ ପିନ୍ଧାଇଦେଲେ ସେ। ଅପର୍ଣ୍ଣାର ମୁହଁ କାନ୍ଦୁରା ଦିଶିଲା। ନଇଁପଡ଼ି ଅନିମେଷଙ୍କ ବୋଉଙ୍କର ପାଦ ଛୁଇଁ ପ୍ରଣାମ କଲା ସିଏ। ତାକୁ କୋଳକୁ ଆଉଜାଇ ନେଇ ତା'ର ମଥା ଚୁମ୍ବନ କଲେ ସେ। ଅଭ୍ୟାଗତମାନେ ସହର୍ଷ କରତାଳିରେ ସ୍ୱାଗତ କଲେ ଏଇ ଘୋଷଣାକୁ। ଅନିମେଷଙ୍କୁ ଅଭିନନ୍ଦନ ଜଣାଇବାକୁ ଅନେକ ଜଣ ହାତ ବଢ଼ାଇଲେ। ଅନିମେଷ କହିଲେ, "ମୋ ପୁଅକୁ ମୁଁ ବାପାଟିଏ ଉପହାର ଦେଲି ତା' ଜନ୍ମଦିନରେ।" ଏକଥା ଶୁଣି ସମସ୍ତେ ହସି ଉଠିଲେ। ପୁଣି ଥରେ କରତାଳି ହେଲା।

ଅନିମେଷ ଗମ୍ଭୀର ହୋଇ କହିଲେ, "ଏଥିରେ ହସିବାର କ'ଣ ଅଛି ? ଏଇ ଅର୍ଣ୍ଣବ - ଏଠିକୁ ଆସ। ଏତେ ଦୂରରେ ଠିଆ ହେଲେ ହେବ କେମିତି ?"

ଚମକି ଉଠି ଚାହିଁଲା ଅପର୍ଣ୍ଣା। ଡାକ୍ତର ଅର୍ଣ୍ଣବ ଚୌଧୁରୀଙ୍କର ଉପସ୍ଥିତି ସେ ଲକ୍ଷ୍ୟ କରିପାରି ନଥିଲା। ଅର୍ଣ୍ଣବ ଆଗେଇ ଆସିଲେ ସେମାନଙ୍କ ଆଡ଼କୁ। ପାଖକୁ ଆସି କହିଲେ, "କଂଗ୍ରାଚୁଲେସନ୍।" "ତୁମକୁ ବି ବହୁତ ବହୁତ ଅଭିନନ୍ଦନ। ନିଅ ଏ ମୁଦିଟା ପିନ୍ଧାଇଦିଅ ଅପର୍ଣ୍ଣାକୁ।" ପକେଟରୁ ଛୋଟ ଡିବାଟିଏ ବାହାର କରି କହିଲେ ଅନିମେଷ। ପ୍ରଥମେ ଆଶ୍ଚର୍ଯ୍ୟ ହେଲେ ବି ଅନିମେଷଙ୍କର ନିର୍ଦ୍ଦେଶ ଅମାନ୍ୟ କରିବାର ସାହସ ନଥିଲା ଅର୍ଣ୍ଣବଙ୍କର। ଆଉ ଅପର୍ଣ୍ଣା। ନିଜର ସଂଗୋପିତ ମଧୁର ସ୍ୱପ୍ନଟିର ସାକାର ରୂପ ଦେଖି ସେ ବିଶ୍ୱାସ କରିପାରୁନଥିଲା। ରିତୁଲ୍‌କୁ ଚିକିତ୍ସା କରିବାକୁ ଆସି ଅପର୍ଣ୍ଣା ହୃଦୟର ନିବୁଜ କୋଠରୀ ମଧ୍ୟକୁ ସନ୍ତର୍ପଣରେ ପ୍ରବେଶ କରିଯାଇଥିଲେ ଅର୍ଣ୍ଣବ। ଅପର୍ଣ୍ଣା ପରି ମମତାମଧୁର ସ୍ନିଗ୍ଧ ବ୍ୟକ୍ତିତ୍ୱଟିକୁ ଭଲ ନ ପାଇ ସେ ରହିପାରିନଥିଲେ। ଅପର୍ଣ୍ଣା ଭଳି ଝିଅଟିଏ ସେ ଦେଖିନଥିଲେ ତାଙ୍କର ଏଯାବତ୍ ଜୀବନକାଳ ମଧ୍ୟରେ। ଅନିମେଷଙ୍କର ସେ ମାଉସୀପୁଅ ଭାଇ। ସେଇଥିପାଇଁ ଏକଥା ସେ ଜାଣି ସାରିଥିଲେ ଯେ ଦୁଇଟି ପରିବାରର ଇଚ୍ଛାକୁ ସମ୍ମାନ ଜଣାଇ ଅପର୍ଣ୍ଣା ବାଧ୍ୟ ହୋଇ ଅନିମେଷଙ୍କୁ ବିବାହ କରିବ। ତେଣୁ ନିଜର ଭଲପାଇବାର କଥାଟିକୁ ସେ ଆଉ ପ୍ରକାଶ କରିନଥିଲେ କାହା ଆଗରେ। କିନ୍ତୁ କେମିତି ଜାଣିଲେ ଅନିମେଷ ? କିଏ କହିଲା ତାଙ୍କୁ ? ଅପର୍ଣ୍ଣା ତ କେବେ କହି ନଥିବ।

ଅନିମେଷଙ୍କର ହାତରୁ ମୁଦିଟି ନେଇ ଅର୍ଣ୍ଣବ ଅପର୍ଣ୍ଣାର ଆଂଗୁଠିରେ ପିନ୍ଧାଇବାବେଳେ ଥରଥର ହୋଇ କମ୍ପୁଥିଲା ସେ। ଦୁଇ ଆଖିର ଉପକୂଳ ଡେଇଁ ମାଡ଼ି ଆସୁଥିଲା ଅଶ୍ରୁର ଉଲ୍ଲାସ। ସେ ଅଶ୍ରୁ ଅସୀମ ଆନନ୍ଦ ଆଉ ଅଜସ୍ର କୃତଜ୍ଞତାର।

# ଇତି ତୋର ଆତ୍ମଜା

ବୋଉଲୋ,

ଆଜି 'ଆତ୍ମଜା' ତା' ବାପାମାଆଙ୍କ ପାଖକୁ ଫେରିଗଲା । ଡି.ଏନ୍.ଏ. ଟେଷ୍ଟ ପରେ ପ୍ରମାଣିତ ହେଲା ସିଏ ତା' ବାପାମାଆଙ୍କର ହିଁ ସନ୍ତାନ । ଦୀର୍ଘ ଚାରିମାସ ଧରି ଚାଲିଥିବା ବିଭିନ୍ନ ବାଦବିବାଦ, ଆଲୋଚନା, ସମାଲୋଚନାର ପରିସମାପ୍ତି ଘଟିଲା । ଆଶ୍ୱସ୍ତ ହେଲେ ହସ୍‌ପିଟାଲର ଷ୍ଟାଫ୍, ଛଳଛଳ ଆଖିରେ ବିଦାୟ ଦେଲେ 'ଆତ୍ମଜା'କୁ । ତା' ପରିବାର ତାକୁ ନେବାକୁ ଅସ୍ୱୀକାର କରି ଚାଲିଯିବା ପରେ ହସ୍‌ପିଟାଲ ହିଁ ତା'ର ଘର ପାଲଟିଯାଇଥିଲା – ଆଉ ହସ୍‌ପିଟାଲର କର୍ମଚାରୀମାନେ ତା'ର ଆପଣାର ଲୋକ – ତା'ର ଆତ୍ମୀୟସ୍ୱଜନ ସବୁକିଛି । ସ୍ନେହ, ମମତା, ଆଦର ଯତ୍ନର ଅଭାବ ନଥିଲା ତା' ପାଇଁ । ଅଭାବ ଥିଲା ପ୍ରକୃତ ଜନ୍ମଦାତ୍ରୀର ମମତାଭରା ସାନ୍ନିଧ୍ୟର – ମାଆ କୋଳର ନିର୍ଭୟ ଆଶ୍ରୟର ।

ଆତ୍ମଜାକୁ ମୁଁ କେବେ ପ୍ରତ୍ୟକ୍ଷରେ ଦେଖିନାହିଁ । ତାକୁ ଟିଭି ପରଦାରେ ଦେଖିଛି, ଖବରକାଗଜ ପୃଷ୍ଠାରେ ଦେଖିଛି । ମୋ ଭିତରେ ପ୍ରବଳ ଆଲୋଡ଼ନ ସୃଷ୍ଟି ହୋଇଛି । ଅଶ୍ରୁର ଉଚ୍ଛ୍ୱାସ ଆସିଛି ମୋ ଭିତରୁ । ଆତ୍ମଜା ସହିତ ଏକାତ୍ମ ହୋଇ ଲୁହରେ ବତୁରି ଯାଇଛି ମୋର ଆତ୍ମସତ୍ତା । ଅନେକ ବର୍ଷ ତଳେ ମୋର ଅବସ୍ଥା ମଧ୍ୟ ଆତ୍ମଜା ଭଳି ହୋଇଥାଆନ୍ତା, ତୁ ଯଦି ମୋତେ ସ୍ୱୀକାର କରିନଥାନ୍ତୁ । ମୋ ଜନ୍ମ ସମୟର କଥା ମୁଁ ବା କେମିତି ଜାଣନ୍ତି ? ମୁଁ ତ ସଦ୍ୟଜାତ ଅବୋଧ ଶିଶୁଟିଏ ଥିଲି । ମୋତେ ହଜାରଥର ସେକଥା ଶୁଣାଇ ଦିଆଯାଇଥିଲା – ମୁଁ କୁଆଡେ ବଦଳ ହୋଇ ଯାଇଥିଲି । ତୁ ତ ରାଜରାଣୀ ପରି ରୂପ ପାଇଥିଲୁ । ସେତେବେଳେ ପୁଣି ତୋର ଯୁବା ବୟସ । ବାପା ବି ତ ଖୁବ୍ ସୁନ୍ଦର ଦେଖିବାକୁ । ତୋର ବଡ଼ ଝିଅଟି ସେତେବେଳକୁ ଦେଢ଼ବର୍ଷର ହୋଇଥିଲେ ମଧ୍ୟ 'ସୁନ୍ଦରଶିଶୁ' ପ୍ରତିଯୋଗିତାରେ ପ୍ରଥମ ହୋଇ ପୁରସ୍କାର ପାଇ ସାରିଥିଲା । ତୁମେ ସମସ୍ତେ ଥିଲ ତକ୍ ତକ୍ ଗୋରା । ସ୍ୱାସ୍ଥ୍ୟ ମଧ୍ୟ ସମସ୍ତଙ୍କର ଖୁବ୍ ଭଲ । ମୋର ଜନ୍ମ

ପରେ ମୋତେ ସଫାସୁତୁରା କରି ତୋ ପାଖରେ ଆଣି ଯେତେବେଳେ ଶୁଆଇ ଦିଆଗଲା, ମୋତେ ଦେଖି ତୋ ବୋଉ ଚମକି ପଡ଼ିଥିଲେ। ସିଏ ତାଙ୍କର ସ୍ୱଭାବ ସୁଲଭ ଜମିଦାରିଆ ମିଜାଜ୍‌ରେ ଚିତ୍କାର କରି ଗାଳି ଦେଇଥିଲେ ହସ୍‌ପିଟାଲର ଡାକ୍ତର, ନର୍ସ, କର୍ମଚାରୀଙ୍କୁ। "କୋଉ ଅକଲରେ ମୋ ଝିଅ ପାଖରେ ଯା'କୁ ଆଣି ଥୋଇଛ ? କାହାର ବୋଲି କାହାର ପିଲା ଇଏ - କିଏ ଭଲା କହୁ ତ ଇଏ ମୋ ଝିଅର ପିଲା। ମୋ ଝିଅକୁ ଦେଖ, ଜ୍ୱାଇଁଙ୍କୁ ଦେଖ, ମୋ ବଡ଼ ନାତୁଣୀକୁ ଦେଖ। ଯିଏ ନାହିଁ ସିଏ ବୁଝିପାରିବ ମୁଁ କ'ଣ କହୁଛି। ଖବରଦାର୍ ମୋର ପ୍ରକୃତ ନାତୁଣୀକୁ ଜଲ୍‌ଦି ଆଣିଦିଅ। ନ ହେଲେ ମୁଁ ତୁମ ସମସ୍ତଙ୍କ ନାଁରେ କେଶ୍ କରିବି।" ସେତେବେଳେ ମୋ ଆଈ କ'ଣ କ'ଣ କହି ହସ୍‌ପିଟାଲର କର୍ମଚାରୀମାନଙ୍କୁ ତଥା କର୍ତ୍ତୃପକ୍ଷଙ୍କୁ ଗାଳି ଦେଉଥିଲେ ମୁଁ ଅବୋଧ କ'ଣ କିଛି ବୁଝୁଥିବି ? ମୁଁ ତ କେବଳ ଜୁଳୁଜୁଳୁ କରି ଚାହୁଁଥିବି ସମସ୍ତଙ୍କୁ।ମୋର ନାଳିଚିଆ କଳାରଙ୍ଗ (ଆଈ କହନ୍ତି ଜିଆ ଭଳି ମୋର ରଙ୍ଗ ଥିଲା,) ଧୁଡୁଧୁଡ଼ିଆ ଚମ, ସରୁ ସରୁ ଗୋଡ଼ହାତ-ଦେହଯାକ ପୁଣି ରୁମ ସାଲୁବାଲୁ, ମୁଣ୍ଡରେ ପୁଳାଏ କେଶ - ଅଦ୍ଭୁତ ଦିଶୁଥିବି ମୁଁ ଏ ସବୁର ସମାହାରରେ। ତୋ ପରି ସଫାସୁତୁରା ସୁନ୍ଦର ମଣିଷଟି ପାଖରେ ମୁଁ ତ ଅତିମାତ୍ରାରେ ବେଖାପ ଲାଗିବା ସ୍ୱାଭାବିକ। ମୁଁ କ'ଣ ନିଜେ ଚାହିଁଥିଲି ସେମିତି ଅଦ୍ଭୁତ ଭାବରେ ଅସୁନ୍ଦର ହୋଇ ଜନ୍ମ ହେବାକୁ ? ତାଙ୍କର ପ୍ରକୃତ ନାତୁଣୀଟିକୁ ଜାଣିଶୁଣି କେହି ବଦଳ କରିଦେଇଛି ବୋଲି ଦୃଢ଼ବିଶ୍ୱାସର ସହିତ ଦାବି କରୁଥିବା ମୋ ଆଈଙ୍କୁ କୁଆଡ଼େ ସେହି ହସ୍‌ପିଟାଲରେ ଚିଫ୍ ମେଡ଼ିକାଲ୍ ଅଫିସର ଅତ୍ୟନ୍ତ ବିନମ୍ରତାର ସହିତ ହାତଯୋଡ଼ି ଅନୁରୋଧ କରିଥିଲେ ସେଦିନ ଜନ୍ମ ହୋଇଥିବା ନଅଟି ଝିଅ ଓ ଗୋଟିଏ ପୁଅଙ୍କ ମଧ୍ୟରୁ କୋଉ ପିଲାଟି ତାଙ୍କ ଝିଅର ସନ୍ତାନ ଭଳି ଦିଶୁଛି ଚିହ୍ନଟ କରିବାକୁ। ମୋ ଆଈ ସବୁ ପିଲାଙ୍କୁ ଗୋଟି ଗୋଟି କରି ନିରୀକ୍ଷଣ କରିବା ପରେ ନିରାଶ ହୋଇଥିଲେ। କାହାରି ମଧ୍ୟ ସାମାନ୍ୟ ସାମଞ୍ଜସ୍ୟ ନଥିଲା ତୋ' ସହିତ, ବାପାଙ୍କ ସହିତ କି ଆମ ପରିବାରର କାହା ସହିତ। ତୁ କିନ୍ତୁ ସେତେବେଳକୁ ମୋତେ କୋଳକୁ ନେଇ ସାରିଥିଲୁ। ନିଜକୁ ପ୍ରତାରିତ ମନେ କରି ଗମ୍ଭୀର ହୋଇ ବସିଥିବା ଆଈଙ୍କୁ ତୁ କହିଥିଲୁ, 'ଦେଖିଲୁ ବୋଉ - ଏ ଝିଅର ଆଖି ଦି'ଟା ଆଉ ନାକଟା ମୋ ପରି ଲାଗୁଚି ନା ? ତା' ମୁଣ୍ଡର ଚୁଟିଗୁଡ଼ିକ କି ସୁନ୍ଦର କଳା ମୁଚୁମୁଚୁ ହୋଇଛି ଦେଖ୍ ତ। ମୋତେ ଲାଗୁଛି- ବହୁତ ଦିନ ଧରି ମୋତେ ଯୋଉ ମାଲଜ୍ୱର ଲାଗି ରହିଲା, ସେଇଥିପାଇଁ ଯେଉଁ ଔଷଧପତ୍ର ଖାଇଥିଲି - ସେଇ ପ୍ରଭାବରେ କି କ'ଣ ପିଲାଟା ଏମିତି ରୋଗିଣା ଆଉ କାଳିଚିଆ ହୋଇଯାଇଛି। ବଡ଼ ହେଲାପରେ ଦେଖିବୁ - ସେ ଠିକ୍‌ଠାକ୍ ଲାଗିବ।

ସେତେବେଳେ ଡି.ଏନ୍.ଏ ଟେଷ୍ଟ କରାଯିବାର ବ୍ୟବସ୍ଥା ନ ଥିଲା। ସେ

ବାବଦରେ ଲୋକମାନଙ୍କର ଧାରଣା ମଧ୍ୟ ନଥିବ। ସେଇଥିପାଇଁ ତୁମେମାନେ ମୋତେ ଘରକୁ ଆଣିଲ। କାକତାଳୀୟ ହେଉ ପଛେ ମୋ ଜନ୍ମ ପରେ ପରେ ଆମ ଘରେ ଭଲ ଭଲ ଘଟଣା ସବୁ ଘଟିଲା। ଜେଜେ ମା' କହିଲେ, ପିଲାଟା ଭରି ଲକ୍ଷ୍ମୀମନ୍ତ । ସିଏ ନିଜ ହାତରେ ମୋତେ ତେଲ ହଳଦୀ ଲଗାଇ ଦେବାର ଦାୟିତ୍ୱଟି ନେଇଥିଲେ। ମୋ ଦେହର ଭାଲୁଭାଲୁକା ଲୁମ ସବୁ ତେଲହଳଦୀ ଘଷାରେ ଝଡ଼ି ପଡ଼ିଲା। ଏବଂ ମୋର ରଙ୍ଗ ମଧ୍ୟ ଫିଟି ଆସିଲା। ମୋ ମୁହଁରେ ତୋ ମୁହଁର ଛାପ ବାରି ହୋଇଗଲା। ଯଦିଓ ତୋ ଚମ୍ପାଫୁଲିଆ ରଙ୍ଗ ମୋତେ ମିଳିଲା ନାହିଁ; କଳା ଝିଅରେ ମୋତେ ଆଉ କେହି ଗଣିଲେ ନାହିଁ। ଜେଜେମା'ଙ୍କର ଯତ୍ନରେ ଛଅମାସ ହେଲା ବେଳକୁ ମୁଁ କୁଆଡ଼େ ଏମିତି ଗାବ୍ଦୁଲୁଗାବ୍ଦୁଲୁ ହୋଇଯାଇଥିଲି ଯେ ବସେଇ ଦେଲେ ବସି ରହିଥିବି। (ମୋର ସ୍ୱାସ୍ଥ୍ୟ ସେବେଠାରୁ ଆଉ ଭାଙ୍ଗିନାହିଁ।)

ପିଲାଦିନେ ଆଈଙ୍କୁ ଦେଖିଲେ ମୁଁ ସାଙ୍କୁଡ଼ିଯାଏ ଭୟରେ। ମୋର ପିଲାମନ ବୁଝିପାରେ ସେ ମୋତେ ପସନ୍ଦ କରନ୍ତି ନାହିଁ। ତୋ ବଡ଼ଝିଅ ହିଁ ତାଙ୍କର ସବୁଠୁ ଗେହ୍ଲା ଥିଲା, ସବୁଠୁ ସୁନ୍ଦର ଆଉ ସର୍ବଗୁଣ ସମ୍ପନ୍ନା ବୋଲି। ମୁଁ ଯେ ଛୋଟବେଳେ ବହୁତ ଅସୁନ୍ଦର ଥିଲି - ଏକଥା ଆଈ ମୋତେ ବାରମ୍ବାର ମନେ ପକେଇ ଦିଅନ୍ତି। ବହୁତ ଦିନ ଯାଏ ମୋ ଭିତରେ ଗୋଟେ ହୀନମାନ୍ୟତା ଠୁଳ ହୋଇ ରହିଥିଲା। ବୋଉଲୋ ତୁ କ'ଣ ମନେ ରଖିଥିବୁ - ତୋର ଆଠଜଣ ପିଲାଙ୍କ ଭିତରୁ ମୁଁ ଆଠଣା କି ଚାରିଅଣା ପଇସା ମଧ୍ୟ କେବେ ମାଗିନଥିଲି ସାହସ କରି। ତୋର ସବୁ ପିଲାଙ୍କ ଭିତରୁ ସବୁଠୁ ନିରୀହ, ସବୁଠୁ କୋମଳ, ସରଳ ବୋଲି ମୋତେ ତୁ ଭାବୁଥିଲୁ। ସେଇଥିପାଇଁ ମୋ ଉପରେ ତୋର ସଯତ୍ନ ଦୃଷ୍ଟି ରହୁଥିଲା। ସାଇତିକି ରଖିଲା ପରି ରଖିଥିଲୁ ତୁ ମୋତେ। ତୋର ସବୁଠାରୁ ଆଜ୍ଞାଧୀନ ସନ୍ତାନ ଥିଲି ମୁଁ। ମୋର ସମସ୍ତ ଅଯୋଗ୍ୟତା ସତ୍ତ୍ୱେ ମୋ ଉପରେ ହିଁ ତୋର ସବୁଠୁ ଅଧିକ ଭରସା ଥିଲା। ତୋର ଓ ବାପାଙ୍କର ସୃଜନଶୀଳ ପ୍ରତିଭାର ଉଦ୍‌ଭାସ ମୋ ଭିତରେ ଆବିଷ୍କାର କରି ତୁମେ ଯୋଉଦିନ ଖୁସିରେ ଗଦ୍‌ଗଦ୍ ହୋଇ ଉଠିଥିଲ ସେଇଦିନ ହିଁ ମୋ ଭିତରର ହୀନମନ୍ୟତା ବାଷ୍ପୀଭୂତ ହୋଇ ମିଳାଇଯିବା ଆରମ୍ଭ କରିଥିଲା। ଆତ୍ମବିଶ୍ୱାସର ବୀଜଟି ଅଙ୍କୁରିତ ହୋଇ ଉଲ୍ଲାସରେ ପଲ୍ଲବିତ ହୋଇଥିଲା। ଏମିତି ଗୋଟେ ସମୟ ଆସିଲା, ଆମ ପରିବାର ସମସ୍ତଙ୍କ ସହିତ ବନ୍ଧୁ କୁଟୁମ୍ବ - ସମସ୍ତଙ୍କର ଅତ୍ୟନ୍ତ ଆଦରଣୀୟା ହୋଇଉଠିଲି। ଯୋଉ ଆଈ ମୋତେ ସବୁବେଳେ ନାପସନ୍ଦ କରୁଥିଲେ, ମୃତ୍ୟୁପୂର୍ବରୁ ଶେଷ ଶଯ୍ୟାରେ ତାଙ୍କୁ ଦେଖିବାକୁ ଆମେ ଯେତେବେଳେ ଯାଇଥିଲୁ - ସେ ମୋତେ ପାଖକୁ ଡାକି ଆଦରରେ ମୋତେ ଆଉଁସିଦେଇ, ଗେହ୍ଲା କରି କହିଥିଲେ, 'ତୋତେ ମୁଁ କେତେ ହୀନିଛାକଡ଼ା କରି କହିଛି ଲୋ ମା' - ତୁ

ତ ଆମ ବଂଶର ନାଁ ରଖିଲୁ। ପିଲାଦିନ କଥାସବୁ ଭୁଲିଯିବୁ।"

ବୋଉଲୋ- ଆଇ ଚାଲିଯିବା ବେଳକୁ ମୁଁ ଜଣେ ପରିପକ୍ୱ ମଣିଷରେ ପରିଣତ ହୋଇ ସାରିଥିଲି। ବିଭିନ୍ନ ସାଂସାରିକ ଜଞ୍ଜାଳ ଓ ଦାୟିତ୍ୱ ମଧ୍ୟରେ ବୁଡିଯାଇ ପିଲାଦିନ କଥା ଭାବି ବସିବାକୁ ମୋର ବେଳ କୋଉଠି ଥିଲା? ବ୍ୟକ୍ତିଗତ ତଥା ସାମାଜିକ ଜୀବନରେ ଅଜସ୍ର ଭଲପାଇବାରେ ଅଭିଷିକ୍ତା ହୋଇ ମୋ ଜୀବନକୁ ସାର୍ଥକ ମଣୁଥିଲି। ଆତ୍ମଜାର କାହାଣୀ ମୋତେ ପୁଣିଥରେ ମୋର ପିଲାଦିନକୁ ଫେରାଇ ନେଇଛି। ପିଲାଦିନେ ମୋତେ ଆମ ଘରେ କେହି କେହି ଚିଡ଼େଇବା ପାଇଁ କହନ୍ତି, 'ତୁ କ'ଣ ଆମ ଘରର ଝିଅ କି? ତୋତେ ତୋ ବାପା ବୋଉ ଦୟାକରି ପାଳିଛନ୍ତି। ନ ହେଲେ ତୁ ଏବେ କୋଉଠି ଥାଆନ୍ତୁ କିଏ ଜାଣେ? ଏ କଥା ଶୁଣି ମୁଁ କାହାକୁ କିଛି କହି ନ ପାରି ବହୁତ କାନ୍ଦେ। ଲୁଚେଇ ଲୁଚେଇ କାନ୍ଦେ - କାହା ଆଗରେ କାନ୍ଦିବାକୁ ମୋତେ ଲାଜ ଲାଗେ। ମନେ ମନେ ଭାବେ, ଏମାନେ କ'ଣ ସତରେ ମୋର ନିଜ ବାପମାଆ ନୁହନ୍ତି, ତା'ହେଲେ ମୋର ପ୍ରକୃତ ବାପାମାଆ କୋଉଠି ଅଛନ୍ତି? ତାଙ୍କର ଝିଅଟିଏ ହଜିଯାଇଛି ବୋଲି ସେମାନେ କ'ଣ ଜାଣିଥିବେ ନା ମୋଠୁ ସୁନ୍ଦର ଝିଅଟେ ପାଇ ଯାଇ ଖୁସିରେ ଥିବେ! ହେ ଭଗବାନ - ଏଇ ବୋଉ ବାପା ଯଦି ମୋତେ ଘରକୁ ଆଣି ନଥାନ୍ତେ, ନିଜ ଝିଅ ବୋଲି ସ୍ୱୀକାର କରିନଥାନ୍ତେ - ତା'ହେଲେ ମୁଁ ଏବେ କୋଉଠି ଥାଆନ୍ତି। କୋଉ ଗୋଟେ ଅନାଥାଶ୍ରମରେ ଥାଆନ୍ତି ନିଶ୍ଚୟ। ମୁଁ ଆହୁରି ଅଧିକ କୃତଜ୍ଞ ବୋଧକରେ ମୋର ବାପାବୋଉଙ୍କ ନିକଟରେ।

ଆତ୍ମଜାର କଥା ମୋଠୁ ଟିକିଏ ଅଲଗା। ତା'ର ଜନ୍ମ ପରେ ତା' ଘରଲୋକଙ୍କୁ ଭୁଲ୍ ତଥ୍ୟ ଦିଆଯାଇଥିଲା - ପୁଅଟିଏ ହୋଇଛି ବୋଲି। ନିଜର ଜନ୍ମିତ ସନ୍ତାନକୁ ଫେରିପାଇବା ପାଇଁ ସେମାନେ ପ୍ରୟାସ କରିଥିଲେ ଆତ୍ମଜାକୁ ଗ୍ରହଣ ନ କରି। ପୁଅଟିଏ ପାଇଁ ଏବେ ମଧ୍ୟ ଆମ ସମାଜରେ କେତେ ବ୍ୟାକୁଳତା ରହିଛି। 'ପୁତ୍' ନାମକ ନର୍କରୁ ମୃତ୍ୟୁ ପରେ ଉଦ୍ଧାର କରିବ ବୋଲି ଯୋଉମାନେ ପୁଅ ପାଇଁ ଓଷାବ୍ରତ, ପୂଜାପାଠ, ମାନସିକ ଇତ୍ୟାଦି କରିଥାଆନ୍ତି - ସେଇ ବାପାମାଆଙ୍କୁ ପୁଅମାନେ ଜୀଅନ୍ତା ନରକ ଯନ୍ତ୍ରଣା ଭୋଗ କରାଇବା ଦିଗରେ ସମସ୍ତ ପ୍ରକାର ଆୟୋଜନ କରିଦେଉଛନ୍ତି। ସବୁ ପୁଅ ଅବଶ୍ୟ ସେମିତି ନୁହନ୍ତି। ତୋ ପୁଅମାନେ ବହୁତ ଭଲ। ଯିଏ ଯୋଉଠି ଥିଲେ ବି ତୋ ପ୍ରତି, ବାପାଙ୍କ ପ୍ରତି ସେମାନଙ୍କର ଅଖଣ୍ଡ ଭକ୍ତି, ଶ୍ରଦ୍ଧା, ସମ୍ମାନ। ତିନି ଚାରିବର୍ଷ ହେବ ତୁ ଠିକ୍ ଭାବରେ ଚାଲାବୁଲା, ଉଠବସା କରିପାରୁନଥିଲୁ। ଏବେ ବର୍ଷେରୁ ଅଧିକ ହୋଇଗଲାଣି ତୁ ପୂରାପୂରି ଶଯ୍ୟାଶାୟୀ। ତୋର ଚିକିତ୍ସା ପାଇଁ, କଷ୍ଟ ଲାଘବ ହେବା ପାଇଁ, ଟିକେ ଆରାମ ଲାଗିବା ପାଇଁ ଯାହା ଯାହା କରାଯାଇପାରେ ତୋ ପିଲାମାନେ ସବୁ

ବ୍ୟବସ୍ଥା କରିଛନ୍ତି । ଶୋଇ ଶୋଇ କାଳେ ବେଡ୍‌ସୋର୍ ହୋଇଯିବ ବୋଲି ତୋତେ ଏୟାର୍ ବେଡ୍‌ରେ ଶୁଆଯାଇଛି । ତୋ ପାଇଁ ନର୍ସର ବ୍ୟବସ୍ଥା ହୋଇଛି, ତୋ ପାଖରେ ଚବିଶ ଘଣ୍ଟା ଯିଏ ଜଗି ରହିଥିବ । ମ୍ୟୁଜିକ୍ ସିଷ୍ଟମ୍‌ଟିଏ ରଖାଯାଇଛି । ବଛା ବଛା ସିଡ଼ି, କ୍ୟାସେଟ୍ ସେଥିରେ ବଜାଇ ତୋତେ ଶୁଣା ହେଉଛି । ହାତଗୋଡ଼ ସିନା ହଲେଇ ପାରୁନୁ ନିଜେ - ଭକ୍ତିଭରା ଗୀତ ଶୁଣିଲେ ତୋ ମୁହଁ ଖୁସିରେ ଉଜ୍ଜ୍ୱଳି ଉଠୁଛି । ତୋତେ ଦେଖିଲେ ଅଜଣା ବ୍ୟକ୍ତି କେବେ ବି ଜାଣିପାରିବ ନାହିଁ - ତୁ ଏତେଦିନ ହେଲା ଅସୁସ୍ଥ ହୋଇ ଶଯ୍ୟାଶାୟୀ । ତୋ ଜୋଇଁ କହନ୍ତି ବୋଉ ଏୟାର୍‌ବେଡ୍‌ରେ ନୁହେଁ - ଶରଶଯ୍ୟାରେ ଶୋଇଛନ୍ତି । ଶରଶଯ୍ୟାରେ ଶୋଇ ଶୋଇ ସଂସାରର ବିଚିତ୍ର ଗତିକୁ ଲକ୍ଷ୍ୟ କରୁଛନ୍ତି । ଶରୀରର ଅନ୍ୟାନ୍ୟ ଅଙ୍ଗପ୍ରତ୍ୟଙ୍ଗ ସିନା ପ୍ରାୟ ଅଚଳ ହୋଇ ଆସିଲାଣି । ତୋର ସ୍ମରଣଶକ୍ତି ଏବେବି ବେଶ୍ ଭଲ ଅଛି । ରାମାୟଣ, ମହାଭାରତ, ଭାଗବତ, ଗୀତା ଏସବୁ ତ ତୋର ପ୍ରାୟ କଣ୍ଠସ୍ଥ । ଯୋଉ ଘଟଣା, ଯୋଉ ଚରିତ୍ର ବିଷୟରେ ପଚାରିଲେ ତୁ ତତ୍‌କ୍ଷଣାତ୍ କହିଦେଇପାରୁ । ବିଛଣା ଧରିବା ପୂର୍ବଯାଏ ତୁ ତ ନିୟମିତ ବିଭିନ୍ନ ଧର୍ମଗ୍ରନ୍ଥ ଅଧ୍ୟୟନ କରିବା ସହିତ ସାହିପଡ଼ିଶାର ସ୍ତ୍ରୀଲୋକମାନଙ୍କୁ ପାଖରେ ବସାଇ ଉପରବେଳା ଭାଗବତ ପାଠ କରି ବୁଝାଉଥିଲୁ । ସେଇ ଦୃଶ୍ୟ ଦେଖିଲେ ମୋତେ ଭାରି ଭଲ ଲାଗୁଥିଲା । ପାଞ୍ଚ ଛଅ ବର୍ଷ ତଳେ ବି ତୁ ନିୟମିତ ଯୋଗ, ପ୍ରାଣାୟମ, ଆସନ ଇତ୍ୟାଦି କରୁଥିଲୁ । ଏତେ ବୟସରେ ମଧ୍ୟ ସେଇଥିପାଇଁ ତୋ ମୁହଁର ଉଜ୍ଜ୍ୱଳତା ଅକ୍ଷୁଣ୍ଣ ରହିଛି । ତୋ ପରି ମଣିଷ - ଯିଏ ସାରାଜୀବନ ନୀତି, ନିୟମ ଶୃଙ୍ଖଳା ମଧ୍ୟରେ ଚାଲି ଆସିଥିଲା - ତା' ଅବସ୍ଥା ଯଦି ଏଭଳି ହୋଇଗଲା ଆମର ପରିଣତ ବୟସର ଅବସ୍ଥା କଥା ଭାବିଲେ ଭୟ ଲାଗୁଛି ।

ଆଜିକାଲି ମୋର ଜୀବନ ଜୀବିକାର ଜଞ୍ଜାଳ ମଧ୍ୟରୁ ବାହାରି ପାରିବାର ସୁଯୋଗ ମିଳିବା ମାତ୍ରେ ତୋତେ ଆଉ ବାପାଙ୍କୁ ଦେଖିବାକୁ ଚାଲିଯାଏ । ତୋର ଆଉ ବାପାଙ୍କର ଆମମାନଙ୍କ ପାଖରୁ ଆଉ କୌଣସି ପ୍ରତ୍ୟାଶା ନାହିଁ କେବଳ ପାଖରେ ଯାଇ କିଛି ସମୟ ବିତାଇବା ବ୍ୟତୀତ । କ'ଣ ନେଇକି ଯିବି ତୋ ପାଇଁ ପଚାରିଲେ କହୁ -ମୋର କିଛି ଦରକାର ନାହିଁ - ତୁ ଆସିଲେ ମୋତେ ଭଲ ଲାଗିବ । ତୋ ପାଖରେ ପହଞ୍ଚିଲେ ତୋ ପାଦ ଛୁଇଁ ପ୍ରଣାମ କଲେ ତୁ କହୁ, ମୋତେ ଟିକେ ଗେଲ କରିଦେ । ଛୋଟ ଝିଅଟିକୁ ଗେଲ କରିବା ପରି ତୋର ଦୁଇଗାଲରେ ଚୁମା ଦେବାକୁ ହୁଏ । ସେତିକିରେ ତୁ ଖୁସି ହୋଇଯାଉ । ଟିକିନିଖି କରି ଖବର ନେଉ ମୋ ସ୍ୱାସ୍ଥ୍ୟର, ମୋ ପିଲାମାନଙ୍କର, ତୋ ଜ୍ୱାଇଁଙ୍କର, ମୋ କର୍ମକ୍ଷେତ୍ରରେ । ସବୁ ଜାଣିବା ତୋର ନିହାତି ଦରକାର । ତୁ ବି କହୁ ଆମର ବନ୍ଧୁକୁଟୁମ୍ବ ସାହିପଡ଼ିଶା ତଥା ଦେଶବିଦେଶକୁ ବ୍ୟାପି ଯାଇଥିବା ଆମ ପରିବାରର ଶାଖାପ୍ରଶାଖାମାନଙ୍କର କଥା । ସମସ୍ତଙ୍କ ଖବର ତୋ ପାଖରେ - କଥା ତୋର ସ୍ପଷ୍ଟ ବୁଝି

ହୁଏ ନାହିଁ। ତୁ କିନ୍ତୁ କହି ଚାଲୁ। ତୋର ଅସହାୟପଣ ଦେଖି ମୋ ଆଖିରେ ଚହଲି ଆସୁଥିବା ଅଶ୍ରୁର ଉଚ୍ଛ୍ୱାସକୁ ବହୁ କଷ୍ଟରେ ଚପାଇ ଦିଏ। ତୁ ଆମର ସେଇ ବୋଉ ନା ଯିଏ ଆମ ଘରର ମେରିଖୁଣ୍ଟ, ଯାହାକୁ କେନ୍ଦ୍ର କରି ଆମେ ସମସ୍ତେ ଘୂରୁଥାଉ। ତୋରି ଇଚ୍ଛାରେ ଜାଣ ଆମ ଘରର ସୂର୍ଯ୍ୟଚନ୍ଦ୍ର ଉଦୟ ଅସ୍ତ ହୁଏ। ତୋ ପିଲାମାନଙ୍କ ସମେତ ତୋ ଶାଶୂଘର ଓ ବାପଘରର ସମସ୍ତେ ଯେ କୌଣସି ବିଷୟରେ ଶେଷ ନିଷ୍ପତ୍ତି ନେବାବେଳେ ତୋ ଉପରେ ସମସ୍ତେ ନିର୍ଭର କରନ୍ତି। ତୋର ଏବେକାର ଅବସ୍ଥା ଦେଖି କେହି 'ଆହା ଚୁ ଚୁ' କଲେ ଆମକୁ ଭଲ ଲାଗେନା। ତୋ ପରି ଦମ୍ଭିଲା ମଣିଷଟି ନିଜେ ନିଜେ ବସିବା, ଉଠିବା, ଚଲାବୁଲା କରିବା ତ ଦୂରର କଥା - ନିଜର ନିତ୍ୟକର୍ମ ପାଇଁ ମଧ୍ୟ ଅନ୍ୟମାନଙ୍କ ଉପରେ ନିର୍ଭର କରିବା ତୋତେ କେତେ ମର୍ମପୀଡ଼ା ଦେଉଥିବା ଆମେ ସମସ୍ତେ ବୁଝିପାରୁ। ତୋର ନିରୁପାୟ ଅବସ୍ଥା ଆମକୁ କାନ୍ଦ କାନ୍ଦ କରିଦିଏ। ତୁ କେବେ ଲୋକଙ୍କୁ କେତେ ସାହାଯ୍ୟ କରିଥାଉ ସେକଥା ତ ଆମେ ପ୍ରତ୍ୟକ୍ଷ କରିଛୁ। କେତେ ପିଲାଙ୍କୁ ପାଠ ପଢ଼ାଇ ସାହାଯ୍ୟ କରିଛୁ ଚାକିରିବାକିରି କରିବା ଯାଏ। କେତେ ବାପାମାଆ ଛେଉଣ୍ଡ ପିଲାଙ୍କର ସାହାଭରସା ହୋଇଛୁ। କେତେ ଗରିବ ଝିଅଙ୍କୁ ବାହା କରେଇଛୁ। ଖୋଲାମନରେ - ଖୋଲା ହାତରେ ସାହାଯ୍ୟ କରି ଆସିଛୁ ଲୋକମାନଙ୍କୁ।

ଆମ ଘରେ ଅଭାବ, ଅସୁବିଧା ତ ଥିଲା- କାଙ୍ଗାଳପଣ ନଥିଲା। କୌଣସି ଯୋଗୀ, ଭିକାରୀ ଆମ ଦୁଆରୁ ଖାଲି ହାତରେ ଫେରି ଯାଉନଥିଲେ। ଗୋଟେ ଭିକାରୀବୁଢ଼ା ଥିଲା - ତେଲୁଗୁ ଲୋକ ସେ। ଆମେ ତାକୁ 'ଆପନା-ତାନା-ମାନା' ବୁଢ଼ା କହୁଥିଲୁ। ତା'ର ହାତବାଡ଼ିଟି ଧରି 'ଆପନା-ତାନା-ମାନା' ପରି କିଛି ଶବ୍ଦ ସମ୍ବଳିତ ଗୀତ ଗାଇ ସେ ନାଚୁଥିଲା ତା'ର ପାଚିଲା ଧଳା ବାବୁରି ବାଳ ଓ ଲମ୍ବା ଦାଢ଼ି ହଲାଇ। ତା'ପରେ ଦୁଆରେ ବସି ପେଟେ ଖାଇ କି ଯାଉଥିଲା। ଜଣେ ମହିମାଧର୍ମର ସନ୍ନ୍ୟାସୀ ଆସୁଥିଲେ ବହୁ ବର୍ଷଧରି। ତାଙ୍କପାଇଁ ରୋଷେଇଘର ଚୁଲି ଧୂଆଧୋଇ ହୋଇ ଭଲରେ ରନ୍ଧା ହେଉଥିଲା। ଚଉଁରା ପାଖ ଟଗରଗଛ ମୂଳେ ମାଟି ଗୋବରରେ ଲିପା ହୋଇ ଠା' ହେଉଥିଲା ।ସେଇଠି ବସି ସେ ଖାଉଥିଲେ ଏବଂ କଲ୍ୟାଣ କାମନା କରି ଯାଉଥିଲେ। କପିଳେଶ୍ୱର, ଧବଳେଶ୍ୱର ଏମିତି କେତେ ଠାକୁରଙ୍କ ପାଖରୁ ବ୍ରାହ୍ମଣମାନେ ନିୟମିତ ଭାବରେ ଆସି ପାଦୁକା ଦେଇ ଦକ୍ଷିଣା ନେଇ ଯାଉଥିଲେ। ତୋର ଭାଇଭଉଣୀମାନେ ସାନ ସାନ ହୋଇଥିଲେ - ଅଜା ଚାଲିଗଲେ। ଭାଇ ଭଉଣୀଙ୍କୁ ପାଠପଢ଼ାଇ ମଣିଷ କରିବା ଏବଂ ବାହା କରିବାର ଦାୟିତ୍ୱ ମଧ୍ୟ ତୁ ଖୁସିରେ ତୁଲେଇଥିଲୁ। ତୋର ସବୁକାମରେ ବାପାଙ୍କର ନୀରବ ସମର୍ଥନ ଓ ସହଯୋଗ ରହିଥିଲା। ବାପା ପାଞ୍ଜି ଦେଖି ଓଷା, ବ୍ରତ, ତିଥିବାର ସବୁ ଜଣାଇ ଦିଅନ୍ତି। ସବୁ ରୀତି, ନୀତି, ନିୟମ ସହକାରେ ଓଡ଼ିଆ ଘରର

ସବୁ ପୂଜାପର୍ବ ଆମ ଘରେ ପାଳିତ ହୁଏ। କେତେ ନିଷ୍ଠାରେ ତୁ ପାଳିଥାଉ ଶିବରାତ୍ରି ବ୍ରତ, ସୋମନାଥ ବ୍ରତ - ଆହୁରି କେତେ କ'ଣ। ମୁଁ ଶୁଣିଛି - ତୋର ବଡ଼ଝିଅ ହେବା ପରେ ପୁଅଟିଏ ପାଇବା ପାଇଁ ତୁ ଶିବରାତ୍ରୀ ବ୍ରତ ଆରମ୍ଭ କରିଥିଲୁ। ତୋର ଭାଗ୍ୟର ବିଡ଼ମ୍ବନା ନୁହେଁ ତ ଆଉ କ'ଣ ? ଠିକ୍ ଶିବରାତ୍ରୀ ଦିନ ମୋ ପରି କାଳିକୋତରୀ,ଅସୁନ୍ଦରିଆ ଝିଅଟିଏ ଜନ୍ମହେଲା ତୋର।

ବୋଉଲୋ- ଏବେ ମୋର ସତ କହିବାରେ ଦ୍ୱିଧା ନାହିଁ। ମୋ ପିଲାଦିନେ ତୋତେ 'ବୋଉ' ବୋଲି ଡାକୁଥିଲି ସିନା - 'ମାଆ' ବୋଲି ଭାବିପାରୁନଥିଲି। ତୋର ଗୋରା ତକ୍‌ତକ୍ ସୁଦୀର୍ଘ ଚେହେରା ଆଗରେ ମୁଁ ନିଜକୁ ଖୁବ୍ ତୁଚ୍ଛ ମଣୁଥିଲି। ଅନେକ ବର୍ଷ ତଳର କଥା - ତୁ ସେତେବେଳେ ପ୍ରଚଣ୍ଡ ଶୃଙ୍ଖଳାମୟୀ କଡ଼ା ପ୍ରଧାନ ଶିକ୍ଷୟିତ୍ରୀ। କେନ୍ଦୁଝରରେ ଆମେ ରହୁଥାଉ ସେତେବେଳେ। ପାହାଡ଼ ତଳେ - ସ୍କୁଲ ପରିସରରେ ସମସ୍ତ ଶିକ୍ଷକ ତଥା କର୍ମଚାରୀଙ୍କର କ୍ୱାଟର୍ସ। ବାପାଙ୍କ ସ୍କୁଲ୍ ଅନ୍ୟ ଜାଗାରେ- ସେ ମଧ୍ୟ ହାଇସ୍କୁଲର ହେଡ୍‌ମାଷ୍ଟର ଥିଲେ। କେବେ କେବେ ସେ ଆସନ୍ତି ଆମ ପାଖକୁ ତ ଆମେ କେବେ ତାଙ୍କ ପାଖକୁ ଯାଉ। ଧାଇ ମା' ହେପାଜତରେ ତୋ ପାଖରେ ଆମେ ଚାରି ଭାଇଭଉଣୀ ରହିଥାଉ। କେନ୍ଦୁଝରର ହାଡ଼ଭଙ୍ଗା ଶୀତଦିନର ସକାଳରେ ମୁଁ ତୋତେ ଦେଖି ଅଭିଭୂତ ହୋଇଯାଏ। ଓଭରକୋଟ ପିନ୍ଧି, ପକେଟ୍ ଭିତରେ ହାତ ପୂରାଇ ପ୍ରାତଃଭ୍ରମଣରେ ତୁ ବାହାରି ଯାଉ। ତୋର ଆଣ୍ଠୁପାଖ ପକେଟ୍ ଭିତରେ ପଶିଥାଆନ୍ତି ଲୁମିଲୁମିକା ଧଳା ତୁଳା ମେଣ୍ଢାଏ ପରି କୁକୁରଛୁଆ ଦି'ଟା। ମର୍ଣ୍ଣିଂୱାକ୍‌ରୁ ଫେରି ତୁ ଏକ୍ସରସାଇଜ୍ କରୁ - କେତେପ୍ରକାର ଆସନ କରୁ; ସର୍ବାଙ୍ଗାସନ, ହଳାସନ, ମୟୂରାସନ, ଭୂଜଙ୍ଗାସନ, ଉତ୍‌ଥିତ ଉପାସନ- ଆହୁରି କେତେ କ'ଣ। ପ୍ରାଣାୟମ ବି କରୁ। ଘରେ କାମ କରିବା ପାଇଁ ଲୋକ ଥାଆନ୍ତି। ଧାଇମା' ଥାଏ ଆମମାନଙ୍କର ଯତ୍ନ ନେବାକୁ। ରୋଷେଇ ଘରେ ସେତେବେଳେ ତୋତେ କେବେ ଦେଖିବା କଥା ମୋର ମନେ ପଡୁ ନାହିଁ। ତୋର ନିର୍ଦ୍ଦେଶରେ କିନ୍ତୁ ଆମ ପାଇଁ ଭଲ ଭଲ ଖାଇବା ରନ୍ଧା ହୁଏ। ହାଣ୍ଡି ହାଣ୍ଡି ଆଚାର ହୁଏ। କେତେ ପ୍ରକାର ବଡ଼ି ପରାହୁଏ। ତୁ ନିଜେ କିଛି କରୁନଥିଲେ ମଧ୍ୟ ଅନ୍ୟମାନଙ୍କ ଦ୍ୱାରା ବହୁତ କାମ କରେଇପାରୁ।

ତୋର ବାପା, ଦାଦା ସ୍ୱାଧୀନତା ସଂଗ୍ରାମୀ ଥିଲେ। ତୋ ବାପଘରେ କଂଗ୍ରେସୀ ଚଳଣୀ ଥିଲା ବହୁତ ଦିନ ପର୍ଯ୍ୟନ୍ତ। ସେଇଥିପାଇଁ ତୁ ଖଦଡ଼ ଶାଢ଼ି ପିନ୍ଧୁଥିଲୁ। ନହେଲେ ସମ୍ବଲପୁରୀ କି ହାଇକୋର ସୁନ୍ଦର ସୁନ୍ଦର ଧଡ଼ି ଓ ପଣନ୍ତ ଥିବା ଶାଢ଼ି। ମୁଣ୍ଡରେ ଓଢ଼ଣା ରହୁଥିଲା ସବୁବେଳେ। ଅଳଙ୍କାର ବିଶେଷ ପିନ୍ଧୁ ନଥିଲୁ, ନିହାତି ଯେତିକି ଦରକାର ସେତିକିକୁ ଛାଡ଼ିଦେଲେ। ସେଥିରେ ତୁ ମହାରାଣୀ ମହାରାଣୀ ଲାଗୁଥିଲୁ। ହାର୍‌ମୋନିୟମ୍

ବଜାଇ ତୁ ଗୀତ ଗାଉଥିଲୁ ଓଡ଼ିଶୀ, ଭଜନ, ଛାନ୍ଦ, ଚମ୍ପୁ, ଆଧୁନିକ, ପଲ୍ଲୀ।ଆମ ଘରେ ଗୋଟେ ଗ୍ରାମଫୋନ୍ ଥିଲା - ସେଇ ରେକର୍ଡ଼ ଗୀତଗୁଡ଼ିକ ମଧ୍ୟ ତୁ ହାରମୋନିୟମ ବଜାଇ ଗାଇ ପାରୁଥିଲୁ। ସ୍କୁଲର ବାର୍ଷିକ ଉତ୍ସବରେ ପ୍ରଧାନଶିକ୍ଷୟିତ୍ରୀ ଭାବରେ ମଞ୍ଚରେ ଅତିଥିମାନଙ୍କ ସହିତ ବସୁଥିଲୁ। ବାର୍ଷିକ ବିବରଣୀ ପଢୁଥିଲୁ। ତା'ପରେ ପୁଣି ସାଂସ୍କୃତିକ କାର୍ଯ୍ୟକ୍ରମ ବେଳେ ନିଜେ ନାଟକରେ ମୁଖ୍ୟ ଭୂମିକାରେ ଅଭିନୟ କରୁଥିଲୁ। ନାଟକର ନାୟକ ଭୂମିକାରେ କୋଟ୍, ପ୍ୟାଣ୍ଟ ପିନ୍ଧି ତୁ ଅଭିନୟ କଲାବେଳେ ତୋତେ ଆମ ବୋଉ ବୋଲି ବିଶ୍ୱାସ କରିହେଉନଥିଲା।  ଏମିତିକା ବୋଉ ସେଇ ସମୟରେ ଭଲା ଆଉ କାହାର ଥିଲେ  ସେତେବେଳେ ? କେବଳ ଏତିକି ନୁହେଁ। ସାହିତ୍ୟରେ ମଧ୍ୟ ତୋର ବେଶ୍ ଦଖଲ ରହିଥିଲା। ଗପ, ଉପନ୍ୟାସ ଲେଖୁଥିଲୁ। ଇଂରାଜୀ ବହିରୁ କିଛି ଅନୁବାଦ କରୁଥିଲୁ। ସାହିତ୍ୟ ସଂସଦର କର୍ମକର୍ତ୍ତା ହୋଇ ସେ ଅଞ୍ଚଳର ସାହିତ୍ୟସଭାମାନ ଆୟୋଜନ କରିବାରେ ମୁଖ୍ୟଭୂମିକା ତୁଲାଉଥିଲୁ।

ସେଇ ପିଲାଦିନେ ତୋତେ କେବେ ପାଖର ମଣିଷ, ଆପଣାର ମଣିଷ ବୋଲି ଭାବିପାରୁନଥିଲି। ଖୁବ୍ ଭୟ କରୁଥିଲି ତୋତେ। ଧାଇ ମା' ପାଖରେ ଆମ ଭାଇ ଭଉଣୀମାନଙ୍କୁ ସମର୍ପି ଦେଇ ତୁ ତୋର କର୍ମଜୀବନର ବ୍ୟସ୍ତତା ମଧ୍ୟରେ ସର୍ବଦା ବୁଡ଼ି ରହୁଥିଲୁ। ତୋ ସ୍କୁଲର ଦେଢ଼ଶହ ପିଲା ହଷ୍ଟେଲରେ ରହୁଥିଲେ। ସେଇମାନଙ୍କୁ ତୁ ଆମ ଅପେକ୍ଷା ଅଧିକ ଭଲ ପାଉଥିଲୁ ବୋଲି ମୋର ଧାରଣା ହେଉଥିଲା। ତୋର ଜନ୍ମିତ ସନ୍ତାନମାନଙ୍କ ଅପେକ୍ଷା ତୋ ଦାୟିତ୍ୱରେ ଥିବା ସେଇ ଆଦିବାସୀ ପିଲାମାନଙ୍କୁ ବେଶି ଆପଣାର ମଣୁଥିଲୁ। ଥରେ ଖୁବ୍ ଜୋର୍‌ରେ ଝଡ଼ ବର୍ଷା ହେଉଥାଏ। ଘରର ଆଜବେଷ୍ଟସ୍ ଦୋହଲି ଯାଉଥାଏ ପ୍ରବଳ ବର୍ଷା ଓ ପବନରେ। ପିଲାମାନଙ୍କ ହଷ୍ଟେଲ୍ ଘରର ଛାତ ଖପରିଲି କିମ୍ବା ଟାଇଲ୍‌ର ହୋଇଥିବ। ଝଡ଼ର ପ୍ରଚଣ୍ଡତାରେ ଆମେ କାକୁସ୍ଥ ହୋଇ ରହିଥିବାବେଳେ ତୋ ପିଲାମାନଙ୍କୁ ଧାଇ ମା' ଜିମାରେ ଛାଡ଼ି ଦେଇ ତୁ ଧାଇଁ ଯାଇଥିଲୁ ତୋର ଦେଢ଼ଶହ ଆଦିବାସୀ ପିଲାଙ୍କ ପାଖକୁ। ତାଙ୍କର ବାପାମାଆ କେତେ ଭରସାରେ ତୋ ଦାୟିତ୍ୱରେ ଛାଡ଼ି ଦେଇଛନ୍ତି ସେମାନଙ୍କୁ - କେମିତି ସେମାନଙ୍କ ଭଲମନ୍ଦ କଥାକୁ ତୁ ଗୁରୁତ୍ୱ ନ ଦେବୁ। ସ୍ୱାର୍ଥପର ପିଲାମନ ମୋର ବିଦ୍ରୋହ କରୁଥିଲା ନୀରବରେ।

ଆଉ ଟିକେ ବଡ଼ ହେବା ପରେ ଦେଖିଲି ତୁ ହଠାତ୍ ବଦଳିଗଲୁ। ବଡ଼ ନାନୀ ମାଟ୍ରିକ୍ ପାଶ୍ କଲା ପରେ କଲେଜରେ ପଢ଼ିବ। ତା' ପରକୁ ମୁଁ ଓ ମୋ ତଳ ଦୁଇଭାଇ। ଆମ ଚାରିଜଣଙ୍କ ପରେ ଆଉ ଦୁଇଭାଇ ଓ ଦୁଇ ଭଉଣୀ ମଧ୍ୟ ସେତେବେଳକୁ ଆସିଯାଇଥାଆନ୍ତି। ବାପା କିମ୍ବା ତୋର ଚାକିରି ଜାଗାରେ ଆଖପାଖରେ କଲେଜ ନଥିଲା। ତେଣୁ ତୁ ଚାକିରି ଛାଡ଼ି ଭୁବନେଶ୍ୱରରେ ଥିବା ଆମର ଜାଗା ଉପରେ ଯଥାକଥା କରି

ମୁଣ୍ଡ ଗୁଞ୍ଜିବାର ଆସ୍ଥାନଟିଏ ବନାଇ ତୋର ପୁଅଝିଅମାନଙ୍କୁ ନେଇ ଭୁବନେଶ୍ୱର ଚାଲିଆସିଲୁ। ଜଣଙ୍କର ଦରମାରେ ଦି'ଜାଗାରେ ଚଳିବାକୁ ହେଲା। ସେତେବେଳେ ଆମେ ଜାଣିଲୁ ଅଭାବ କ'ଣ ? ଧାଇମା'ର ବୟସ ହୋଇଯାଇଥିଲା। ସେ ଆଉ କାମକୁ ପାରୁନଥିଲା। ତୁ ସମ୍ବଲପୁରୀ ହାଇକୋ ଶାଢ଼ି ଛାଡ଼ି କସ୍ତା ଲୁଗା ପିନ୍ଧିଲୁ। ଘରକାମ ସବୁ କଲୁ- ରୋଷେଇଘରେ ପଶିଲୁ। ଗାଈ ଗୁହାଳ କାମ ବି କଲୁ। ନାନୀ ସୁବବେଳେ କଷ୍ଟିଆ କାମତକ କରି ମୋତେ ସହଜ ସହଜ  କାମ ଦେଉଥିଲା। ତୋ ଦେହ ହଠାତ୍ ବହୁତ ଖରାପ ହେଲା। ତୁ ହସ୍‌ପିଟାଲ ଗଲୁ। ଆମେ ଦି' ଭଉଣୀଙ୍କ ଉପରେ ଘରର ସବୁ କାମ ପଡ଼ିବାରୁ ତୁ ଖୁବ୍ ବ୍ୟସ୍ତ ହେଉଥିଲୁ। ନିଜର ପାଠପଢ଼ା ଓ ଘରକାମ ସହିତ ସାନ ଭାଇଭଉଣୀମାନଙ୍କର ଦେଖାଶୁଣା କାମ ବି ରହିଥିଲା। ତୁ ଟିକେ ସୁସ୍ଥ ହୋଇ ଆସିଲା ବେଳକୁ ଧାଇମା' ବିଛଣା ଧରିଲା।  ଧାଇମା' କୁ ଆମେ କେବେ ଦରମା ନେଉଥିବା କର୍ମଚାରୀ ବୋଲି ଭାବିନଥିଲୁ। ବାପା ଓ ତୁ ମଧ ତାକୁ ମାଆ ଭଳି ସମ୍ମାନ ଦେଉଥିଲ। ସିଏ ବିଛଣା ଧରିବା ପରେ ତୁ ଘରର ସବୁ କାମ ସହିତ ତା'ର ପରିଚର୍ଯ୍ୟା ମଧ କଲୁ। ନିର୍ବିକାର ଭାବରେ ତା'ର ମଇଳା ସଫା କଲୁ। ତାକୁ ସଫା ସୁତୁରା କଲୁ। ଖୁଆଇ ଦେଲୁ। ସେ ବିକଳରେ ତୋ ବେକରେ ହାତଛନ୍ଦି ଦେଇ କହୁଥିଲା, "ରାଜେଶ୍ୱରୀ ତୁ ମୋ ପାଇଁ କେତେ ହୀନସ୍ତା ହେଉଛୁ ଲୋ। ମୁଁ କାହିଁକି ମରିଯାଉନି।" ହଁ - ଧାଇମା' ତୋତେ ଶ୍ରଦ୍ଧାରେ ରାଜେଶ୍ୱରୀ ବୋଲି ଡାକୁଥିଲା। ତୋ ପାଇଁ କେତେ ଯଥାର୍ଥ ଥିଲା ସେଇ ନାଆଁଟି  - ତୁ ତ ପ୍ରକୃତରେ ଆମର ରାଜରାଜେଶ୍ୱରୀ ଜନନୀ।

ବୋଉଲୋ - ଏବେ ମଧ ଯିଏ ତୋତେ ଦେଖିବାକୁ ଆସନ୍ତି ସେମାନେ ବିଶ୍ୱାସ କରିପାରନ୍ତି ନାହିଁ ତୁ ବର୍ଷ ବର୍ଷ ଧରି ଅସୁସ୍ଥ ଏବଂ ଶଯ୍ୟାଶାୟୀ। ଈର୍ଷା କରନ୍ତି ତୋର ସୁନ୍ଦରପଣକୁ - ତୋର ସନ୍ତାନ ଭାଗ୍ୟକୁ। ହସ୍‌ପିଟାଲ୍‌ରେ ପ୍ରବଳ ଅସୁସ୍ଥ ଅବସ୍ଥାରେ ଅଚେତନ ଥିବାବେଳେ ମଧ ତୋର ପରିଚର୍ଯ୍ୟା କରୁଥିବା ନର୍ସ ତଥା ହସ୍‌ପିଟାଲର ଅନ୍ୟ ଷ୍ଟାଫ୍‌ମାନେ ନ କହି ରହିପାରନ୍ତି ନାହିଁ ଏଇ ବୟସରେ ମଧ କେତେ ସୁନ୍ଦର ଆପଣଙ୍କ ମାଆ। ପାଖରେ ଥିଲେ ମନେ ମନେ ଛେପ ପକେଇଦିଏ ତୋ ଉପରେ- କାଳେ ଦୃଷ୍ଟି ପଡ଼ିଯିବ ବୋଲି। ତୋତେ ଆଉଁସି ପକାଏ ବିକଳରେ। ତୋ ବ୍ୟକ୍ତିତ୍ୱର ସୌନ୍ଦର୍ଯ୍ୟ ବିଷୟରେ ଏମାନେ କ'ଣ ବା ଜାଣନ୍ତି ? ତୁ ଯେ ସାକ୍ଷାତ ଦୁର୍ଗାଙ୍କର ଅବତାର। ପୁଣି କେତେବେଳେ ତୁ ମହାଲକ୍ଷ୍ମୀ, କେତେବେଳେ ମହାସରସ୍ୱତୀ ତ କେତେବେଳେ ତୁ ପ୍ରଚଣ୍ଡା ମହାକାଳୀ। ତୋର ଜନ୍ମଦିନ ଦଶହରା ପରଦିନ ବୋଲି ଆମେ ଯେବେଠୁ ଜାଣିଲୁ - ଆମ ଘରେ ଜନ୍ମଦିନ ପାଳନ କରାଯାଏ ନାହିଁ ବୋଲି ତୁ କହିବା ସତ୍ତ୍ୱେ ଆମ ପରିବାରର ସମସ୍ତଙ୍କୁ ଏକାଠି କରି କିଛି ଗୋଟାଏ କରିବାର ଆୟୋଜନ କଲି। ଆୟୋଜନ

ଆଉ ଆଉ କ'ଣ ? ଦଶହରାରେ ତ ପ୍ରାୟ ସମସ୍ତଙ୍କର ଛୁଟି ଥାଏ। ସମସ୍ତେ ଏକାଠି ମିଶି ଖିଆପିଆ କରୁ। ତୋ ନାଁ ଲେଖାଯାଇ କେକ୍ ଅଣାଯାଏ। ସମସ୍ତେ କିଛି ନା କିଛି ଉପହାର ଦିଅନ୍ତି। ପ୍ରଥମେ ପ୍ରଥମେ ତୋତେ ଲାଜ ଲାଗୁଥିଲା ଏସବୁ କଲେ। ପରେ କିନ୍ତୁ ତୋତେ ଭଲ ଲାଗିଲା। ଖାଲି ଜନ୍ମଦିନ କାହିଁକି - ତୁମର ବିବାହ ବାର୍ଷିକୀର ସୁବର୍ଣ୍ଣ ଜୟନ୍ତୀ ମଧ୍ୟ ପାଳିଥିଲୁ ଧୁମ୍‌ଧାମ୍‌ରେ। ବାପା ମନେ ପକେଇ ଦିଅନ୍ତି, 'ତୁମ ବୋଉର ବାହାଘର ଷାଠିଏ ବର୍ଷ ପୂରି ଏକଷଠି ବର୍ଷ ହେବ।' କେତେ ପିଲାଙ୍କର ଭାଗ୍ୟରେ ଥାଏ ଏଭଳି ଅପୂର୍ବ ଉତ୍ସବ ମନେଇବାର ସୁଯୋଗ !

ତୋର ଏବେକାର କଷ୍ଟ ଦେଖିଲେ କେହି କେହି କହନ୍ତି ପ୍ରାରବ୍ଧ ଭୋଗ କରୁଛୁ ତୁ। ପୂର୍ବଜନ୍ମର ଭୁଲ୍ ପାଇଁ ଏ ଜନ୍ମରେ ବି ପ୍ରାୟଶ୍ଚିତ କରିବାକୁ ହୁଏ। ବଳ ବୟସ ଥିଲାବେଳେ ସବୁତକ ସୁଖ ଭୋଗ କଲୁ। ଜୀବନର ଶେଷ ପର୍ଯ୍ୟାୟରେ ତୋ ପାଇଁ ଏତେ କଷ୍ଟ ସଞ୍ଚିତ ହୋଇ ରହିଥିଲା। ଜାଣେନି - କେତେଦିନ ଏଭଳି ଦଣ୍ଡ ତୋତେ ଭୋଗିବାକୁ ହେବ। ଅଷ୍ଟପ୍ରହର ବିଛଣାରେ ପଡ଼ି ରହିବା ପରେ ବି ତୋ ମୁହଁର ଭାବ ଖୁବ ଶାନ୍ତ ଓ ସମାହିତ। ତୋର ସେବାକାରିଣୀ ଝିଅଟି ତୋ ମୁଣ୍ଡର କେଶକୁ ଯତ୍ନର ସହିତ କୁଣ୍ଡାଇ ଦେଇ ଛୋଟ ଗଣ୍ଠିଟିଏ ପାରି ଦେଇଥାଏ। ତୋ କପାଳରେ ଯତ୍ନ କରି ବଡ଼ ସିନ୍ଦୂର ଟୋପାଟି ଲଗାଇ ଦିଏ - ଆଉ ସିନ୍ଥିରେ ସିନ୍ଦୂର ଗାର। କେତେ ସ୍ନିଗ୍ଧ ଆଉ ଉଜ୍ଜ୍ୱଳ ଦିଶୁଥାଏ ତୋ ମୁହଁଟି। କୋଉଠି ପାଉ ଏଭଳି ଶାନ୍ତ ଆଉ ସମାହିତ ହୋଇ ରହିପାରିବାର ସାମର୍ଥ୍ୟ !

ବୋଉଲୋ - ବହି ପଢ଼ିବାର ଓ ଲେଖିବାର ନିଶା ଉତ୍ତରାଧିକାର ସୂତ୍ରରେ ମୁଁ ତୋ'ଠୁ ଓ ବାପାଙ୍କଠୁ ପାଇଛି। ମୋ ହାତରେ ତୁମେମାନେ ପ୍ରଥମେ କଲମ ଧରାଇଥିଲ ବୋଲି ମୋର ବହିଟିଏ ପ୍ରକାଶ ପାଇଲେ ସେଥିରେ ତୁମ ଦୁହିଁଙ୍କ ନାମ ଲେଖି ତୁମ ପାଦରେ ପ୍ରଣାମ କରି ଏକାଠି ଦୁହିଁଙ୍କ ହାତରେ ଦେଇଥାଏ। ମୋ ମୁଣ୍ଡରେ ହାତ ରଖି ତୁମେ ଦୁହେଁ ଆଶୀର୍ବାଦ କରିଥାଅ। ଜନ୍ମବେଳେ ନିଜର ପରିଚୟ ନେଇ ଅନେକଙ୍କ ମନରେ ପ୍ରଶ୍ନବାଚୀ ସୃଷ୍ଟି କରିଥିବା ତୋର ସେଇ ଝିଅଟି ନିଜ ପାଇଁ ନିଜର ପରିଚୟଟିଏ ଆଜି ସୃଷ୍ଟି କରିପାରିଛି। ସେଇ ଗୌରବରେ ଉଦ୍‌ଭାସିତ ତୁମର ମୁହଁକୁ ଦେଖିଲେ ମୋ ଜୀବନ ଧନ୍ୟ ହୋଇଯାଏ। ତୁମେ ଦୁହେଁ ଥିଲ ମୋର ସବୁଠାରୁ ପ୍ରିୟ ପାଠକ ପାଠିକା। ବହି ପଢ଼ିବାକୁ ତୁମେ ଦୁହେଁ ବହୁତ ଭଲପାଅ ବୋଲି ତୁମ ପାଖକୁ ଗଲାବେଳେ ତୁମ ପସନ୍ଦର ବହି ସବୁ ନେଇକି ଯାଉଥିଲି। ଏବେ ତୋ ଆଖିକୁ ଭଲ ଦିଶୁନାହିଁ। ତେଣୁ ବହି ତୁ ପଢ଼ିପାରୁନା ନିଜେ। ତୋତେ ଅନ୍ୟ କେହି ପଢ଼ି ଶୁଣାନ୍ତି ଖବରକାଗଜ, ପତ୍ରପତ୍ରିକା, ଧର୍ମପୁସ୍ତକ। ସେଥିରେ କ'ଣ ତୋର ମନବୋଧ ହେଉଥିବ ! ବାପା ବି ସେଦିନ କହିଲେ,

ଖବରକାଗଜ ହେଡ୍‌ଲାଇନ୍ ବ୍ୟତୀତ ତାଙ୍କ ଆଖିକୁ ଛୋଟ ଅକ୍ଷର ଦେଖାଯାଉନି । ଦି'ବର୍ଷ ତଳେ ବି ବାପା ଖାଲି ଆଖିରେ ଅନାୟାସରେ ପଢ଼ି ପାରୁଥିଲେ ଗଦା ଗଦା ବହି, ପତ୍ରପତ୍ରିକା । ଭଲ ଲାଗିବାର ଧାଡ଼ିଗୁଡ଼ିକ ତଳେ ପେନ୍‌ସିଲ୍‌ରେ ଗାର ପକେଇ ରଖୁଥିଲେ ମୋତେ ଦେଖାଇବାକୁ । ଟି.ଭି. ସିରିୟଲ୍ ଦେଖିବାକୁ ଏତେ ଭଲ ପାଉଥିଲୁ - ତା'ବି ଦେଖିପାରୁନୁ । ଏତେ ଚଞ୍ଚଳଚଞ୍ଚଳ ମଣିଷ ଥିଲୁ ତୁ - ଏମିତି ଚୁପ୍‌ଚାପ୍ ପଡ଼ି ରହିବା ଦେଖିଲେ ଖୁବ୍ କଷ୍ଟ ହୁଏ ମନରେ । ତୁ ମୋର ମନୋଭାବ ବୁଝିପାରି କହୁ - ମୋ ପାଇଁ ଆଦୌ ବିଚଳିତ ହେବୁ ନାହିଁ । ଈଶ୍ୱରଙ୍କର ହୁଏତ ଏଇଭଳି ଇଚ୍ଛା - ମୋର ସବୁ ପ୍ରାରବ୍ଧକ ଏ ଜନ୍ମରେ ଭୋଗ ହୋଇଯାଉ । ତା'ପରେ ମୋତେ ମୁକ୍ତି ମିଳିଯିବ । ମନକୁ ଦୃଢ଼ ରଖିବୁ । ବୋଉ କ'ଣ ସବୁଦିନ ଥିବ ? କେବେ ନା କେବେ ତ ଯିବାକୁ ହେବ । ବୋଉ ନଥିବା ପୃଥିବୀ କଥା ଭାବିଲା ବେଳକୁ ମୋ ଛାତି ଭିତରଟା ହାହାକାର କରି ଉଠୁଛି । କେମିତି କ'ଣ ହୁଅନ୍ତା - କିଛି ଅଲୌକିକ ଘଟଣା ଘଟନ୍ତା କି କେହି ମନ୍ତ୍ରଜଳ ଆଣି ସିଞ୍ଚିଦିଅନ୍ତା ତୋ ଉପରେ । ତୁ ପୁଣି ସ୍ୱାଭାବିକ ହୋଇ ଉଠି ବସନ୍ତୁ, ସେଇ ଆମ ପିଲାଦିନର ଚକଚକିଆ, ପ୍ରାଣପ୍ରାଚୁର୍ଯ୍ୟରେ ଭରପୂର ବୋଉ ।

ତୋତେ ମୁଁ ନିୟମିତ ଦେଖିବାକୁ ଯାଇ ପାରେନି । ତୁ ଜାଣୁ ତୋ ଝିଅ ଅନେକ କର୍ମଜଞ୍ଜାଳ ଭିତରେ ବନ୍ଧା ପଡ଼ିଯାଇଛି । ମୋର ସପ୍ତାହକର ଅନୁପସ୍ଥିତି ତୋତେ ବିବ୍ରତ କରେ । କାହାକୁ ହେଲେ କହି ତୁ ଫୋନ୍ କରାଉ ମୋ ପାଖକୁ । "ତୁ କେମିତି ଅଛୁ ?"- ବୋଲି ମୁଁ ପଚାରିବା ପୂର୍ବରୁ ତୁ ପଚାରିଦେଉ, "କେମିତି ଅଛୁ ମା' ? ତୋ ଦେହ ପା ଭଲ ଅଛି ତ ? ତୋ ସ୍ୱର ଏମିତି କାହିଁକି ଶୁଭୁଛି ?" ମୋ କଣ୍ଠ ବାଷ୍ପରୁଦ୍ଧ ହୋଇଯାଏ । ମୋ ପାଇଁ କେହି ବ୍ୟାକୁଳ ହେବାର- ମୋ ଭଲମନ୍ଦ ଖବର ଜାଣିବାକୁ ଉତ୍କଣ୍ଠିତ ହେବାର ଦୁର୍ଲ୍ଲଭ ସମୟ ସତରେ ଆଉ କେତେଦିନ ?

ବୋଉଲୋ - ସବୁ ସନ୍ଦେହ ଆଉ ଅବିଶ୍ୱାସର ଊର୍ଦ୍ଧ୍ୱକୁ ଯାଇ ତୁ ଦିନେ ମୋତେ କୋଳେଇ ନେଇଥିଲୁ । ମୁଁ ତୋର ଆତ୍ମଜା - ମୋ ଭିତରେ ତୋ ନିଜର ପ୍ରତିବିମ୍ବ ତୁ ଦେଖିପାରୁ ବୋଲି କହୁ । ଅନେକ ପ୍ରତିକୂଳତା ସତ୍ତ୍ୱେ ମୋ ଜୀବନକୁ ସୁନ୍ଦର କରିବାରେ, ସଫଳ କରିବାରେ - ସାର୍ଥକ କରିବାରେ ତୋର ଆଉ ବାପାଙ୍କର ଅଜସ୍ର ଅବଦାନପାଇଁ ମୁଁ ଚିରକୃତଜ୍ଞ ରହିବି ଈଶ୍ୱରଙ୍କ ନିକଟରେ ଆଉ ତୁମମାନଙ୍କ ନିକଟରେ । ଏତେଦିନ ଧରି ବିଛଣାରେ ପଡ଼ି ପଡ଼ି ତୁ ଏତେ କଷ୍ଟ ପାଉଛୁ ଦେଖିବା ପରେ ବି ମୁଁ ମୋହମୁକ୍ତ ହୋଇ କହିପାରୁନାହିଁ - ହେ ପ୍ରଭୁ ବହୁତ ହୋଇଗଲା । ଆମ ବୋଉକୁ ଏବେ ସବୁ କଷ୍ଟରୁ ସମସ୍ତ ମାୟାବନ୍ଧନରୁ ମୁକ୍ତ କରିଦିଅ । ମୋର ଏଇ ସ୍ୱାର୍ଥପରତା ପାଇଁ ମୋତେ ତୁ କ୍ଷମା କରିଦେବୁ ।




**ପ୍ରବୀଣା ମହାନ୍ତି** ଆମ ସମୟର ଜଣେ ସମ୍ବେଦନଶୀଳ କଥାଶିଳ୍ପୀ । ତାଙ୍କ ଗଳ୍ପରେ ଆମେ ସମକାଳୀନ ସମୟ ଓ ସମାଜକୁ ବେଶ୍ କଳାତ୍ମକ ଢଙ୍ଗରେ ଭେଟିବାକୁ ପାଉ । ୨୦ ଫେବୃଆରୀ ୧୯୫୭ରେ ଜନ୍ମ ହୋଇଥିବା ଶ୍ରୀମତୀ ମହାନ୍ତି ଗଳ୍ପ ଓ ଉପନ୍ୟାସ ବ୍ୟତୀତ ପିଲାଙ୍କ ପାଇଁ ଫିଚର୍ ମଧ୍ୟ ଲେଖନ୍ତି । ସ୍ୱାତୀ, ନୀଡ଼, ଏବେ ବି ସୁନ୍ଦର ଧରା, ଶ୍ୟାମଳ ସୁଗନ୍ଧ, ନିବିଡ଼ ନିସ୍ୱନ, ଶ୍ରେୟସୀ ଓ ପୁନଶ୍ଚ ମୌସୁମୀ, ସ୍ତିମିତ ନକ୍ଷତ୍ର, ତନୁ ତନିମା ତବସୁମ୍ ଆଦି ଉପନ୍ୟାସ ଏବଂ ଆଉଜଣେ ଏକଲବ୍ୟ ଓ ଅନ୍ୟାନ୍ୟ କାହାଣୀ, ଜହ୍ନର ଠିକଣା, ବିସ୍ମିତ ଅନୁରାଗ, ଅନ୍ୟା ଅନନ୍ୟା, ଇତି ତୋର ଆତ୍ମଜା ଆଦି ଗଳ୍ପ ସଂକଳନର ସଫଳ ସ୍ରଷ୍ଟା ପ୍ରବୀଣା ମହାନ୍ତି ଅନୁଭବର ଉଲ୍ଲାସକୁ କଥାସାହିତ୍ୟରେ ରୂପାନ୍ତରିତ କରିବାରେ ସତରେ ପ୍ରବୀଣା । 'ମନୋଜ ଦାସଙ୍କ ଗଳ୍ପରେ ବ୍ୟଙ୍ଗ' ବିଷୟକୁ ନେଇ ସେ ଗବେଷଣା ମଧ୍ୟ କରିଛନ୍ତି । ତାଙ୍କର ସବୁଯାକ ସଂକଳନରୁ ପାଠକଙ୍କ ଦ୍ୱାରା ଆଦୃତ କେତୋଟି ଗଳ୍ପକୁ ନେଇ 'ଶ୍ରେଷ୍ଠଗଳ୍ପ' ସଂକଳନର ପରିକଳ୍ପନା; ଯାହା ପାଠକପାଠିକାଙ୍କୁ ପୁଣିଥରେ ତାଜା ଅନୁଭବ ଆଣିଦେବ ବୋଲି ବିଶ୍ୱାସ ।

a timepass publication
SHORT-STORY
cover design : saroj bal

